# ହଜିଯାଉଥିବା ପାଦଚିହ୍ନ

ଲେଖକ

ଶ୍ରୀ ସରୋଜ ମିଶ୍ର

ପ୍ରକାଶକ

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

# ହଜିଯାଉଥିବା ପାଦଚିହ୍ନ


ମୁଖ୍ୟ ଉପଦେଷ୍ଟା :
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରକାଶକ :
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩ ୦୦୨

ପ୍ରଥମ ସଂସ୍କରଣ : କୁମାର ପୂର୍ଣ୍ଣମୀ, ୨୦୦୩
ଦ୍ୱିତୀୟ ସଂସ୍କରଣ : ବିଜୟା ଦଶମୀ, ୨୦୦୭
ତୃତୀୟ ସଂସ୍କରଣ : ଶିବରାତ୍ରି, ୨୦୦୮

ମୁଦ୍ରଣ :
ସାହୁ କମ୍ପ୍ୟୁଟର ୟୁନିଟ ଏବଂ
ସଙ୍ଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ବୋର୍ଡ଼ ବନ୍ଧାଇ ଟ. ୭୫-୦୦ ମାତ୍ର
ସାଦା ବନ୍ଧାଇ ଟ. ୬୫-୦୦ ମାତ୍ର


## HAJIJAUTHIBA PADACHINHA


Writer :
Sri Saroj Mishra

Publisher :
Sri N. P. Misra
Cuttack Students' Store
Balubazar, Cuttack–753002

Principal Adviser :
Sri R. P. Misra

First Edition : October, 2000
Second Edition : October, 2007
Third Edition : March, 2008

Printers :
Sahoo Computer Unit &
Sangeeta Printers, Cuttack

Price :
Deluxe Rs. 75-00 only
Popular : Rs. 65-00 only

# ମୋ କଥା...

ସାହିତ୍ୟରେ ସବୁ ବିଭାବରେ ଲେଖାଲେଖି କରୁଥିଲେ ବି ନାଟ୍ୟକାର ଭାବରେ ଓଡ଼ିଆ ପାଠକ, ଦର୍ଶକ ଓ ଶ୍ରୋତାଙ୍କ ନିକଟରେ ମୁଁ ଅଧିକ ପରିଚିତ । ବୃତ୍ତିରେ ସରକାରୀ ଚାକିରି; କିନ୍ତୁ ସାହିତ୍ୟ ସୃଜନରେ ମୋର ନିଶା ।

ଆଜିର ବସ୍ତୁବାଦୀ ଦୁନିଆରେ ସାହିତ୍ୟକୁ ପେଶାକରି ବଞ୍ଚିହେବନାହିଁ । ତଥାପି ସାହିତ୍ୟ ସୃଷ୍ଟି ଯେଉଁଠି ନିଶା ହୋଇଯାଇଛି, ସେଠି ସାହିତ୍ୟ ସାଧନା ବ୍ୟତୀତ ଅନ୍ୟ ପ୍ରବୃତ୍ତିକୁ ଆଦରି ନେଇହେବନାହିଁ ଏ ଜୀବନ ଥିବାଯାଏ ।

ଜୀବନ ଯନ୍ତ୍ରଣାରେ ଅହରହ ଉବୁଟୁବୁ ସ୍ୱାର୍ଥାନ୍ୱେଷୀ ମଣିଷ କେମିତି ବଞ୍ଚୁଛି, କ'ଣ ତାର ଆଦର୍ଶ ? ମଣିଷପଣିଆର ଅଭାବ, ଈର୍ଷା ଓ ସ୍ୱାର୍ଥସର୍ବସ୍ୱ ମଣିଷ ନିଜେ ପ୍ରତି ମୁହୂର୍ତ୍ତରେ କେତେ ଅସହାୟ, ନିଃସଙ୍ଗ ଆଉ ବିବଶ ସତେ ! କିଂକର୍ତ୍ତବ୍ୟବିମୂଢ଼ ମଣିଷର ଚେତନାଶକ୍ତି ଜାଗରିତ ହେବା ପୂର୍ବରୁ ତା'ର ଆୟୁ ସରିଆସୁଛି । ଭିତର ଓ ବାହାରର ମଣିଷଟି ଭିନ୍ନ । ଚାକିରି ଜୀବନରେ, ବାହାର ମଣିଷର ରୂପ ଭିତରେ ପରାଧୀନତାର ଶୃଙ୍ଖଳ ହଜେଇ ଦେଇଛି ମୋ ଭିତରର ମଣିଷପଣିଆକୁ ।

ସନ୍ନିବେଶିତ ଗଳ୍ପଗୁଡ଼ିକରେ ସାମାଜିକ ସତ୍ୟତାକୁ ବାହାରକୁ ଆଣିବା ପାଇଁ ଯଥେଷ୍ଟ ଚେଷ୍ଟା କରିଛି; କିନ୍ତୁ ଏଇ ସତ୍ୟକୁ ପାଠକମାନଙ୍କ ପାଇଁ ଆହୁରି ତୀବ୍ର ଓ ଶାଣିତ କରି ଚିତ୍ରିତ କରାଯାଇ ପାରିଥାଆନ୍ତା; ବ୍ୟକ୍ତିର କପଟାଚାରର ମୁଖା ଖୋଲାଯାଇ ପାରିଥାଆନ୍ତା, ହେଲେ ବେଢ଼ି ତ ଜୀବିକା ପାଇଁ ବନ୍ଧା ପଡ଼ିଛି । ତୋଷାମଦିର ଖୋଳ ଭିତରୁ ବାହାରିଯିବାକୁ ଇଚ୍ଛା । ଦେଖାଯାଉ ସେ ସୁଦିନ କେବେ ଆସୁଛି !

ଗଳ୍ପଗୁଡ଼ିକ ସମ୍ବାଦପତ୍ର 'ସମାଜ', 'ପ୍ରଜାତନ୍ତ୍ର', ଓ 'ଧରିତ୍ରୀ' ପ୍ରମୁଖ ପତ୍ରିକା 'ଝଙ୍କାର', 'ଯୁବପ୍ରଭା', 'ଶଙ୍ଖ', 'ପଦ୍ମପାଦ', 'କାରୁବାକୀ', 'ଆଗାମୀ ଶତାବ୍ଦୀ', 'ସମାଜ ସାପ୍ତାହିକୀ', 'ବିଶ୍ୱମୁକ୍ତି', 'ସ୍ୱର୍ଣ୍ଣ' ଓ ଅନେକ ମାସିକ ପତ୍ରିକାରେ ପ୍ରକାଶିତ ହୋଇଛି ଏବଂ ପାଠକୀୟ କଷଟି ପଥରରେ ସ୍ୱୀକୃତି ପାଇଛି; କିନ୍ତୁ ସଂକଳନ କରିବା ବିଳମ୍ବ ହେଲା ।

ସଜ୍ଜନ ସ୍ୱନାମଧନ୍ୟ ପ୍ରକାଶକ ଓ ସୁସାହିତ୍ୟିକ ମୋର ପରମ ବନ୍ଧୁ ଶ୍ରୀ ନୃସିଂହ ପ୍ରସାଦ ମିଶ୍ରଙ୍କ ଆନ୍ତରିକତା ମୁଁ ସ୍ମରଣ କରୁଛି ।

ନାଟ୍ୟକାର ଅଧ୍ୟାପକ ପୂର୍ଣ୍ଣ ମଲ୍ଲିକ, କବି ବନ୍ଧୁ ଡଃ ରମେଶ ପାଣି ଓ ଅଭିନେତା ପ୍ରଫୁଲ୍ଲ କୁମାର ମହାନ୍ତି ମୋର ନାଟକ ଲେଖା ମଝିରେ ଗଳ୍ପ ଲେଖିବାକୁ ପ୍ରେରଣା ଦେଇଥିବାରୁ ସେମାନେ ଯଥାର୍ଥରେ ଅଭିନନ୍ଦନୀୟ ।

ସରୋଜ ମିଶ୍ର

# ସୂଚୀ


| | ବିଷୟ | ପୃଷ୍ଠା |
|---|---|---|
| ୧। | ଅସ୍ପୃଶ୍ୟ ଆଲୁଅ | ୧ |
| ୨। | ସୀମାରେଖା | ୯ |
| ୩। | ଅସ୍ତସୂର୍ଯ୍ୟର ରଙ୍ଗ | ୧୪ |
| ୪। | ମର୍ତ୍ତ୍ୟରେ ଇମର୍ଜେନ୍ସି | ୨୨ |
| ୫। | ବିସ୍ମୃତିର ସ୍ୱର | ୩୩ |
| ୬। | ପରାହତ ପ୍ରଜାପତି | ୩୭ |
| ୭। | ମୋହଭଙ୍ଗ | ୪୫ |
| ୮। | ସବୁଜ ପାହାଡ଼ ତଳର ଘନ ବନାନୀ | ୪୮ |
| ୯। | ମୂର୍ତ୍ତି ଆଖିରେ ଲୁହ | ୫୫ |
| ୧୦। | ପରିଣୀତା | ୬୨ |
| ୧୧। | ହାତୀ ପଥର | ୬୭ |
| ୧୨। | ଜମାବନ୍ଦୀ | ୭୧ |
| ୧୩। | ଅନ୍ୟ ଆକାଶର ସୂର୍ଯ୍ୟୋଦୟ | ୭୬ |
| ୧୪। | ଶ୍ରାନ୍ତ ଅପରାହ୍ନ | ୮୨ |
| ୧୫। | ପ୍ରତ୍ୟାବର୍ତ୍ତନ | ୮୭ |
| ୧୬। | ଅବସନ୍ନ ଅବଶୋଷ | ୯୩ |
| ୧୭। | ଭଲ ଗପ ପାଇଁ ପ୍ଲଟଟିଏ | ୯୯ |
| ୧୮। | ଅନ୍ଧକାରର ଆଖି | ୧୧୦ |
| ୧୯। | ହଜିଯାଉଥିବା ପାଦଚିହ୍ନ | ୧୧୮ |


○

# ଅସ୍ପୃଶ୍ୟାନୁ

ରିଜର୍ଭେସନ ସରିଛି ।

ଦି' ଦିନ ପରେ ଯାତ୍ରା ଆରମ୍ଭ ହେବ । କିଛି ଛାଡ଼ିଗଲେ ସେଠି ହଇରାଣ । ଆରାମ ଚେୟାରରେ ବସି ଭାବୁଛି; ଆଉ କ'ଣ ଯିବ, ହଠାତ୍ ମୈଥୁନରତ ଝିଟିପିଟି ମୋ ହୃଦୟ ଉପରେ ପଡ଼ି ଡାହାଣ ଗୋଡ଼ଦେଇ ଓହ୍ଲେଇଗଲେ । ବୋଧହୁଏ ଭଲ, ଯେହେତୁ ହୃଦୟରେ ପଡ଼ି ଡାହାଣ ପଟେ ଗଲେଣି । ପାଞ୍ଜିଟି ଖୋଲି ସ୍ଥାନ ବିଶେଷ ପଲ୍ଲୀପତନ ଫଳ ଦେଖିଲି ।

'ହୃଦୟରେ ମୃତ୍ୟୁ'; ଚମକି ପଡ଼ିଲି ।

ସାଙ୍ଗସାଥିଙ୍କୁ କହିଲେ, ସମସ୍ତେ କହିବେ ଯିବା କ୍ୟାନ୍ସଲ କରିଦେ । ଭାବିଲି, ମୃତ୍ୟୁ ଯଦି ଆସନ୍ନ ତେବେ ସେଥିରୁ ବର୍ତ୍ତି ହେବନାହିଁ । ନିୟତିର ବିଧାନରେ ଯଦି ତାହା ଘଟିବାକୁ ଥାଏ, ଅନ୍ୟଥା ହେବା ଅସମ୍ଭବ । ମଣିଷର ଭାବରାଜ୍ୟର ଇତିହାସରେ 'ଲଲାଟ ଲେଖନ କେ କରିବ ଆନ' ଲୋକଚଳଣିରେ ପ୍ରବାଦ ହୋଇଗଲାଣି । ମହାକାଳର ଇଙ୍ଗିତରେ ମଣିଷ ପାଇଁ ବାଟ ନାହିଁ, ଘାଟ ନାହିଁ କି ମାଇଲ ଖୁଣ୍ଟ ବି ନାହିଁ । ଅନ୍ଧକାର ଭିତରେ ସେ ଲକ୍ଷ୍ୟହୀନ ଭାବେ ଘୂରିଚାଲିଛି । ତାକୁ ଦିଗ ଦେଖାଇବାକୁ ଧ୍ରୁବତାରାମାନେ ନାହାନ୍ତି । ତାର ଆରମ୍ଭ ଓ ଅନ୍ତ ନିୟତି ହାତରେ । ମୁଁ କିଏ ? ମୁଁ କେଉଁଠି ? କୁଆଡ଼େ ମୋର ଗତି ? ଚିନ୍ତାରେ କିଲିବିଲି ଲାଗିଲା । ଘର ସଫେଇରୁ ରକ୍ଷା ପାଇଯାଇଥିବା ବୁଢ଼ିଆଣୀଟିଏ ପରି ମୁଁ ଉଦ୍‌ବିଗ୍ନ ହୋଇପଡ଼ିଲି । ସାହସ ବାନ୍ଧିଲି । ଏକାକୀ ମଣିଷ, ପୁଣି ଅବିବାହିତ, ଚିନ୍ତା କ'ଣ ? ନିର୍ଦ୍ଦିଷ୍ଟ ସମୟ ନିର୍ଘଣ୍ଟରେ ବନ୍ଧୁ ଦେବବ୍ରତଙ୍କ ସହ ଆଗରୁ କଥା ଅନୁସାରେ ମୁଁ ଷ୍ଟେସନ୍‌ରେ ପହଞ୍ଚିଲି । ସେ ବ୍ରହ୍ମପୁରରୁ ଗାଡ଼ିରେ ଆଗରୁ ଉଠିଥିଲେ । ମୁଁ ଭୁବନେଶ୍ୱର ଷ୍ଟେସନରେ ।

ଶିଲିଗୁଡ଼ିରେ ପହଞ୍ଚିଲାବେଳକୁ ରାତି ଦୁଇ । ଷ୍ଟେସନ୍ ଲାଇଟ୍ ପରେ କିଟିକିଟି ଅନ୍ଧାର । ବାହାରେ ଝିପି ଝିପି ବର୍ଷା । ଅନେକ ଲୋକ ଶୀତବସ୍ତ୍ର ପରିଧାନ କରିଥାଆନ୍ତି । ମେ ମାସରେ ଗରମରୁ ଯାଇ ହଠାତ୍ ଥଣ୍ଡା ଅଞ୍ଚଳରେ ପହଞ୍ଚିଯାଇଥିବାରୁ ଦେହଟା ମୋର ଶିର୍ ଶିର୍ ଲାଗିଲା । ମନେ ପଡ଼ିଗଲା ପଲ୍ଲୀପତନର ଫଳ ।

ବନ୍ଧୁଙ୍କର ଇଚ୍ଛାଥାଏ ପ୍ରଥମେ ଦାର୍ଜିଲିଂ ଯିବାକୁ । ଟୟଟ୍ରେନ୍ ସମୟ ବିଳମ୍ବ । ମୁଁ ସ୍ଥିର କଲି ସୁମୋ ରିଜର୍ଭ କରି ଗ୍ୟାଙ୍ଗଟକ ଚାଲିଯିବାକୁ । ଫେରନ୍ତା ଯାତ୍ରାରେ ଅନ୍ୟାନ୍ୟ ସ୍ଥାନ । ବନ୍ଧୁ ଦେବବାବୁ ସୁମୋ ବୁଝିଲେ । ରାତିରେ ଏ ଅଞ୍ଚଳକୁ ଯାନବାହାନ ଚଳାଚଳ ମନା । ପାହାନ୍ତାରୁ ଆମ ଗାଡ଼ି ଛାଡ଼ିଲା । ବର୍ଷା ଓ ଶୀତୁଆ

ପବନରେ ଆମର ବିନା ଶୀତବସ୍ତ୍ରରେ ଯାତ୍ରା । ଘାଟିରାସ୍ତାରେ ଘୋ ଘୋ କଳ କଳ ରାସ୍ତା ତଳେ ଝରଣାର ଶବ୍ଦରେ ଗାଡ଼ିର ଘଁ ଘଁ ଆବାଜ୍ ହଜିଯାଉଥାଏ । ଆଖିରେ ପଡୁଥାଏ ଦିଗନ୍ତବିସ୍ତାରୀ ହିମାଳୟର ବିସ୍ତୃତ ରୂପ । ତା' ଦେହରେ ଥାକ ଥାକ ଜନବସତି । ସମତଳ ଓ ଅସମତଳ ସ୍ଥାନରେ ଉଚ୍ଚ ଉଚ୍ଚ କୋଠାଘର । ଆଖି ପାଉଥାଏ ପୁଣି ପାଉ ନ ଥାଏ ।

କେଉଁଠି ରାସ୍ତା, କେଉଁଠି ପଥରକୁ ବାନ୍ଧି ବାନ୍ଧି ବଡ଼ ପିଣ୍ଡିଟା ଉପରେ କାଠର ଘର, ପୁଣି ଦୋକାନ । ଆମ ଅଞ୍ଚଳର ଲୋକମାନେ ଏଠି ଚଳିପାରିବେ ନାହିଁ ।

ଚାରିଘଣ୍ଟାର ଯାତ୍ରା ପରେ ଆମେ ପହଞ୍ଚିଲୁ ଗ୍ୟାଙ୍ଗଟକ ବସ୍ ଷ୍ଟାଣ୍ଡ୍‌ରେ । ବିରାଟ ପର୍ବତ ଖୋଲରେ ଷ୍ଟାଣ୍ଡଟି । ଘାଗ ଭଲ ହୋଇଗଲାଣି । ହୋଟେଲରେ ଜିନିଷପତ୍ର ରଖି ନିତ୍ୟକର୍ମ ପରେ ଖାଇନେଇ ମିଲିଟାରୀ ପରମିଶନ୍ ପରେ ଆମେ ବାହାରିଲୁ ଚାଙ୍ଗୁଲେକ୍‌କୁ । ବାଟରେ ଯାହା ପଡ଼ିବ ସେସବୁ ମଧ୍ୟ ଦେଖିବୁ ।

ଗାଡ଼ି ଭିତରେ ସୁନ୍ଦର ନେପାଳି ଗୀତ । କିଛି ବୁଝୁ ନ ଥିଲେ ବି ରିଦମ୍ ବହୁତ ଆକର୍ଷଣୀୟ ।

ମୁଁ ଲକ୍ଷ୍ୟ କରୁଥାଏ ଡ୍ରାଇଭର୍‌କୁ, ଖୁବ୍ ପାରଙ୍ଗମ । ବ୍ରେକ୍ ଗିଅର୍ ଚେଞ୍ଜ ସବୁ ଆମ ପାଇଁ ନୂଆ । ତଳକୁ ଚାହିଁଲେ ମୁଣ୍ଡ ଘୂରାଇ ଦେଉଥାଏ । ଯଦି କିଛି ଘଟେ ଚିହ୍ନ ବର୍ଣ୍ଣ ରହିବ ନାହିଁ । ବଡ଼ ଭୟ ଲାଗୁଥାଏ ।

ହିମର ଆଳୟ... ହିମାଳୟ । କେଉଁଠି ଖରା ତ କେଉଁଠି ବର୍ଷା । ଅଗଣିତ ବୃକ୍ଷରାଜି, ଅନାବନା ଗୁଳ୍ମ, ସର୍ବୋନ୍ନତ ଅସଂଖ୍ୟ ପାଇନ୍ ଗଛ, ଆକାଶମୁଖୀ ଓ ଛାୟାହୀନ । ସୁଦୂରପ୍ରସାରୀ ଚତୁର୍ଦ୍ଦିଗ ଖାଲି ପର୍ବତଶୃଙ୍ଗ ଧୂଆଁଳିଆ ଆସ୍ତରଣ ।

ମେଘସବୁ ଦେହରେ ଲାଗି ଯାଉଥାଆନ୍ତି । ବର୍ଷିବା ଆବଶ୍ୟକ ହୁଏନା, ମେଘସବୁ ଦେହରେ ଆପେ ଆପେ ବାଜି ଓଦା କରିଦିଏ । ଗଦା ଗଦା ଶିଳାଖଣ୍ଡ ମାଟିପିଣ୍ଡ । ପଥର ଫଟେଇ ଝରଣା ନିର୍ଗତ । ଯେତେ ଉଚ୍ଚରେ ହେଲେ ବି ଶୁଖିଲା ମାଟି ନୁହେଁ, ଝର ପାଣିରେ ଓଦା ଓଦା ବନଭୂଇଁ । ଯେଉଁ ଅଞ୍ଚଳ ସମ୍ପର୍କରେ ବହିରେ ପଢ଼ିଥିଲୁ, କଳ୍ପନାରେ ମନରେ ଆଣିଥିଲୁ ବରଫାବୃତ ହୋଇଥିବ ସମଗ୍ର ଅଞ୍ଚଳ, ତାହା ନୁହେଁ । ଅବଶ୍ୟ ହନୁମାନଟକ୍‌ରୁ ସୁଦୂର କାଞ୍ଚନଜଙ୍ଘାର ଧାର ଧାର ଜମାଟବନ୍ଧା ବରଫ ଆମେ ଦେଖିସାରିଥାଉ ସେତେବେଳକୁ ।

ଗାଡ଼ିର ଗତି ବଢ଼ିଯାଇଥାଏ । ଧୂମାଳ ମେଘଖଣ୍ଡ ଆଉ ଅତିରେକ ଘନ ସୁନୀଳ ତୁଷାରପାତର ନରମ ବଳୟ ଭିତରେ ଗାଡ଼ି ଲାଇଟ୍ ଦେଇ ଆଗେଇ ଯାଉଥାଏ । ଦୃଶ୍ୟ ଓ ଅଦୃଶ୍ୟର ଐନ୍ଦ୍ରୀଜାଲ ଆମ ଆଖି ଓ ଗାଡ଼ିର ଗତିର କ୍ଷିପ୍ରତାରେ କେବଳ ହିମାଳୟର ଅପୂର୍ବ ପ୍ରକୃତିରୂପ । ବାଟରେ ବୌଦ୍ଧଧର୍ମାବଲମ୍ବୀଙ୍କ ମୋନେଷ୍ଟରୀ, ମିଲିଟାରୀ କ୍ୟାମ୍ପ, ତଳ ଓ ଉପର କାଠ ନିର୍ମିତ ଘର ।

ଗାଡ଼ି ରହିଲା । ବିନା ପରିଶ୍ରମରେ ଆମେ ଏତେ ଉଚ୍ଚତାରେ ପହଞ୍ଚିଲୁ । ମନ୍ଦିରକୁ ଯିବାକୁ ସାମ୍ନାରେ ତିରିଶଟି ପାହାଚ । ପର୍ବତ ଉପରେ ବିରାଟ ସମତଳ ଅଞ୍ଚଳ ଜାଣିହେବନି ଏତେ ଉପରେ ବୋଲି । ବୀରଦର୍ପରେ ଉଠି ଯାଉଥାଏ ପାହାଚ ଚଢ଼ି । ଅଧାରେ ପହଞ୍ଚିଛି ଛାତି ମୋର ଉଠିଲା ଆଉ ପଡ଼ିଲା । ଏଇ ମୁହୂର୍ତ୍ତରେ ଯେମିତି ଜୀବନ ଚାଲିଯିବ । ପବନ ବହୁଥିଲେ ବି ମୁଁ ଅଣନିଶ୍ୱାସୀ । ଛାତି ଭିତରେ କିଏ ଯେମିତି ରୁନ୍ଧି ପକାଉଥାଏ । ଯାତ୍ରୀ ଜଣେ ନିର୍ଦ୍ଦେଶ କଲେ ଶୋଇ ପଡ଼ିବାକୁ । ଅମ୍ଳଜାନର ଅଭାବ ଏହାର କାରଣ । କିଛି ସମୟ ପରେ ମୁଁ ମନ୍ଦିର ମୁଖଶାଳାରେ ପହଞ୍ଚିଲି । ତଳକୁ ଚାହିଁଲି । କି ଅପୂର୍ବ ସେ ଶୋଭା । ମିଲିଟାରୀ ହେଲିକେପ୍ଟର ଆମ ତଳେ ଉଡୁଛି । ଦେଖାଯାଉଥାଏ ଆମ ତଳେ ଆକାଶ, ଯେପରି ବଡ଼ ବଡ଼ ଶାଗୁଣା ତଳେ ଉଡୁଛନ୍ତି ।

ଜୀବନରେ ଏ ଦୃଶ୍ୟ ଦେଖିବା କ୍ୱଚିତ, ଅନୁଭବ ବି ବିରଳ । ଜୀବନ ଏକ ଧରାବନ୍ଧା ଗତି ନୁହେଁ । ବ୍ୟାକରଣର ନିୟମ ପରି ବନ୍ଧାଗତ ନୁହେଁ । ଜୀବନ ପରିବ୍ୟାପ୍ତ, ବ୍ୟାପକ ସଂକୀର୍ଣ୍ଣତାହୀନ ବିଶାଳ ହିମାଳୟ ସଦୃଶ୍ୟ ମହାନ୍ । ଥରେ ଉପଲବ୍ଧି ନିମନ୍ତେ ଏ ଅଞ୍ଚଳ ବୁଲିଯିବା ଉଚିତ । ସେଇଥିପାଇଁ ଅନେକ ମହାମାନବ ଏଠିକି ଦୌଡ଼ିଆସନ୍ତି ତପସ୍ୟା ପାଇଁ । ପଛରେ ପଡ଼ିରହେ ସଂକୀର୍ଣ୍ଣତାର ପ୍ରକ୍ଷିପ୍ତ ମନ ଆଉ ଜଞ୍ଜାଳ ଓ ଜୀବନ ଛନ୍ଦ ।

ଏ ଦର୍ଶନରେ ମନ ଉଚ୍ଚାଟ ହୋଇଗଲା । ମନ ହେଲା ଏକେଲା ମଣିଷ ଚାକିରିର ମୋହ ଓ ଜଗତର ମାୟା ବନ୍ଧନ କାଟି ଏଇଠି ସବୁଦିନ ରହିଯିବାକୁ । ଚାହିଁଛି ଏକ ଲୟରେ କାଞ୍ଚନଜଙ୍ଘାର ତୁଷାରାଚ୍ଛନ୍ନ ତିନି ଧାରକୁ । ସୂର୍ଯ୍ୟକିରଣରେ ଚିକ୍ ଚିକ୍ କରୁଛି ସେ ଧାରସବୁ । ଧଳା ବରଫାବୃତ ପର୍ବତ ଶିଖରୁ ଲମ୍ବିଯାଇଛି କାହିଁ କେତେ ତଳକୁ ।

ଗୋଟିଏ ଦମ୍ପତି ସେ ଦୃଶ୍ୟକୁ ଉପଭୋଗ କରୁଥାଆନ୍ତି ଛୋଟ ପଥରଖଣ୍ଡ ଉପରେ ବସି । ରୂପବତୀ ନାରୀଟିଏ ପୁରୁଷଟିକୁ ଜାବୋଡ଼ିଧରି ବସିଥାଆନ୍ତି । ଅଟୋମେଟିକ୍ କ୍ୟାମେରାରୁ କ୍ଲିକ୍ କରି ଲାଇଟ୍ ଜଳିଗଲା । ନିରେଖି ଅନିଶା କଲି, ପୁରୁଷଟି ଅସୁସ୍ଥ ଜଣାପଡୁଥିଲେ । ଜୁଡ଼ାରେ ଭାରି ପୁଷ୍ପଗୁଚ୍ଛରୁ ଅନୁମାନ କଲି ଏମାନେ ଦକ୍ଷିଣର । ଦୂରରୁ ଚିହ୍ନା ଚିହ୍ନା ଲାଗୁଥାଏ ନାରୀଟିର ମୁଖମଣ୍ଡଳ । ମନେ ପକାଇବାକୁ ଚେଷ୍ଟା କରୁଥାଏ, ପାରୁ ନ ଥାଏ ।

ଆଗରୁ ସେମାନେ ଆସିଥିବାରୁ ପାପୁଲି ଧରାଧରି ହୋଇ ତାଙ୍କ ଗାଡ଼ିରେ ବସିଗଲେ । ଗାଡ଼ି ଷ୍ଟାର୍ଟ ନେଲା ତାଙ୍କର ।

ସ୍ମିଗ୍ଧା କେ. ରାଓ ପରି ମୋତେ ଲାଗିଲା । ସେଇ ଉଚ୍ଚତା, ସେଇ ଚାଲି । ଦେବବ୍ରତ ମନ୍ଦିର ପରିକ୍ରମା କରୁଥାଆନ୍ତି । ଡ୍ରାଇଭର ଆସି କହିଲା—"ଡେରି

ହେଇଯାଉଛି । ସନ୍ଧ୍ୟା ପୂର୍ବରୁ ଚାଙ୍ଗୁରୁ ଫେରିବାକୁ ହେବ ।'' ଗାଡ଼ିର ଗତି ବଢ଼ିବା ସଙ୍ଗେ ସଙ୍ଗେ ମୋ ଚିନ୍ତାଧାରା ଦ୍ରୁତଗତିରେ ପଛକୁ ମାଡ଼ିଚାଲିଲା ।

ପଚିଶବର୍ଷ ତଳେ ମାଙ୍ଗାଲୋରରେ ରହି ଚାରିବର୍ଷ ପଢ଼ିଲାବେଳେ ଏଇ ସ୍ନିଗ୍ଧା ସହ ପରିଚୟ ହୋଇଥିଲା । ସ୍ୱାମୀ ସହ ଥିବାରୁ ମୋତେ ପ୍ରାୟ ଦେଖିପାରିନାହିଁ, ନା ଦେଖି ନ ଚିହ୍ନିବାର ଅଭିନୟ କଲେ ?

ଗୁଡ଼େଇ ତୁଡ଼େଇ ହେଇ ମନକୁ କେତେ କଥା ଆସିଲା ହେଲେ କୌଣସିଟିରେ ସିଦ୍ଧାନ୍ତ ନେଇହେଲା ନାହିଁ । ପର୍ବତ ଉପର ମୁଣ୍ଡରେ ସେମାନଙ୍କର ଗାଡ଼ିଟି ମୋଡ଼ କାଟିଲାବେଳେ ମୋ ଦୃଷ୍ଟିରେ ପଡ଼ିଗଲା । ବ୍ୟବଧାନ ଥାଏ ପାଞ୍ଚ କିଲୋମିଟର । ଡ୍ରାଇଭରକୁ ପଚାରିଦେଲି—''ଏ ଗାଡ଼ିଟି କ'ଣ ଚାଙ୍ଗୁ ଯାଉଛି ?'' ସେ 'ହଁ' କଲା ନେପାଳି ଭାଷାରେ । ତିନିଘଣ୍ଟା ପରେ ଆମେ ଚାଙ୍ଗୁଲେକ୍‌ରେ ପହଞ୍ଚିଲୁ । ମେ ମାସରେ ଏଠି ବରଫ ପଡୁଛି । ଅଧାରୁ ବେଶୀ ବରଫ, ପାଣି କମ୍ । ଚାରିପଟ ବେଢ଼ିଛି ଉତ୍ତୁଙ୍ଗ ଶୃଙ୍ଗ, ସତେଯେମିତି ଆକାଶ ଛୁଇଁବ ସେଗୁଡ଼ିକୁ । ମଣିଷ ଉଠି ଉଠି ଏତେ ଉପରକୁ ଆସିପାରେ, କେତେ ତଳକୁ ବି ଖସିଯାଇପାରେ ତାହା କଳ୍ପନାତୀତ ।

ଥଣ୍ଡାରେ ଦେହରେ ମୋର ସାମାନ୍ୟ ଉତ୍ତାପ । ମନକୁ ପାପ ଛୁଉଁଥାଏ ଝିଟିପିଟି କଥା ସ୍ମରଣ କରି ।

ସୀମିତ ସମୟରେ ଲେକ୍‌ଟିର ସବୁ ଅଞ୍ଚଳ ବୁଲିଯିବାକୁ ଦର୍ଶକ ବ୍ୟଗ୍ର । ମୁଁ କିନ୍ତୁ ଦେଖିବା ଭିତରେ ସେ ଦମ୍ପତିଟିକୁ ଖୋଜୁଥାଏ ।

ଆଖିରେ ପଡ଼ିଲେ ସେମାନେ । ସେମାନେ ଦୂରରେ ବସି ଉପଭୋଗ କରୁଥାଆନ୍ତି ପରିବେଶ ।

ମୁଁ ସେମାନଙ୍କ ନିକଟରେ ପହଞ୍ଚିବାକୁ ପାଖ ରାସ୍ତା ଭାବି ସେଇ ଅଜଣା ରାସ୍ତାରେ ଗୋଟାଏ ଗଛର ଶିଅକୁ ଧରି ଓହ୍ଲେଇ ଯିବାକୁ ଚେଷ୍ଟା କଲାବେଳେ ଗୋଡ଼ ଖସିଗଲା । ଖସିଯାଇ ମୁଁ ପଡ଼ିଲି ଠିକ୍ ସେମାନଙ୍କ ପାଖରେ ।

ଉପରୁ ପାଟିକଲେ ଦେବବ୍ରତ, ''ତମେ ଏମିତି ଦୁଃସାହସ କରିବନି ଫେରିଲାବେଳେ; ସତ୍ୟଜିତ ! ସତ୍ୟଜିତ ! ହୁସିଆର । ଏଇନେ କ'ଣ ହୋଇଥାଆନ୍ତା ତମର !''

ଯେମିତି ସତ୍ୟଜିତ ନାଁଟି ଶୁଣିଛନ୍ତି, ସେ ଚିହ୍ନିଦେଲେ ମୋତେ ।

ସ୍ନିଗ୍ଧା ମଧ୍ୟ ପାଟିକଲେ । ମୋର କିଛି ହୋଇ ନ ଥାଏ ।

''ସତ୍ୟଜିତ୍ ! ୟୁ ଆର୍ ହିଅର୍ । ଆଫଟର୍ ଏ ଲଙ୍ଗ ଗ୍ୟାପ୍ । ହ୍ୱାଟ ଏ ସରପ୍ରାଇଜ୍ ।''

ସ୍ନିଗ୍ଧା ପରିଚୟ କରିଦେଲେ ତାଙ୍କ ପତିଦେବଙ୍କ ସଙ୍ଗେ । ସେ ରାଜସ୍ଥାନରେ ଡାକ୍ତର । କିନ୍ତୁ ଏଇ କେତେଦିନ ହେବ ହୃଦ୍‌ରୋଗୀ, ଦୁଇଟି ଷ୍ଟ୍ରୋକ୍ ହୋଇଗଲାଣି । ଯେତେଦିନ ବଞ୍ଚିବେ, ତାଙ୍କ ମନ ନେଇ ସବୁକିଛି କରିବେ ବୋଲି ସ୍ନିଗ୍ଧାର କଥାରୁ ଜଣାଗଲା । ତେଣୁ ସେମାନେ ହିମାଳୟରେ ଏଇ ଚାଙ୍ଗୁ ଅଞ୍ଚଳକୁ ଆସିଛନ୍ତି ଏ ହୃଦ୍‌ରୋଗ ସତ୍ତ୍ୱେ । ଅଧିକ ନ ବୁଲି ବସି ବସି ଦେଖୁଛନ୍ତି ଏଇ ହିମାଳୟର ଅନୁପମ ସୌନ୍ଦର୍ଯ୍ୟକୁ । ରାଜସ୍ଥାନର ଗରମକୁ ଏଡ଼େଇ ଆସିଛନ୍ତି ଏ ଅଞ୍ଚଳକୁ, ରହିବେ ଆଉ ଚାରିଦିନ । ସେମାନେ ଗ୍ୟାଙ୍ଗଟକ୍‌ର ବସଷ୍ଟାଣ୍ଡ ନିକଟ ହୋଟେଲ ଷ୍ଟାର ପାରାଡାଇଜ୍‌ରେ ରହୁଛନ୍ତି ।

ସ୍ନିଗ୍ଧାକୁ କ'ଣ କହିବି ଭାବି ପାରୁ ନ ଥାଏ । ନୀରବତା ଭାଙ୍ଗି ତାଙ୍କ ସ୍ୱାମୀ ଡଃ ଆପ୍ପାରାଓ ଇଂରାଜୀରେ ତାଙ୍କ ରହୁଥିବା ହୋଟେଲ ଆଡ଼େ ଆସିବାକୁ ଅନୁରୋଧ କଲେ ।

ସ୍ନିଗ୍ଧା କିନ୍ତୁ ଯିବାକୁ ତରତର ହେଉଥିଲେ । ମୋତେ ଲାଗୁଥିଲା ସେ ଜାଣି ଜାଣି ମୋ ସହ ସୀମିତ କଥା ହେବାକୁ ଚାହୁଁଥିଲେ । ତଥାପି ଅତୀତର ସେଇ ଉତ୍ସୁକତା ସ୍ନେହୀ ଆଖି ତାଙ୍କର ପଲକ ଭିତରେ ଅନେକ ଅନୁସନ୍ଧିତ୍ସା କିଛି ବି ଏ ପରିଣତ ବୟସରେ ମଳିନ ପଡ଼ିନାହିଁ । କିନ୍ତୁ ମୁଁ ହଠାତ୍ ଏତେ ଦୂରରେ, ଅନ୍ୟ ରାଜ୍ୟରେ ଏତେ ବର୍ଷ ପରେ ତାଙ୍କ ସାମ୍ନାରେ ଅବତୀର୍ଣ୍ଣ ହୋଇପଡ଼ିବି ସେ ,ଭାବି ନ ଥିଲେ । ସତେଯେପରି ସେ ଅତୀତକୁ ସମ୍ପୂର୍ଣ୍ଣ ପାଶୋରି ଦେଇଛନ୍ତି । ଯେଉଁ କେତୋଟି ପ୍ରଶ୍ନ ମୋ ମନକୁ ଆନ୍ଦୋଳିତ କରି ଚାଲୁଥାଏ, ସେଥିରୁ ମୁଖ୍ୟ ପ୍ରଶ୍ନଟି ଥିଲା—ରାଜି ଓ ଅରାଜି ସମ୍ପର୍କରେ କହିବା ମୁତାବକ ଚିଠିଟି ନ ଲେଖିବାର କ'ଣ ଉଦ୍ଦେଶ୍ୟ ଥିଲା ? ଯଦି ପିତାମାତାଙ୍କୁ ଅସନ୍ତୁଷ୍ଟ ନ କରି ସେମାନଙ୍କ ପ୍ରସ୍ତାବ ମୁତାବକ ବିବାହ କରିଦେବାର ଇଚ୍ଛା ଥିଲା, ତେବେ ସାମାନ୍ୟ ଚିଠିଟିଏ ଦେଇ ଅସମ୍ମତି ଜଣେଇ ଦେବାରେ ସେମିତି କିଛି କ୍ଷତି ତାଙ୍କର ହୋଇ ନଥାନ୍ତା ? ନାରୀମାନେ ପ୍ରତାରଣାର ଶୀର୍ଷରେ ଏ ଧାରଣା ଅନ୍ତତଃ ମୋର ଆସି ନ ଥାନ୍ତା ।

ଏସବୁ ପ୍ରଶ୍ନର ଉତ୍ଥାପନର ସ୍ଥାନ ଡଃ ଆପ୍ପାରାଓଙ୍କ ସାମ୍ନାରେ କରିହେବନି ।

ସେମାନେ ଚାଙ୍ଗୁରୁ ବିଦାୟ ନେଲେ ।

ମୁଁ ଫେରିଗଲି ଦେବବ୍ରତଙ୍କ ପାଖକୁ ଭାରି ମନ ନେଇ । ଜୀବନରେ ପ୍ରେମଠାରୁ ବଳି କରୁଣ କିଛି ନାହିଁ । ଇଞ୍ଜିନିୟରିଂ ପଢ଼ିବାବେଳେ ଘରଠାରୁ ସେଇ ଦୀର୍ଘ ଚାରିବର୍ଷ କାଳ ଯେ ସ୍ନିଗ୍ଧାର ସାନ୍ନିଧ୍ୟରେ ରହିଥିବାରୁ ଏଡ଼େ ଚଞ୍ଚଳ ଚଞ୍ଚଳ ସେ ଦିନଗୁଡ଼ିକ ଗଡ଼ିଗଲା ଜମା ଜଣାପଡ଼ି ନ ଥିଲା । ନାରୀ ପୁରୁଷର ସମ୍ପର୍କରେ ଯୌନ ପ୍ରେମ କଥା ପ୍ରଥମେ ମନକୁ ଆସେ । ତା' ମଧ୍ୟ ଚିନ୍ତାଧାରାରେ ନ ଥିଲା କହିଲେ ଭୁଲ ହେବ । ସ୍ନିଗ୍ଧା ବିବାହ ବନ୍ଧନକୁ ଏକ ପବିତ୍ର ମୁହୂର୍ତ୍ତ କହି ସେ ବନ୍ଧନର ଡୋରି ନ ଲାଗିବା ଯାଏ ତାହା ଅସମ୍ଭବ କହି କେତେ ଥର ଟାଳି ଦେଇଥିଲେ ।

ଶେଷ ବର୍ଷ ସେ ଫେରିବେ ତାଙ୍କ ରାଜ୍ୟକୁ ମୁଁ ଫେରିବି ଓଡ଼ିଶା । ଗୋଟିଏ ଅଭିମାନଭରା ମୁହୂର୍ତ୍ତରେ ମାଙ୍ଗାଲୋର୍ ସମୁଦ୍ର କୂଳରେ ମୁଁ ଶୁଣି ଶୁଣି ତେଲୁଗୁ ଶିଖିଗଲିଣି, ଗାଳିଫାଳି ଦେଲେ ମୁଁ ବୁଝିଯିବି', କହି ସ୍ନିଗ୍ଧାକୁ ଡରେଇଦେଲି ।

ସେ କହିଥିଲେ ଭାରି ଆବେଗରେ—''ତେବେ ବାପା ମା'ଙ୍କୁ ମନେଇବାକୁ ଆଉ ଅସୁବିଧା ହେବନି ।''

''ପ୍ଲିଜ୍ ତେଲୁଗୁରେ ଲେଖାଲେଖି ବି ଚେଷ୍ଟା କର ।''

''ସବୁ ସମ୍ଭବ, ଜଣେ ସାଙ୍ଗକୁ ମାଷ୍ଟ୍ର ବନେଇଛି ।'' ମୋ ଓଜନିଆ କଣ୍ଠରେ ସ୍ୱଷ୍ଟ ସ୍ୱର । ''ସେ ତେଲୁଗୁ ଶିଖାଉଛି ଖୁବ୍ ମନ ଦେଇ ।''

ସ୍ନିଗ୍ଧା ଭାରି ଖୁସି ହୋଇଥିଲେ ସେଦିନ । ଦୀର୍ଘ ସମୟ ଧରି ବସି ବାଲିରେ ଗଢ଼ିଥିଲେ ସୁନ୍ଦର ସୁନ୍ଦର ମୂର୍ତ୍ତି ସବୁକୁ । ମୂର୍ତ୍ତି ସବୁକୁଁ ଦେଖିବାକୁ ଜମିଥିଲେ ଅନେକ ଲୋକ । ପେଣ୍ଟିଂ ମଧ ସେ କରନ୍ତି । ପୁରସ୍କୃତ ବି ହୋଇଛନ୍ତି । ମାଙ୍ଗାଲୋରରେ ରହିବାର ଶେଷ ଦିନ । କି ନିଷ୍ଫଳା, ଶୁଷ୍କ ଓ ବୈଚିତ୍ର୍ୟହୀନ ଦିନଟି ସତରେ ।

ସ୍ନିଗ୍ଧା ଥାଆନ୍ତି ଟ୍ରେନ୍ ଭିତରେ, ମୁଁ ବାହାରେ । ମୋ ଟ୍ରେନ୍ ବିଳମ୍ବ ଥାଏ । ସେ କଥା ଦେଇଥିଲେ ବାପା, ମା'ଙ୍କ ସମ୍ମତି ଆଣି ମୋତେ ଚିଠିରେ ଲେଖିଦେବେ । ଝରକାରେ ବାହାରିଥିବା ହାତକୁ ତାଙ୍କର ଖୁବ୍ ନିବିଡ଼ ଭାବରେ ଓଠରେ ଚାପି ଦେଇଥିଲି । ସେଇ ଥିଲା ଶେଷ ।

ତାପରେ ଗ୍ୟାଙ୍ଗଟକ୍‌ରେ ପଚିଶ ବର୍ଷ ପରେ ।

ହେଲେ ସ୍ନିଗ୍ଧା ମୋ ପ୍ରତି ଏମିତି କଠୋର ହୋଇପଡ଼ିଲେ ମୁଁ ଭାବି ପାରୁ ନ ଥାଏ । ପରେ ଭାବିଲି କାଳେ ତାଙ୍କ ସ୍ୱାମୀଙ୍କ ନିକଟରେ ଧରାପଡ଼ିଯିବେ ସେଥିପାଇଁ ହୁଏତ ଜାଣି ଜାଣି ବ୍ୟବହାର ଏମିତି କଲେ; କିନ୍ତୁ ଭିତରେ ଭିତରେ ନିଶ୍ଚୟ ତାଙ୍କ ମନ ଚହଲି ଯାଇଥିବ ।

କାହିଁକି ବା ଭାବାନ୍ତର ଆସିଥିବ । ସେ ଯେ ପରିବାର ଗଢ଼ି ସାରିଛନ୍ତି । ସ୍ୱାମୀଙ୍କ ଆଖିରେ ଛଳନାର ଇନ୍ଦ୍ରଜାଲ ସୃଷ୍ଟି କରି ପୁରୁଣା ପ୍ରେମିକକୁ ପ୍ରତାରିତ କରିବାରେ ତ ସ୍ୱାଦ ଭିନ୍ନ ।

ଅନେକ ପ୍ରଶ୍ନ ଆସିଛି । ସମାଧାନ ନ ହୋଇ ମନରେ ଅଧିକ ଆନ୍ଦୋଳନ ଆଣିଛି । କେମିତି ହେଲେ ସ୍ନିଗ୍ଧା ସହ ନିରୋଳାରେ କଥା ଦି' ପଦ ହେବାକୁ ହିଁ ହେବ ।

କ୍ଳାନ୍ତବଶତଃ ଦେବବ୍ରତ ଶୋଇପଡ଼ିଲେ । ବହିଟିଏ ଧରି ମୁଁ ପୃଷ୍ଠାସବୁକୁ ଲେଉଟାଉ ଥାଏ । ଆଖିରେ ନିଦ ନ ଥାଏ ।

ବାରମ୍ବାର ଅତୀତର ସେ ଦିନଗୁଡ଼ିକର ସ୍ମୃତି ମନ ଭିତରେ ନାଚି ଯାଉଥାଏ । ମାଙ୍ଗାଲୋରରେ ମନ୍ଦିର ପରିଦର୍ଶନ । ସମୁଦ୍ରକୂଳରେ ବାଲିରେ ବସି ବସି ସ୍ନିଗ୍ଧାର ମୂର୍ତ୍ତିଗଢ଼ା ଦୃଶ୍ୟ ଅଛିଣ୍ଡା ଗପସପ, ମାନ ଅଭିମାନ ସବୁ । ଚଷମା ଖୋଲି ଆଖି ପୋଛିଦେଲି । ଘରକୋଣ ଛାତରେ ବଡ଼ ବୁଢ଼ିଆଣୀ ବସାଟିଏ । ଲାଇଟ୍‌ରେ ସ୍ପଷ୍ଟ ଦେଖାଯାଉଥାଏ । ପବନ ନ ଥାଇ ବସାଟି ବେଶ୍ ଦୋହଲୁଛି । ମୈଥୁନରତ ଦୁଇଟି ବୁଢ଼ିଆଣୀ । ଦୁଇ ପ୍ରାଣୀ ମିଳନରେ ଅଫୁରନ୍ତ ପୁଲକ ଆଉ ଶିହରଣ । ବଂଶ ବୃଦ୍ଧି ଲାଗି ସଙ୍ଗମ ବିଧିତ ନିର୍ଦ୍ଦିଷ୍ଟ ବିଧାନ ଓ କର୍ମ । ପ୍ରେମର ଉତ୍ତାଳ ତରଙ୍ଗରେ ତଲ୍ଲୀନ ଦୁଇଟି ହୃଦୟ । ଉଚ୍ଛୁଳୁଛି ଏକାତ୍ମ ହେବାର ତରଙ୍ଗ । କାୟା ଓ ଛାୟା ପରି ସେମାନେ ଏକ ଓ ଅଭିନ୍ନ ।

ମୁଁ ସେମିତି ସେମାନଙ୍କୁ ଦେଖୁଥାଏ । ହଠାତ୍ ଅଣ୍ଡିରା ବୁଢ଼ିଆଣୀଟି ନିସ୍ତେଜ ହୋଇଗଲା । କ୍ଳାନ୍ତି ଓ ଅବସାଦରେ ଆଚ୍ଛନ୍ନ ହୋଇଗଲା ତା'ର ସମଗ୍ର ଶରୀର । କିନ୍ତୁ ମାଈ ବୁଢ଼ିଆଣୀଟି ତା'ର ତେଜୋଦୀପ୍ତ ବାହୁରେ କାବୁ କରିଦେଲା ଅଣ୍ଡିରା ବୁଢ଼ିଆଣୀଟିକୁ । ପାଟି ମେଲେଇ ଅଣ୍ଡିରା ବୁଢ଼ିଆଣୀକୁ ଗିଳିଦେଲା । ସେତେବେଳକୁ ଦୁର୍ବଳ ବୁଢ଼ିଆଣୀର ପ୍ରତିରୋଧର ଶକ୍ତି କ୍ଷୟ ହୋଇଯାଇଥିଲା ।

ମୃତ୍ୟୁ ଆଉ ପ୍ରେମ ଅନୁରୂପ ।

ମିଳନର ପରିଶେଷ ମୃତ୍ୟୁ ଏବଂ କ୍ଷୟରୁ ହିଁ ମୃତ୍ୟୁ । ସଙ୍ଗମର ଶେଷ ପରିଣତି ନିଃଶେଷ । ଏପରି ଅନୁଭୂତି ମିଳିଥିଲା ଆଗରୁ । ମାଈ ଓ ଅଣ୍ଡିରା ଏଣ୍ଡିପୋକମାନଙ୍କ କ୍ଷେତ୍ରରେ ଠିକ୍ ଏଇଆ । ପ୍ରାଣଭରି ଭଲପାଇବାରେ କେତେ ପ୍ରତିବନ୍ଧକ ସତେ ? ଦୁଇ ହୃଦୟର ମିଳନ ପଥରେ କେତେ ବାଧା । ଯାହାହେଉ ପରାଧୀନତାର କ୍ଷୟରୁ ମୁକ୍ତ ରହି ଏକେଲା ସ୍ୱାଧୀନ ଜୀବନ ବିତେଇବା ନିଆରା । ଯା' ମଧ୍ୟ ଜାଣେ ନିଜର ସ୍ୱାଧୀନତା ଆବିଷ୍କାର କରି ମଣିଷ ନିରାଶ ହୁଏ । କାରଣ ସ୍ୱାଧୀନତାମାନେ ଏକ ଶୂନ୍ୟତା ଭିତରେ ନିଜର ବାଟ ବାଛିବା, ଶୂନ୍ୟତା ଭିତରେ ମଣିଷ ଯେଉଁ ଦିଗରେ ଚାଲିବ, ତାହା ତା'ର ପଥ । ଯେମିତି ସ୍ନିଗ୍ଧାର କ୍ଷୟିତ ପ୍ରେମରେ କ୍ଷତବିକ୍ଷତ ଆଉ ପ୍ରତାରିତ ହୋଇ ସଂସାର ବିମୁଖ ଏକେଲା ଚାଲିବାର ସ୍ୱାଧୀନ ଜୀବନ ମୋର । ଦେବବ୍ରତ ଡେରିରେ ଉଠନ୍ତି । ପ୍ରାୟ ଦିନ ଆଠ । ମୁଁ ହୋଟେଲ ପାରାଡାଇଜ୍ ଆଡ଼େ ମୁହାଁଇଲି । ରାସ୍ତାରେ ଲୋକମାନେ ଚଳପ୍ରଚଳ ହେଲେଣି । ଦୂରରୁ ଦେଖିଲି ହୋଟେଲ ଟେରାସ୍‌ରେ ସ୍ନିଗ୍ଧା ଏପାଖ ସେପାଖ ହେଉଛନ୍ତି । ସେ ମଧ୍ୟ ମୋତେ ଦେଖି ତଳକୁ ଆସିଲେ । ବାହାରେ ଠୋପା ଠୋପା ନରମ କାକର । ଶିଶିର ବିନ୍ଦୁରେ ତାଙ୍କ ପରିଣତ ନିଟୋଳ ମୁହଁ ଉପରେ ମୋଡ଼ି ମୋଡ଼ି ମୁକୁଳିତ ଚୂର୍ଣ୍ଣ କୁନ୍ତଳ ।

ଆମେ ଏକାଠି ଚାଲିଚାଲି ପହଞ୍ଚିଲୁ ହୋଟେଲର ଲାଷ୍ଟ ପଏଣ୍ଟ ପର୍ବତ ଧାରରେ । ସେଇଠୁ ଦିଶୁଛି, ସବାତଳ ପର୍ଯ୍ୟନ୍ତ ସହର । "ତମେ ଯଦି ଆସି ନ ଥାଆନ୍ତ, ଆଜି ତେବେ ଆମ ସହ ଦେଖା ହୋଇ ନ ଥାଆନ୍ତା । ଯା'ଙ୍କ ଦେହ ଟିକିଏ ବିଗିଡ଼ି ଯାଇଛି । ଆମେ ଆଜି ଫ୍ଲାଇଟ୍‌ରେ ରାଜସ୍ଥାନ ଫେରିଯିବୁ ।"

ପଚାରିଲି—''କ'ଣ ଚିଠି ଦେବାକୁ ଭୁଲିଗଲ ?''

''ନା ମୁଁ ରେଜେଷ୍ଟ୍ରି ଡାକରେ ତୁମ ଠିକଣାରେ ଚିଠି ଦେଇଥିଲି, ତମେ ତ ଉତ୍ତର ଦେଲନାହିଁ । ଅନେଇ ଅନେଇ ମୋ ଆଖିରୁ ପାଣି ମଲା । ଶେଷରେ ବାପା ମା' ସ୍ଥିର କଲେ ଡଃ ଆପ୍ପାରାଓଙ୍କ ସଙ୍ଗେ ମୋର ବିବାହ ।''

''ରେଜେଷ୍ଟ୍ରି ଡାକରେ ତମେ ପଠାଇଥିବା ପେଣ୍ଟିଂ ପାଇଥିଲି ।''

''ସେଇଟା ତ ମୋ ଚିଠି ।'' ଇଂରାଜୀ ଆଳାପନ ବେଶ୍ ସ୍ୱଚ୍ଛ ଥିଲା ଦୁହିଁଙ୍କର ।

ମୁଁ କ୍ଷଣକେ ନୀରବ ରହିଗଲି ।

''ଯାହା ଘଟିବାର ଥିଲା ଘଟି ସାରିଛି । ଆଉ ସେ ଅତୀତକୁ ରୋମନ୍ଥନ କରିବାକୁ ଏ ବୟସରେ ମୋ ହାତରେ ସମୟ ନାହିଁ ।''

ହୋଟେଲ ବୟଟି ଆସି ଖବର ଦେଇଦେଲା ଡଃ ଆପ୍ପାରାଓ ଖୋଜୁଛନ୍ତି । ସ୍ନିଗ୍ଧା ବ୍ୟସ୍ତ ହୋଇ ବାଏ... ବାଏ... କହି ଦ୍ରୁତଗତିରେ ଚାଲିଗଲେ ।

ପେଣ୍ଟିଂ ଭିତରେ ଚିଠି ନ ଥିଲା, ଖାଲି ଚିତ୍ର । ପ୍ରତାରଣାର ନିଛକ ଚିତ୍ରକଳ୍ପ । ନାରୀ ଭିତରେ ସତରେ କେତେ ରୂପ କେତେ ଅବିଗୁଣ । ଡଃ ଆପ୍ପାରାଓଙ୍କୁ ପାଇ ସେ ଖୁସି । ମୋ ଭଳି ବିଦଗ୍ଧ ପ୍ରେମୀଟିକୁ ସ୍ୱାମୀ ରୂପେରେ ପାଇଥିଲେ ହୁଏତ ଏତେ ଶାନ୍ତି ମିଳି ନ ଥାଆନ୍ତା ସ୍ନିଗ୍ଧାଙ୍କୁ ।

ଆମେ ଯାତ୍ରାକୁ କାଣ୍ଟ ଛାଣ୍ଟ କରି ବହୁପୂର୍ବରୁ ଫେରିଲୁ ଭୁବନେଶ୍ୱର । ପୁରୁଣା ଟ୍ରଙ୍କ୍ ତଳୁ ଖୋଜାଖୋଜି କରି ସ୍ନିଗ୍ଧା ପଠେଇଥିବା ପରିତ୍ୟକ୍ତ ଭାବରେ ଥିବା ପେଣ୍ଟାଏ ଉନ୍ମୀଳିତ ନାଲି ଓ ହଳଦିଆ ରଙ୍ଗରେ ଅଙ୍କା ଯାଇଥିବା ଗୋଲାପ ଫୁଲର ଚିତ୍ରଟିକୁ କାଢ଼ିଲି । ଚିତ୍ର ମଝିରେ ପୂର୍ଣ୍ଣ ପ୍ରସ୍ଫୁଟିତ ବଡ଼ ଗୋଲାପ ଦୁଇଟିର ଚିତ୍ର । ମଝିରେ କେତୋଟି ନୀଳ ଗାର । ଗାର ଛଡ଼ା କିଛି ମୁଁ ଜାଣିପାରିଲିନି । ସେଇଟିକୁ ପକେଟରେ ରଖି ମୋ ଷ୍ଟେନୋ ରାଓ ବାବୁଙ୍କୁ ଯାଇ ଦେଖାଇଲି ।

ସେ ନିରେଖି ଦେଖି କହିଲେ ସେଥିରେ ଲେଖାଅଛି—'ନେନୁ ଅପ୍ପୁକୁନ୍ନାନୁ ।' ମାନେ ଆଇ ଆଗ୍ରି ।

ସତେଯେମିତି ବଜ୍ର ପଡ଼ିଗଲା ମୋ ମୁଣ୍ଡରେ । ପଶ୍ଚାତ୍ତାପର ଅନ୍ତ ନ ଥାଏ, କାହିଁକି କହିଥିଲି ମୁଁ ତେଲୁଗୁ ପଢୁଛି, ଲେଖୁଛି ବୋଲି ସ୍ନିଗ୍ଧାଙ୍କୁ ।

○

# ସୀମାରେଖା

ପଦୋନ୍ନତି ସିଡ଼ିର ଫଳକ ତେଇଁ ସିଦ୍ଧାନ୍ତ ଆଜି ସର୍ଜରୀ ବିଭାଗର ଆସୋସିଏଟ୍ ପ୍ରଫେସର । ଏଇ କାଲି ପରି ଲାଗୁଛି କେତେ ଶୀଘ୍ର ସମୟ ସ୍ପିରିଟ୍ ପରି ଉଡ଼ିଯାଇଛି ।

ଆସିଷ୍ଟାଣ୍ଟ ସର୍ଜନ ଭାବରେ କୋରାପୁଟ ଜିଲ୍ଲାରେ ପ୍ରଥମ ଚାକିରି । ନୂଆ ନୂଆ ବାହାହୋଇ ସାଥିରେ ନବ ବିବାହିତା ପତ୍ନୀ ସୁକନ୍ୟା ଆଉ ନିଜ ମା'ଙ୍କୁ ଧରି ଯେତେବେଳେ ଚାକିରି ସ୍ଥାନରେ ପହଞ୍ଚିଥିଲେ ସଦର ମହକୁମାଠୁ ପଚାଶ କିଲୋମିଟର ଦୂରର ନୂଆ ଜାଗାଟିରେ ଏମିତି ଘଞ୍ଚ ଜଙ୍ଗଲକୁ ଦେଖି ସୁକନ୍ୟା ଡରି ଯାଇଥିଲେ ଯେ, କ୍ୱାଟର୍ସ ଭିତରେ ସାଙ୍ଗରେ ସବୁବେଳେ ଜଣେ କିଏ ଥିବେ । ଶାଶୁ ନ ହେଲେ ସିଦ୍ଧାନ୍ତ ନିଜେ । ସେ ଡର ସୁକନ୍ୟାଙ୍କର ସେଠୁ ବଦଳି ହୋଇ ଆସିବା ପର୍ଯ୍ୟନ୍ତ ବି ଥିଲା । ଯେତେ ଧରାଧରି କଲେ ବି ବଦଳି ହେଲାନି ସେ ତିନି ବର୍ଷ । ବଦଳି ନିୟମର ମୂଳତତ୍ତ୍ୱକୁ ଭିତ୍ତି କରି କେତେ ଥର ଯେ ତାଙ୍କର ନିବେଦନ ଅଗ୍ରାହ୍ୟ ହୋଇଛି ତାର କଳନା ପୁରୁଣା ଡାଇରୀରେ ଲିପିବଦ୍ଧ । ସେ ତିନିବର୍ଷ ବଡ଼ କଷ୍ଟରେ କଟିଛି । କିନ୍ତୁ ସେ ତିନିବର୍ଷର ରହଣି, ମଫସଲ ଅଞ୍ଚଳର କାର୍ଯ୍ୟ କରିବାର ଦକ୍ଷତା ଓ ପାହାଡ଼ି ମୁଲକର ଅଭିଜ୍ଞତା ସ୍ନାତକୋତ୍ତର ଶିକ୍ଷା ନିମନ୍ତେ ମନୋନୀତ ହେବାରେ ଯଥେଷ୍ଟ ସାହାଯ୍ୟ କରିଛି ।

ମା' ଆଉ ସୁକନ୍ୟାଙ୍କୁ ଗାଁରେ ଛାଡ଼ି ସିଦ୍ଧାନ୍ତ ଚାଲିଆସିଲେ କଟକରେ ପିଜି କରିବାକୁ । ଭୁଲିଗଲେ ପୂର୍ବର ଚାକିରି ଜୀବନ, ବୟସର ଦାୟିତ୍ୱବୋଧ । ଫେରିଗଲେ ସେଇ ଚଳଚଞ୍ଚଳ ଚପଳାମିର ପୁରୁଣା ଛାତ୍ର ଜୀବନକୁ । ଛାତ୍ରନେତା ସାଜି ମାରଧର, ନାଲି ଆଖି, ଚାରି ଖୁଣ୍ ମାଫ୍ ।

ବେପରୁଆ ଢଙ୍ଗରେ ବରିଷ୍ଠଛାତ୍ର ଜୀବନ ଆରମ୍ଭ ହେଲା ଆଉ ସରିଲା । ପରୀକ୍ଷାରେ ସେତେ ଭଲ ଫଳାଫଳ ନ ପାଇ ବି ନିଜ ପତିଆରାରେ ଧସେଇ ପଶିଆସିଲେ କଲେଜ ଚାକିରିରେ; ଆଜି ଆସୋସିଏଟ୍ ପ୍ରଫେସର । ପଛକୁ ଅନେଇବାକୁ ମୁହୂର୍ତ୍ତେ ଫୁରସତ୍ ନାହିଁ ।

ଚାକିରି ଛଡ଼ା ଛୁଟିଦିନ ଓ ରବିବାର ଗାଁରେ କ୍ଲିନିକ୍ । ଅନ୍ୟଦିନରେ ନର୍ସିଂହୋମ୍ ଡିଉଟି । ପାର୍ଟ ଟାଇମ୍ । ରୋଗୀଦେଖା, କଞ୍ଚାପଇସାରେ ପକେଟ୍ ସଦାବେଳେ ଗରମ । କଥା ପଡ଼ିଲେ ମନକୁ ଆସେ ଆଲ୍ଲା ଜିସ୍କୋ ଦେତା... ।

କେତେବେଳେ କେମିତି ମନେପଡ଼ିଗଲେ ହାତ ଟେକି ଉପରବାଲାକୁ ଥରେ ଅଧେ ଜୁହାର କରନ୍ତି । ପୂଜାପାଠ, ମନ୍ଦିରରେ ସବୁ ଦିଅଁ ପୂଜା ସ୍ତ୍ରୀ ସୁକନ୍ୟା ତ

କରୁଛନ୍ତି । ନାନା ଝଞ୍ଜାଳ ଦାୟିତ୍ୱରେ ରହିଲେ କେମିତି ବା ସମୟ ବଞ୍ଚେଇ ଦିଅଁ ଦେବତା କଥା କରିହେବ । ସୁକନ୍ୟା ସେ ସବୁ ଦାୟିତ୍ୱ ମୁଣ୍ଡେଇ ନେଲାପରେ ସେ କଥାରେ ମୁଣ୍ଡ ପୂରାନ୍ତି ନାହିଁ ସିଦ୍ଧାନ୍ତ ।

ଚିକିତ୍ସା, ଅପରେସନ୍, ଉପଚାର ଓ ପରୀକ୍ଷା ନିରୀକ୍ଷାରେ ରୋଗୀଙ୍କ କଥା ବୁଝିବାଲାଗି ଛୋଟିଆ ଟିମ୍‌ଟିଏ ଗଢ଼ି ଦେଇଚନ୍ତି ସିଦ୍ଧାନ୍ତ । ସେ ଟିମ୍‌ଟିର ପ୍ରଫେସରଠୁଁ ଅର୍ଦ୍ଦଳୀ ପର୍ଯ୍ୟନ୍ତ ଅନେକ ସାମିଲ ହୋଇଚନ୍ତି । ସମସ୍ତଙ୍କର ଫାଇଦା ସେଥିରେ । କ୍ଲିନିକ୍‌ର ପ୍ରଚାର, ନର୍ସିଂହୋମ୍‌ର ପ୍ରସାର, ଡାକ୍ତର ଭାବରେ ଖ୍ୟାତି ଓ ସୁନାମ ଇତ୍ୟାଦି ଆପେ ଆପେ କାନକୁ ଦି'କାନ ହୋଇ ପ୍ରଚାର ହୋଇଯାଏ । ରୋଗୀ ଭଲ ହୁଅନ୍ତୁ ବା ଅପରେସନ୍‌ରେ ମରନ୍ତୁ, ତାଙ୍କର ଯାଏ ଆସେ ନାହିଁ । ରିକ୍ସାରୁ ରୋଗୀ ଓହ୍ଲାଉ ଓହ୍ଲାଉ ଆରମ୍ଭ ହୁଏ ରିକ୍ସାଚାଳକଠୁଁ ସ୍ୱେଚ୍ଛାସେବକଙ୍କର ବାତ୍ ଫୁସୁଲାମି, କିଏ କେମିତି ଡାକ୍ତର, ପଇସା କମ୍ ବେଶି, ଚିକିତ୍ସା ଭଲ ଆଉ ଖରାପ, ସୁବିଧା ଅସୁବିଧା ଇତ୍ୟାଦି ।

ଏମାନଙ୍କ ହାବୁଡ଼ରୁ ଖସିବାକୁ ହତାଶିଆ ରୋଗୀ ପାଖରେ ଚିନ୍ତା କରିବାକୁ ସମୟ ନଥାଏ । ରୋଗ ଯେ ବାଘ ପରି ମାଡ଼ିବସେ । ବାହାରେ ପ୍ରଚାର, ସରକାରୀ ଡାକ୍ତରଖାନାରେ ଡାକ୍ତରଙ୍କର ରୋଗୀ ପ୍ରତି ନିଘା ନଥାଏ । ଡାକ୍ତରଖାନାର ସବୁ ଯନ୍ତ୍ରପାତି ଅକାମୀ ଧନ୍ଦରା ଆଉ କୋଉ କାଳର । ସଠିକ୍ ନିର୍ଦ୍ଧାରଣ ସେ ସବୁ ଯନ୍ତ୍ରପାତିରେ ମିଳିବା ମୁସ୍କିଲ୍ । ଏଣୁ ରୋଗୀ ଯେତେ ଯୁଆଡ଼େ ପରୀକ୍ଷା ନିରୀକ୍ଷା କରିଥିଲେ ବି ଆସୁ ଆସୁ ସାନି ସମାଦେଶ ଲେଖି ଦିଆଯାଏ ପ୍ରେସ୍‌କ୍ରିପସନ୍‌ରେ । ସେ ସବୁ ପରୀକ୍ଷା ପୁଣି ଡାକ୍ତରଙ୍କ ସୁପାରିଶ କ୍ଲିନିକରେ । ଏଥିରୁ ମଧ୍ୟ ବେଶ୍ କିଛି ଫାଇଦା ଆସେ ଡାକ୍ତରଙ୍କୁ । ବିନା ପଇସାରେ ମୁଣ୍ଡ ପୁରାନ୍ତି ନାହିଁ ଡାକ୍ତର ସିଦ୍ଧାନ୍ତ । ଘର ଦାୟିତ୍ୱ ସବୁ ସୁକନ୍ୟାଙ୍କର । କେବଳ ଘର କାହିଁକି, ଘର ସମ୍ପର୍କୀୟ ଯେତେ କାମ ସବୁ ବୁଝନ୍ତି ପତ୍ନୀ ସୁକନ୍ୟା । ଚାକର, ପୂଝାରିଙ୍କର ଅଳି ଅର୍ଦ୍ଦଳି ସବୁକିଛି । ଡାକ୍ତର ଭାବରେ ଆଉ ପ୍ରାଇଭେଟ୍ ପ୍ରାକ୍ଟିସ୍‌ରୁ ସିନା ପର୍ଯ୍ୟାପ୍ତ ଉପାର୍ଜନ କରୁଛନ୍ତି, ଚାରିଆଡ଼େ ସୁନାମ ରହିଛି ଡାକ୍ତର ସିଦ୍ଧାନ୍ତଙ୍କର, ହେଲେ ସୁକନ୍ୟା ଯେ ଜଣେ ସୁଗୃହିଣୀ, ସୁହୃଦୟ ତାହା ଜାଣିବାକୁ କାହାରି ବାକି ନାହିଁ । କିଏ ଯଦି ଦୁଃଖ ଜଣେଇଲା ବାବୁଙ୍କ ଅଗୋଚରରେ ଅଯାଚିତ ଭାବରେ ହାତ ଖୋଲି ଦିଅନ୍ତି ସେ । ତାଙ୍କ ଚାରିପଟେ ଚାକର ପୁଝାରିଙ୍କ କଥା କହିଲେ ନସରେ । ସମସ୍ତଙ୍କ ପେଟପାଟଣା ବୁଝିବାରେ ଆଦୌ କୁଣ୍ଠିତ ହୁଅନ୍ତି ନାହିଁ ସୁକନ୍ୟା । ଭାବ ଅଭାବରେ ଅଣ୍ଟିରେ ଟଙ୍କା ଗୁଞ୍ଜି ଦିଅନ୍ତି । ବେଳେ ବେଳେ ଅଭିଯୋଗ କରନ୍ତି ସିଦ୍ଧାନ୍ତ । କୁଆଡ଼େ ଏମାନଙ୍କୁ ମୁହଁ ବଢ଼େଇ ଦେଇଛନ୍ତି ମା' । ବାହାର କରିଦେଲେ ଯିବେନି ।

ତୁଠପଥର ପରି ଘର ପିଣ୍ଡାରେ ବସି ଅନଶନ କରିବେ । ଏଇଥିପାଇଁ କେତେଥର ଖୁଟ୍‌ଖାଟ୍ ସୁକନ୍ୟାଙ୍କ ସହ । ସୁକନ୍ୟା ବି ଶୁଣି ନ ଶୁଣିଲା ପରି ନୀରବ

ରହିଯାଆନ୍ତି ଅନେକ ଥର । ସିଦ୍ଧାନ୍ତ କିନ୍ତୁ ଏବେ ସ୍ଥିର କରିଛନ୍ତି ଘର କଥାରେ ହସ୍ତକ୍ଷେପ କରିବେ ନାହିଁ । ଗାଁରେ କୋଠି, ଆଗରୁ ଜମି କିନ୍ତୁ ନଥିଲା । ଏବେ ଦଶମାଣ । ଫାର୍ମହାଉସ୍ ନଡ଼ିଆ ବଗିଚା । ମାଛ ପୋଖରୀ । ହୁଡ଼ାରେ ଧାଡ଼ି ଧାଡ଼ି କଦଳୀ ବୁଦା । ତା'ର ଜଗାରଖା ।

ପୁଅର ଟ୍ରାଭେଲ୍ ଏଜେନ୍ସି, ଝିଅର ଡାକ୍ତରୀ ପାଠ, ରାଜଧାନୀରେ ଦି'ଟା ବଡ଼ ଇମାରତ୍ ଆଉ ଘରଭଡ଼ା । ଏସବୁ ତ ସୁକନ୍ୟାଙ୍କ ପାଇଁ କାମ ଟିକିଏ ନୁହେଁ । ବେଶ୍ ଉପଲବ୍ଧି କରନ୍ତି ସିଦ୍ଧାନ୍ତ । ସୁକନ୍ୟାଙ୍କୁ କିଛି କୁହନ୍ତି ନାହିଁ । ଅଗାଧ ବିଶ୍ୱାସ ଆଉ ଅତୁଟ ଆଶା ଭରସାର ସହଧର୍ମିଣୀ ସୁକନ୍ୟା । ଇଚ୍ଛା ଥାଇ ବି ଗାଁଭୂଇଁରେ ମନମୁତାବକ ବୁଲିହୁଏ ନାହିଁ । ଗାଁ କଥା ମନେପଡ଼ିଲେ ପ୍ରଥମେ ମନକୁ ଆସେ ପିଲାଦିନର ଦୁଃଖଦୈନ୍ୟର ସେଇ ଅତୀତର ଅଭୁଲା ଦିନଗୁଡ଼ିକ, ଗାଁ ଗୋହରୀରେ ଡୋଟାମାଳ, ଲୁଚି ଲୁଚି ବେତ ବଇଁଚି କୋଳି ଆଉ ପିଜୁଳିଖିଆ, ଆମ୍ବତୋଳା, କୋଳି ସାଉଁଟା, ଚାଲିଗଲା ଶଗଡ଼ରେ ହାତ ମାରି ମା'ଙ୍କଠୁ ମାଡ଼, ପଢ଼ା ଲାଗି ମା'ଙ୍କ ଗହଣା ବନ୍ଧା । ଆହୁରି ଏମିତି ଅନେକ କଥା ।

ମେଧାବୀ ଛାତ୍ର ଭାବରେ ତାଙ୍କ ଅଞ୍ଚଳଯାକର କେତେ ଛାତ୍ର ତାଙ୍କୁ ଟପିଯିବାକୁ କେତେ କଠିନ ସାଧନା କରିଥିଲେ, ହେଲେ କେହି ସିଦ୍ଧାନ୍ତଙ୍କୁ ଟପିପାରି ନଥିଲେ । ଟିୟୁସନ ତ ସେ କେବେ ବି ହୋଇନାହାନ୍ତି । ବହିପତ୍ର ତ ସେମିତି କିଣିନାହାନ୍ତି । ତଥାପି ପ୍ରଥମ ହେବାର ଯୋଗ୍ୟତା ତାଙ୍କୁ ପରବର୍ତ୍ତୀ ପାଠପଢ଼ାକୁ ଉତ୍ସାହିତ କରିଥିଲା ।

ସେଦିନ ମନରେ ଅଭିଳାଷ ଥିଲା ଶିକ୍ଷକ ହେବେ । ଅନେକ ଛାତ୍ରଙ୍କୁ ନିଜ ପରି ଗଢ଼ିବେ । ଦେଶର ଭାବି ବଂଶଧରଙ୍କୁ ମଣିଷ ପରି ମଣିଷ ହେବାକୁ ଶିଖେଇବେ ।

ପ୍ରତ୍ୟେକେ ବୋଧହୁଏ ଛାତ୍ରଜୀବନରେ ଏଭଳି ଆଦର୍ଶ ଶିକ୍ଷକମାନଙ୍କୁ ଦେଖି ଦେଖି ଶିକ୍ଷକ ଜୀବନକୁ ଆଦରି ନେବାକୁ ପ୍ରସ୍ତୁତ ହେଉ ହେଉ ସମୟ ଆଳରେ ସବୁ ଆଦର୍ଶକୁ କ୍ଷଣକେ ଉଠେଇ ଦେଇ ଇଂଜିନିୟର, ଡାକ୍ତର କି ପ୍ରଶାସନିକ ଅଧିକାରୀ ଚାକିରିକୁ ବାଛିନିଅନ୍ତି । ମନରେ ପ୍ରଥମେ ଉଙ୍କି ମାରିଥିବା ଶିକ୍ଷକ ବୃତ୍ତିକୁ ବଡ଼ ଭାବୁଥିବା ଚିନ୍ତାଧାରା କେମିତି ତୁଚ୍ଛ ହୋଇଯାଏ । ସେ ଚିନ୍ତାଧାରା, ସେ ଆଦର୍ଶ, ସେ ମୂଲ୍ୟବୋଧ, ଆଉ ଶିକ୍ଷା, କିଛି ରୁହେ ନାହିଁ । ବହିପାଠ ବହିରେ ରହେ, କଥା ଆଉ କାମରେ କ୍ରମେ ଆକାଶ ପାତାଳ ପ୍ରଭେଦ ସୃଷ୍ଟି ହୋଇଯାଏ ।

ଅପରିପକ୍ୱ ବୟସରେ ଅନେକ ସ୍ୱପ୍ନ ଥାଏ, କିନ୍ତୁ ସବୁ ସ୍ୱପ୍ନ ରୂପାୟିତ ହୁଏନା । ୟାର ତର୍ଜମା କରିବାକୁ ଯେତେବେଳେ ମନ ହୁଏ ସେତେବେଳେ ନେଡ଼ିଗୁଡ଼ ଯେ କହୁଣିରେ ।

ପାପ ପୁଣ୍ୟର ଦୁଇ ଶବ୍ଦର ଛନ୍ଦାଛନ୍ଦି ତାରତମ୍ୟରେ ସିଦ୍ଧାନ୍ତ ସମୟେ ସମୟେ ଦ୍ୱନ୍ଦ୍ୱରେ ପଡ଼ିଯାଆନ୍ତି ।

ଧନ କମେଇବାରେ; କାର୍ଯ୍ୟବ୍ୟସ୍ତତାରେ ପୁଣ୍ୟର ସ୍ୱରୂପ ପ୍ରାପ୍ତି ଲାଗି ତାଙ୍କ ପାଖରେ ସମୟ କାହିଁ ?

ଯଦି ପୁଣ୍ୟର ସ୍ଥିତି ଆଉ ସ୍ୱରୂପ ସାମ୍ନାରେ ଉପଲବ୍ଧି କରି ନିକିତିରେ ତଉଲ କରାଯାଇ ପାରନ୍ତା ତେବେ ତ ପାପର ଭାରା ତାଙ୍କଠି ବେଶି । ତଥାପି ଅର୍ଦ୍ଧାଙ୍ଗିନୀ ସୁକନ୍ୟା ଯେ ତାଙ୍କର ଯୋଗ୍ୟାପତ୍ନୀ । ଦିନରାତି ଦିଅଁ ଦେବତାଙ୍କଠି ନିରାଧାର ନିରାଜନା ବାଢୁଛନ୍ତି ତାଙ୍କର ଭଲମନ୍ଦ ପାଇଁ । ତେବେ ତାଙ୍କର ପୁଣ୍ୟର ଅଧା ଅଂଶୀଦାର ସେ କେମିତି ନୁହେଁ ?

ଭାବୁ ଭାବୁ ଫୋନ୍ ଆସିଛି କ୍ଲିନିକ୍‌ରୁ ।

ସୁକନ୍ୟାଙ୍କର ପୂଜାପାଠ ସରିନି । ଭାସିଆସୁଛି ଦିଅଁଘରୁ ଧୂପ ବାସ୍ନା । ମଝିରେ ମଝିରେ ଘଣ୍ଟି ଶବ୍ଦ, ଆଳତି । ସୁକନ୍ୟାଙ୍କର ବାରମ୍ବାର ସାଷ୍ଟାଙ୍ଗ ପ୍ରଣତି । ସବୁ ଦେଖାଯାଉଥାଏ ସିଦ୍ଧାନ୍ତଙ୍କୁ ବେଡ଼ରୁମ୍‌ରୁ । ପୂଝାରୀକୁ ସୁକନ୍ୟାଙ୍କ ପୂଜା ସରୁ ସରୁ ଫେରି ଆସିବେ କହି ସିଦ୍ଧାନ୍ତ କାର୍ ଷ୍ଟାର୍ଟ୍ କରିଦେଲେ କ୍ଲିନିକ୍‌କୁ ।

ଲକ୍ଷ୍ମୀ ପୁରାଣରୁ ଦି' ଅଧ୍ୟାୟ ପରେ ବିଷ୍ଣୁସହସ୍ର ନାମ, ରାମ ତାରକ ମନ୍ତ୍ର ଜପ ସାରି, ସୁକନ୍ୟା ଗେଟ୍ ମୁହଁକୁ ଆସି ମୁଣ୍ଡ ଟେକି ପ୍ରଣତି ନିବେଦନ କଲେ ସୂର୍ଯ୍ୟଙ୍କୁ । ଫେରି ଆସୁଥାଆନ୍ତି ନଜର ପଡ଼ିଗଲା ଲୋକଟି ଉପରେ ।

ଶୁଖିଲା ନହ ନହକା ଚେହେରା । ମୁହଁରେ ପାଚିଲା ଦାଢ଼ି । ଆଖି ଟାଆଁସିଆ । ଯେପରି ଅନେକ ବ୍ୟଥା ବେଦନା ଆଉ ଦୁଃଖ ମନ ଭିତରେ ।

ପଚାରିବା ପୂର୍ବରୁ ଲୋକଟି ଡାକ୍ତର ବାବୁ ଚାଲିଯିବାର ଦେଖି ଗେଟ୍ ଭିତରକୁ ପଶି ଆସିଥିବାରୁ କ୍ଷମା ମାଗିନେଲା । "ଜମିବାଡ଼ି ଯାହା ଯେତିକି ଥିଲା ବନ୍ଧା ପକେଇ ସାଥିରେ ଆଣିଛି ସ୍ତ୍ରୀର ଜୀବନ ବଞ୍ଚେଇବାକୁ । ପେଟରେ ତାର ଟ୍ୟୁମର ରୋଗ । ଔଷଧ ପତ୍ରରେ ଅନେକ ଖର୍ଚ୍ଚ କଲିଣି । ଡାକ୍ତରବାବୁ ଅପରେସନ୍ କରିଦେଲେ ସେ ଭଲ ହୋଇଯିବ । ଆଉ ହାତରେ ପାଞ୍ଚହଜାର ଅଛି । ଡାକ୍ତରବାବୁ ସଫା ସଫା ମନା କରିଛନ୍ତି, ଦଶ ହଜାର ହେଲେ ଅପରେସନ୍ କରିବେ ।"

ଭଙ୍ଗା ଭଙ୍ଗା କାନ୍ଦ କାନ୍ଦ କଣ୍ଠରେ ଲୋକଟିର ହତାଶବୋଧ । "କୋଉଠୁ ଆଉ ଆଣିବି ଏତେ ଟଙ୍କା ? କେତେ ନେହୁରା ହୋଇ ଡାକ୍ତରବାବୁଙ୍କ ଗୋଡ଼ହାତ ଧରିଲି । କିଛି ଶୁଣିଲେ ନାହିଁ ଡାକ୍ତରବାବୁ । ଗାଁକୁ ଫେରିଯିବା ପୂର୍ବରୁ ମା' ଆପଣଙ୍କୁ ଦେଖା କରିବାକୁ ମୋ ସ୍ତ୍ରୀ ଜିଦ୍ ଧରିଲା । ହେଇ ସେ ଗେଟ୍ ବାହାରୁ ଆପଣଙ୍କୁ ଜୁହାର କରୁଛି । ଡାକ୍ତରବାବୁଙ୍କୁ କହି ଯଦି ଅପରେସନ୍ କରେଇ ଦିଅନ୍ତେ, ମୋ ସଂସାର କୂଳରେ ଲାଗିଯାଆନ୍ତା ।"

ଥମ୍ ଥମ୍ ଓଠରୁ ସୁକନ୍ୟାଙ୍କର କଥା ସ୍ଫୁରୁ ନ ଥିଲା । ସିଦ୍ଧାନ୍ତ ବସ୍ତୁବାଦୀ ସଂସାରରେ ଦୈନନ୍ଦିନ ଉବୁଟୁବୁ ହେଉଥିବା ଅନ୍ଧ ମଣିଷଟିଏ । ସେ ପଥହରା ମଣିଷଟିକୁ ଠିକ୍ ବାଟରେ ଚଲେଇ ନେବାକୁ ବୋଧହୁଏ ସୁକନ୍ୟାଙ୍କର ଯୋଗ୍ୟତା ନାହିଁ । କ'ଣ ତାଙ୍କର ଅଭାବ ରହିଛି ? ସତରେ ପେଟରେ ଭୋକ, ମନର ଭୋକ କି ଦେହର ଭୋକ ପାଇଁ ଯେତେ ସବୁ ନାଟ, ସେ ନାଟର କ'ଣ ଅନ୍ତ ନାହିଁ ?

ଜନ୍ମ ଆଉ ମୃତ୍ୟୁର ସୀମିତ ପରିସରରେ ଯାହା ଯେତିକି ଆବଶ୍ୟକତା ରହିଛି, ତା'ଠାରୁ ଅଧିକ ଆବୋରି ନେବାରେ, ସ୍ୱାର୍ଥସର୍ବସ୍ୱ ହୋଇଯିବାରେ ଆଉ ଏତେ ସଂକୀର୍ଣ୍ଣ ହେବାରେ କି ଯଥାର୍ଥତା ରହିଛି ସତରେ । ସବୁ ବୁଝିବା ନ ବୁଝିବାର ରହସ୍ୟରେ ବୃଥା ଆରୋପ ଭିତରେ ଛଳନାରେ ବଞ୍ଚିବା ଯେ କେତେ ଦୁର୍ବିସହ, ସିଦ୍ଧାନ୍ତକୁ କେମିତି ବୁଝେଇବେ ସେ ? ସବୁ ବୁଝିବା ଭିତରେ ଅବୁଝାପଣ ତାଙ୍କୁ ବସ୍ତୁ ଚେତନା ଭିତରକୁ ଟାଣି ନେଇଛି. ସବୁ ଥିଲା ଭିତରେ ଅତୀତର ନ ଥିଲା କ୍ଷଣକୁ ନ ଭୁଲି ଆହୁରି ପାଇବାର ମୋହରେ ଘୂରୁଛନ୍ତି ।

ନା, ସଂସାର ବନ୍ଧନରେ ଯିଏ ଯେତେ ଆପଣାର, ନିଜର ନିଜର କହି କୁଣ୍ଢାଇଲେ ବି ସେ ସେତେ ନିଃସଙ୍ଗ, ଏକେଲା ଆଉ ଅସହାୟ । ଲୋକଟିର ନିଷ୍ପ୍ରାଣ ମୁଖମଣ୍ଡଳରେ ବୁନ୍ଦା ବୁନ୍ଦା ସ୍ୱେଦବିନ୍ଦୁ । ସୁକନ୍ୟାଙ୍କର ଦେହରେ ଅସମ୍ଭବ ଯନ୍ତ୍ରଣା, ହଠାତ୍ କମ୍ପନ । ସତେଯେମିତି ସହସ୍ର ଛୁଞ୍ଚି କିଏ ଯେମିତି ତାଙ୍କ ଦେହରେ ଫୋଡ଼ି ଚାଲିଛି ।

ଅପେକ୍ଷା କରିବାକୁ କହି ପଶିଗଲେ ଭିତରକୁ । ବିଡ଼ାଏ ନୋଟ୍ ଆଣି ଦେଇଦେଲେ ଲୋକଟିକୁ । ଏକା ନିଶ୍ୱାସରେ କହି ଚାଲିଥିଲେ ସୁକନ୍ୟା । "ତମ ସ୍ତ୍ରୀ ନିଶ୍ଚୟ ବଞ୍ଚିବ, ଯାହା ଟଙ୍କା ଦରକାର ହେବ, ମୁଁ ଦେବି; କିନ୍ତୁ ଗୋଟାଏ ସର୍ତ୍ତରେ । ଅପରେସନ୍, ଡାକ୍ତର ସିଦ୍ଧାନ୍ତଙ୍କ ହାତରେ ନୁହେଁ, ଅନ୍ୟଠି । ଡାକ୍ତରବାବୁ ଆସିଯିବେ... ତମେ ଚାଲିଯାଅ... ଯାଅ ।"

ସିଦ୍ଧାନ୍ତଙ୍କର ବସ୍ତୁବାଦୀ ଚିନ୍ତାଧାରାକୁ ସୁକନ୍ୟା ଯେ କେବଳ ଅବିଶ୍ୱାସ କରୁଥିଲେ ତା' ନୁହେଁ, ବିଶ୍ୱାସର ବାଲିଘର ଧୀରେ ଧୀରେ ଭୁଷୁଡ଼ି ପଡୁଥିଲା ତାଙ୍କର ଡାକ୍ତରୀ ଦକ୍ଷତାର ସୀମାରେଖା ଉପରେ ।

○

# ଅସ୍ତସୂର୍ଯ୍ୟର ରଙ୍ଗ

ନିର୍ମଳଙ୍କ ହାତରେ ପ୍ରେସକ୍ରିପ୍‌ସନ୍ କାଗଜ । ଡାକ୍ତରଙ୍କ ବରାଦ ଅନୁସାରେ ଇଞ୍ଜେକ୍‌ସନ୍ ଔଷଧ ସଙ୍ଗେ ସଙ୍ଗେ କିଣା ହେଉଛି । ନ ମିଳିଲେ ବାହାରୁ ମଗା ବି ହେଉଛି । ବାପାଙ୍କର ମାସିଭ୍ ହାର୍ଟ ଷ୍ଟ୍ରୋକ୍ । ବିପଦ, କେତେବେଳେ କ'ଣ ହେବ କହି ହେବନି । ଟିକିଏ ଭଲ ହେବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ । ଇଣ୍ଟେନ୍‌ସିଭ୍ କେଆର ୟୁନିଟ୍‌ରେ ବାପାଙ୍କ ଚିକିତ୍ସା କରୁଛନ୍ତି ସହରର ହୃଦବିଶାରଦଗଣ ।

ଚାକିରିରୁ ଅବସର ନେଲା ଦିନରୁ ବାପାଙ୍କ ମନରେ ଶାନ୍ତି ନାହିଁ । ଗମ୍ଭୀର ସ୍ୱଭାବ, କଥା କଥାରେ ଚିଡ଼ିମିଡ଼ି ଆଉ ବିରକ୍ତି । ମୁଣ୍ଡରେ କେତେ ଚିନ୍ତା, ନିରୋଳାରେ ବସିଥିବେ ତ ନିଜ ସହ ବକର ବକର ହେଉଥିବେ । କଦବା କେମିତି କିଏ ଯଦି ପଚାରିଦେଲା ମୁଡ୍ ଭଲ ଥିଲେ କହିବେ—'ଜୀବନ ସଂଘର୍ଷପୂର୍ଣ୍ଣ, ଶାନ୍ତି, ପରିପୂର୍ଣ୍ଣ ତୃପ୍ତି ପାଇବା ଅସମ୍ଭବ ।' ଯୁକ୍ତି ମଧ୍ୟ ବଳିଷ୍ଠ । ବାପା ଯେ ମାନସିକ ଅଶାନ୍ତି ଭୋଗୁଥିଲେ କୌଣସି କଥାକୁ ଅତି ଗୁରୁତ୍ୱରସହ ଚିନ୍ତା କରୁଥିଲେ, ଜାଣି ସୁଦ୍ଧା ନିର୍ମଳ ବାପାଙ୍କୁ ଭୟ କରି ଉତ୍ତର ପଚାରି ପାରୁ ନ ଥିଲେ ।

ଶେଷରେ ଏମିତି ପରିସ୍ଥିତି ଆସିବ ନିଶ୍ଚିତ ହୋଇଥିଲେ ବି ଆଗରୁ ନୀରବ ରହିବା ଛଡ଼ା ଆଉ ବା କ'ଣ କରି ହୋଇଥାଆନ୍ତା ? ବାପାଙ୍କର ପିଲାଦିନର, ସ୍କୁଲ କଲେଜ ଜୀବନରେ, ଚାକିରି କାଳରେ ଅନେକ ବନ୍ଧୁ ଓ ଡାକ୍ତର ଅଙ୍କଲ୍ ବାପାଙ୍କୁ କେତେ କରି ବୁଝେଇଲେ; ହେଲେ ବାପା ତାଙ୍କ ସ୍ୱାସ୍ଥ୍ୟ ପ୍ରତି ଯତ୍ନ ନେଲେ ନାହିଁ ।

ବାପା ବଡ଼ ଜିଦ୍‌ଖୋର । ଯାହା ବୁଝିବେ ସେୟା କରିବେ । ବାହାରକୁ ଯେତେ ନିଷ୍ଠୁର ଲାଗନ୍ତି ସେତେ ତୁଳା ପରି ନରମ ଭିତରେ ଭିତରେ । ଜଣେ ଦକ୍ଷ ପ୍ରଶାସକ ଭାବରେ ଅନିରୁଦ୍ଧ ଦାସଙ୍କର ସାରା ରାଜ୍ୟରେ ସୁନାମ ରହିଛି ।

ଅବସର ଚାରି ମାସ ପରେ ବୋଉ ଚାଲିଗଲା । ଦୁଃସାଧ୍ୟ ଦୁରାରୋଗ୍ୟ କ୍ୟାନ୍‌ସର୍‌ରେ । ଡାକ୍ତରଖାନାରୁ ଫେରି ବୋଉ ଜାଣିପାରିଥିଲା, ସେ ଆଉ ବଞ୍ଚିବ ନାହିଁ । ମାନସିକ ସ୍ତରରେ ସେ ଧୀରେ ଧୀରେ ପ୍ରସ୍ତୁତ ହେଇ ବି ଯାଇଥିଲା, ମୃତ୍ୟୁ ଯେପରି ତାକୁ ଖୁବ୍ ପାଖରୁ ହାତ ଠାରି ଡାକୁଥିଲା ।

ବୋଉର ଶେଷ ଦିନଗୁଡ଼ିକ ମନେ ପଡ଼ିଲେ ନିର୍ମଳଙ୍କର ଦେହ ଆପେ ଆପେ କେମିତି କେମିତି ହୋଇଯାଏ, ଶୀତେଇ ଉଠେ । କର୍କଟ ରୋଗୀ ଏତେ ଯନ୍ତ୍ରଣା ପାଆନ୍ତି । ବଞ୍ଚିବାର ଲୋଭ ତେଜି କାଳର କରାଳ କବଳରୁ ମୁକ୍ତି ଲାଗି ଆଉଟି ପାଉଟି କେତେ କାକୁତି ମିନତି, ପରମେଶ୍ୱରଙ୍କୁ ନିରନ୍ତର ହାତ ଯୋଡୁଥିଲା, ତା ଜୀବନଦୀପ ଚଞ୍ଚଳ ଲିଭିଯିବାକୁ ।

ଖୁବ୍ ପାଖରୁ ନିରେଖି ଗଭୀର ଅନ୍ତର୍ଦୃଷ୍ଟି ଦେଇ ନିର୍ମଳ ଦେଖିଛନ୍ତି ବୋଉର ଶେଷ ପରିଣତି । କିଭଳି ନିର୍ଲିପ୍ତ, ନିଃସ୍ୱାର୍ଥ ଆଉ ନିରାସକ୍ତ ତା'ର ସେଇ ଶେଷ ଦିନଗୁଡ଼ିକ । ବୋଉ ଚାଲିଗଲା ।

ବାପା ପୁରୁଣା ଦିନର ବୋଉ ସହ ଅନେକ ସ୍ମୃତିକୁ ଭୁଲିପାରିଲେ ନାହିଁ । ବୋଉକୁ ଝୁରି ହେଲେ । ବାହାରକୁ ଗଲେ ଠିକ୍‌ଠାକ୍, ହେଲେ ଘରେ ପଶିଲେ ପୂର୍ବର ଉଦାସ ମନ, ବିଷର୍ଣ୍ଣ ମୁଖମଣ୍ଡଳ । ଗୋରା ସୁନ୍ଦର ତୋଫା ଚେହେରା ବାପାଙ୍କର କମ୍ ଦିନରେ ଶୁଖିଲା ମାଖରା ଶେତା ଦିଶିଲା ।

ଅନେକ ଥର ଡାକ୍ତର ଅଙ୍କଲ୍‌ଙ୍କ ସହ ବାପାଙ୍କ ସ୍ୱାସ୍ଥ୍ୟ ସମ୍ପର୍କରେ କଥା ହୋଇଛନ୍ତି । ବାପାଙ୍କ ସ୍ୱାସ୍ଥ୍ୟ ହାନି ଲାଗି ବଡ଼ ବ୍ୟସ୍ତ ବିବ୍ରତ ଲାଗିଛି । କେବେ କେବେ ଏଇ ବ୍ୟସ୍ତତା ଜାଣି ବାପା ବି ସ୍ୱତଃ ନିର୍ମଳକୁ ବୁଝେଇ ଦେଇଛନ୍ତି । ପାଚିଲା ତାଳ କେତେବେଳେ ଖସିଯିବ କହିହେବନି—ସେଥିରେ ଏତେ ଯତ୍ନ ଏତେ ସାବଧାନତା, ଜୀବନକୁ ପର୍ଯ୍ୟାଲୋଚନା କରି, ନିଜକୁ ବିଶ୍ଲେଷଣ କରି, ନିଜକୁ ପ୍ରଶ୍ନ ପଚାରି, ଚିହ୍ନି ଦେଖିବ, ବେଠିକ୍ ରାସ୍ତାରେ ଜମା ଯିବନି ।

ଚୁପ୍ ହୋଇ ନୀରବରେ ଘରୁ ବାହାରକୁ ଚାଲିଯାଆନ୍ତି ନିର୍ମଳ—ଫେରନ୍ତି ଅନେକ ବିଳମ୍ବରେ ।

ଭୋର ସମୟ । ଉଠୁ ଉଠୁ ଗଁ ଗଁ ଶବ୍ଦ ଶୁଣି ତରବରରେ ଉପର ମହଲାକୁ ଉଠିଗଲେ ନିର୍ମଳ । ଖଟ ଆଉ ଟେବୁଲ୍ ମଝିରେ ବାପା ଲେପଟେଇ ପଡ଼ିଛନ୍ତି, ଛାତିକୁ ଚାପିଧରି ଉଠିପାରୁନାହାନ୍ତି । ମୁହଁରେ ଚେଷ୍ଟା କରି ବି ଭାଷା ଫୁଟୁନି । ତାଙ୍କର ଛାତିର ସ୍ପନ୍ଦନ ବଢ଼ିଯାଇଛି । ସଙ୍ଗେ ସଙ୍ଗେ ବାପାଙ୍କୁ ହସ୍‌ପିଟାଲକୁ ନିଆଗଲା, ଦଶଦିନ ହେଲାଣି ଚିକିତ୍ସା ଚାଲିଛି । ବାପାଙ୍କ ଜୀବନ ରହିଗଲା । ହେଲେ ବିପଦ କଟିନି ।

ବଡ଼ ବୋହୂ ଆଉ ସାନ ପୁଅ ବାପାଙ୍କ ପାଖରେ ଅଛନ୍ତି । ନିର୍ମଳ ସେଇଦିନୁ ଡାକ୍ତରଖାନାରୁ ଫେରି ନ ଥିଲେ । କ୍ଲାନ୍ତି ମେଣ୍ଟେଇବାକୁ ଡ୍ରଇଂରୁମ୍‌ରେ ପହଞ୍ଚି ନଜର ପଡ଼ିଯାଇଛି କାନ୍ଥରେ ବାପାଙ୍କର ଫୁଲ୍‌ସ୍କେପ୍ ହସ ହସ ଫଟୋଗ୍ରାଫ୍ । ଦୀର୍ଘ ତିରିଶ ବର୍ଷ ତଳର । ନହ ନହକା ଡେଙ୍ଗା ଗୋରା ଚେହେରା ଠିଆ ନାକ, ତୀକ୍ଷ୍ଣ ମୁହଁ । ସୁଗଠିତ ଶରୀର, ବେଶ୍ କର୍ମଠ ଓ ସତେଜ । ଏଇ ଚେହେରା ଚାକିରି ଶେଷ ଯାଏ ଥିଲା । କିନ୍ତୁ ଅବସର ପରେ ଏତେ ମଳିନ ପଡ଼ିଯିବ, ଚେହେରା ଭାଙ୍ଗିଯିବ । ସେ ଆଦୌ ବିଶ୍ୱାସ କରି ନ ଥିଲେ ।

ନିମିଷେ ନିରେଖି ଚାହିଁଲେ ବାପାଙ୍କ ଫଟୋକୁ । ଅଚାନକ ତାଙ୍କର ମନେପଡ଼ିଲା । ସେତେବେଳକୁ ତାଙ୍କୁ ପାଞ୍ଚ କି ଛଅ ବର୍ଷ ବୟସ । ବାପା

ସବ୍‌ଡେପୁଟିରୁ ଡେପୁଟି ହୋଇଥାଆନ୍ତି । କୋରାପୁଟରୁ ଆସି ଫୁଲବାଣୀରୁ ପଚାଶ ମାଇଲ ଦୂର ନୂଆ ଗାଁ ବ୍ଲକରେ ଯୋଗ ଦେଇଥାଆନ୍ତି । ଜିପ୍ ଆସି କ୍ୱାଟର୍ସ ଆଗରେ ଠିଆ ହେଲାଣି—ବାପା ଟୁର୍‌ରେ ବାହାରିବେ । ବୋଉ ଜିଦ୍ କରୁଥାଏ ଗାଡ଼ି ତ ଯାଉଛି ସେ ଆଉ ନିଲୁ ଗଲେ କ୍ଷତି କ'ଣ ହେବ ? ବୁଲାବୁଲି ତ ହୁଅନ୍ତା... ବେଶ୍ ମଜାରେ ସେ ଚାରି ପାଞ୍ଚ ବର୍ଷ କଟିଥିଲା... କିନ୍ତୁ ଯେତେବେଳେ ସେଠୁ ସିଧା ଭୁବନେଶ୍ୱର ବଦଳି ହେଇ ଆସିଗଲେ... ଆସ୍ତେ ଆସ୍ତେ ହଜିଗଲା ସେ ସୁଖ ସରାଗ । ଆଉ ଖୋଜି ପାଇବା ସମ୍ଭବ ହେଇନି । ବାପା ଭୁବନେଶ୍ୱରରୁ ହିଁ ଅବସର ନେଇଗଲେ ।

ଜାଗା, ଘର, ଗାଡ଼ି, ଏୟାରକଣ୍ଡିସନ୍, ଭିଡ଼ିଓ, ଯାକଜମକରେ ଝିଅ ପୁଅ ବାହାଘର ଇତ୍ୟାଦି କେତେ ଦାୟିତ୍ୱ ବାପାଙ୍କର । ବୋଉ ତ ବାପାଙ୍କୁ ବସ୍ତୁବାଦୀ ଚିନ୍ତା ଭିତରେ ଏମିତି ପୂରେଇ ଦେଇଥିଲା ଯେ, ତାଙ୍କୁ ଫୁରସତ୍ ମିଳିନି, ସେଥିରୁ ନିସ୍ତାର କେମିତି ମିଳିଥାଆନ୍ତା ? ପାଖରେ ବୋଉର ଆବକ୍ଷ ଫଟୋ—ଶୃଙ୍ଖଳା ମାଳଟି ଝୁଲୁଛି । ବୋଉର ନିର୍ଜୀବ ନିସ୍ତେଜ ଚିତ୍ରପଟରେ ଜୀବନ୍ତ ହସ । କିନ୍ତୁ ନିର୍ମଳଙ୍କ ମନ ଗହନରେ ତରଙ୍ଗାୟିତ ହେଉଛି ବୋଉର ଅଜସ୍ର ଅନୁପମ ଜୀବନ୍ତ ରୂପକଳ୍ପ, ହୃଦକନ୍ଦରେ ଅନବରତ ମଥା ପିଟୁଛି ତା'ର ସେଇ ସକରୁଣ ନିରିମାଖି ନୟନ ଆଉ ସ୍ନେହ ସରାଗ ପୂର୍ଣ୍ଣ ନିଲୁ ଡାକ, ନିର୍ମଳଙ୍କ ଅନ୍ତରସତ୍ତା ଏବେ ବି ଦୋହଲାଇ ଦେଉଛି । ମନ ଚହଲିବ ଜୀବନ ଯାକ ମଧ୍ୟ ।

ବାପା ଭଲ ହେବେ କି ନା । ବାକ୍‌ଶକ୍ତି ଫେରିବ କି ନାହିଁ ସନ୍ଦେହ । କ'ଣ କହିବେ କହିବେ ହେଇ ଅଙ୍ଗ ଅଙ୍ଗ କଣ୍ଠରେ କିଛି ବି ବୁଝିହେଉନି । ଭାବିଲା ବେଳକୁ ନିର୍ମଳ କ'ଣ କରିବେ ଠିକ୍ କରିପାରୁନାହାନ୍ତି । ରୋଗଶଯ୍ୟାରେ ପଡ଼ି ପଡ଼ି ବୋଉ ପରି ସନ୍ତୁଳିତ ହେବେ, ବାପା ଯନ୍ତ୍ରଣା ପାଇବେ, କେମିତି ରକ୍ତ ହେଇ ସହନ୍ତେ ସେ । ଅତ ମତ ହେଇଗଲେ ନିର୍ମଳ । ସତେଯେପରି ବାପାଙ୍କର ସବୁ କଷ୍ଟ ଯନ୍ତ୍ରଣା ତାଙ୍କଠି ସେଇ ମୁହୂର୍ତ୍ତରେ ପହଞ୍ଚିଯାଇଛି ।

ଭାଗ୍ୟକୁ ଆଦରି ସବୁ ପରିସ୍ଥିତିକୁ ମୁଣ୍ଡପାତି ସହିବାକୁ ପଡ଼ିବ ଚଉବାହା ତାଙ୍କର ସାହା—ଏତିକି । ଲୁହ ଗଡ଼ିପଡ଼ିଲା ଅଜାଣତରେ ଆଖିରୁ । ଅତୁଆ ସୂତାର ଗଣ୍ଠିକୁ ଫିଟେଇବାକୁ ଯାଇ ଫିଟେଇ ତ ହେଉନି—ଆହୁରି ଗୁଣ୍ଠି ହୋଇଯାଉଛି ଚିନ୍ତାର ଅଛିଣ୍ଡା ସୂତାରେ ।

ବୋଉ ସେପାରିକୁ ଯିବା ଦିନରୁ ବାପା ନିଃସଙ୍ଗ । ଚାଲିଚଳଣ ଗତିବିଧି ନିଆରା ଆଗଠୁଁ ବେଖାପ । ଖାଇବା ପିଇବାରେ ସମୟ ଅସମୟ କିଛି ନ ଥିଲା । ପଢୁଥିବେ ଯେ ପଢୁଥିବେ, ଘରଟା ଭିତରେ ଏକର ସେକର ହେବେ ଯେ ପଦଚାରଣ

ମନ ହେଲେ ବନ୍ଦ କରିବେ । କାହାରି କଥା ଶୁଣିବେ ନାହିଁ । କାରଣ ଅନୁସନ୍ଧାନ କରି ଡାକ୍ତର ଅଙ୍କଲ୍, ନିଜେ ନିର୍ମଳ ବି ଅସଫଳ ହୋଇଛନ୍ତି । ଖିଅ ପାଇଲେ ସିନା କଥାରେ କି ରହସ୍ୟ ଅଛି ଜଣାପଡ଼ନ୍ତା । ବାପାଙ୍କର କଡ଼ା ତାଗିଦ୍ ତାଙ୍କ ଜିନିଷରେ କେହି ହାତ ମାରିବେ ନାହିଁ ।

ଉପର ମହଲାରେ ବାପାଙ୍କର ଷ୍ଟଡ଼ିରୁମ୍, ତା ପାଖରେ ବେଡ଼ରୁମ୍ ଚାବି ଖୋଲି ଭିତରେ ପଶିଲେ ନିର୍ମଳ । ଗୋଟି ଗୋଟି କରି କାଚ କାନ୍ଥରେ ଆଲମିରା ଭରପୂର ଖାଲି ବହିପତ୍ରରେ । ବାପା ପ୍ରତିମାସରେ ବହି, ପତ୍ରପତ୍ରିକା କିଣନ୍ତି । ପଢ଼ନ୍ତୁ ନ ପଢ଼ନ୍ତୁ ବହି କିଣିବା ତାଙ୍କର ଅନନ୍ୟ ସଉକ ଓ ରୁଚି । ଟେବୁଲ ପାଖ ଶେଷ ଆଲମିରାଟି କେବଳ ଡାଇରି । ବାପା ସେ ଆଲମିରା ଚାବି ନିଜେ ରଖନ୍ତି । ଖୋଜି ହେଲେ ନିର୍ମଳ । ପାଇଲେ ବାପାଙ୍କ ତକିଆ ତଳୁ । ଖୋଲିଲେ । ବର୍ଷ ସଂଖ୍ୟା କ୍ରମରେ ଥାକ ଥାକ ହେଇ ରକମ ରକମ ରଙ୍ଗର ଡାଇରି ।

ପ୍ରଥମେ ଉଠେଇ ନେଲେ ସଦ୍ୟ ଉପଯୋଗ ହୋଇଥିବା ଏ ବର୍ଷର ନୂଆ ଡାଇରି । ଠିକ୍ ବାପାଙ୍କର ଦେହ ବିଗିଡ଼ିଯିବାର ରାତିର ବିବରଣୀଟି ସୂତୁଲି ଚିହ୍ନିତ ହେଇଥିବାରୁ ଖୋଲିଗଲା ସହଜରେ ।

ଅକ୍ଟୋବର ନଅ । ବାପାଙ୍କ କାଳିକଲମରେ ହାତଲେଖା ପଢ଼ିଲେ ନିର୍ମଳ । 'ପୋଷ୍ଟମ୍ୟାନ ରେଜେଷ୍ଟ୍ରି ଡାକରେ ଯାଇଥିବା ଚିଠିଟି ଫେରେଇ ଦେଲାବେଳୁ କିଛି ଭଲ ଲାଗୁନି । ଅର୍ଥ କ୍ଷମତା ଆଉ ପ୍ରତିପତ୍ତି ବଳରେ ବେଶ୍ କିଛି ଦିନ ମଣିଷ ପଣିଆକୁ ଉଠେଇ ଦେଇଥିଲି । ସ୍ତ୍ରୀ ନୀଳିମାଙ୍କ ଦୟନୀୟ ମୃତ୍ୟୁ ଦେଖି ମୋ ବିବେକ ମୋତେ ଶତ ବୃଶ୍ଚିକର ଦଂଶନ ଦେଉଛି । ଅର୍ଜିତ ସମ୍ପତ୍ତିରୁ ମୋ କୃତକର୍ମ ଲାଗି ମୁଁ ଯଦି କିଞ୍ଚିତ୍ ଅର୍ଥଦାନ କରେ, ତାହା ବଦାନ୍ୟତା ତ ହେବନି ବରଂ ପାପ କ୍ଷୟ ହେବ । ମୃତ ହେଡ୍‌କ୍ଲର୍କ ବୈକୁଣ୍ଠ ବାବୁଙ୍କ ବିଧବା ସ୍ତ୍ରୀ ଅନେକ ଥର ପୁଅର ଚାକିରି ପାଇଁ ମତେ ଦେଖା କରିଛନ୍ତି । ଠୋପା ଠୋପା ଲୁହରେ ଅଞ୍ଚଳ ଭିଜାଇ ତାଙ୍କ ଉଜୁଡ଼ା ପରିବାରକୁ ବଞ୍ଚେଇ ଦେବାକୁ ଅନୁରୋଧ କରିଥିଲେ ବି ପ୍ରଶାସନିକ ଅଧିକାରୀ ସାମଲବାବୁ ମୋଟା ଅଙ୍କର ଅର୍ଥ ଆଣି ତାଙ୍କର ବନ୍ଧୁ ପୁତ୍ରକୁ ଚାକିରି ଦେବାର ସ୍ଥିର କରିଥିବାରୁ ଏବଂ ଅର୍ଥଲୋଭରେ ବଶବର୍ତ୍ତୀ ହୋଇ ମୁଁ ଯଦି ବୈକୁଣ୍ଠ ବାବୁଙ୍କ ପୁଅର ନଥି ରେଜେଷ୍ଟ୍ରି କରି ନ ଥାଆନ୍ତି ତେବେ ଆଜି ଏ ଅନୁଚିନ୍ତା କିମ୍ବା ଅନୁତାପ ମୋର ନ ଥାଆନ୍ତା । ସେଇ ଟାଳଟୁଳ ଟିପ୍ପଣୀ ଲାଗି ପାପବୋଧରେ ଅହରହ ବିବେକ ସହ ମୁଁ ବାରମ୍ବାର ସଂଘର୍ଷ କରୁଛି । ଚିଠି ଭିତରେ ବ୍ୟାଙ୍କ ଡ୍ରାଫ୍ଟ ସେମିତି ସୁରକ୍ଷିତ ଅଛି । ଲଫାଫାଟି ଉପରେ ପ୍ରାପକଙ୍କର ପତ୍ତା ମିଳୁନି ଲେଖା ହୋଇ ଚିଠିଟି ଫେରିଆସିଛି । ତେବେ ହରିବନ୍ଧୁ କ'ଣ ଭୁଲ୍ ଠିକଣା ଦେଇଛନ୍ତି । ଝିଅକୁ ବାହା ଦେଇ ସୁମିତ୍ରା ଦେବୀ ଝିଅ ସହ ଚାଲିଗଲେ ।

ସଠିକ୍ ଖବର ପାଇବାକୁ ଗାଡ଼ି ନେଇ ଖୋଜି ଆସିଛି, ସେଇ ଏକା କଥା କିନ୍ତୁ ଭେଟିଥିଲି ବାଟରେ ଢେର ଦିନ ମୋ ପାଖରେ ଜମାଦାର ଭାବରେ କାମ କରୁଥିବା ହରିବନ୍ଧୁଙ୍କୁ । ସେ ବି ଚାକିରିରୁ ଅବସର ନେଇ ସାରିଲେଣି ।

ଶୁଣିଲି ଯୁବତୀ ଝିଅକୁ ବାହା ନ ଦେଇପାରି ବଡ଼ ଦୁସ୍ଥ ଅବସ୍ଥାରେ ଚିନ୍ତାରେ ଥିଲେ ମୃତ ବୈକୁଣ୍ଠ ବାବୁଙ୍କ ସ୍ତ୍ରୀ ଓ ପୁଅ । ପୁଅଟି ହତାଶ ହେଇ ଚାକିରି ଖଣ୍ଡେ ନ ପାଇ ଚାଲିଯାଇଥିଲା ଗୁଜୁରାଟ । କ'ଣ ହେଲା କେଜାଣି ସେ ଖବର ଦେଲାନି କି ଆଉ ଫେରିଲାନି । ନିରମାଖି ମା'ର ଆଖିରୁ ଲୁହ ଶୁଖିଲା ନାହିଁ । ବୈକୁଣ୍ଠ ବାବୁଙ୍କ କଷ୍ଟ ଅର୍ଜିତ କିଣିଥିବା ଘର ଜାଗାବାଡ଼ିକୁ ହାତେଇ ନେବାକୁ ଲୋକ ଅନେଇ ବସିଥିଲେ । ଉଡ଼ା ଖବର ଶୁଣାଯାଉଛି । ବିଧବା ମା ଆଉ ଝିଅ ସେ ଜମିକୁ ବିକି କୁଆଡ଼େ ଉଭାନ ହୋଇଗଲେ ଯେ କେହି ଠିକଣା ରଖିନାହାନ୍ତି ।

ଖୁବ୍ ଚଢ଼ାଗଳାରେ ହରିବନ୍ଧୁ ମତେ ଆକ୍ଷେପ କରି କହିଲା—ଛୋଟିଆ ଚାକିରିଟିଏ ପାଇଁ ବିଧବା ସ୍ତ୍ରୀଲୋକଟି ଅନେକ ଥର ଆପଣଙ୍କୁ ଦେଖା କରି ଗୁହାରି କରିଛି । ନେହୁରା ହୋଇ ପୁଅକୁ ଥଇଥାନ ଯୋଜନାରେ ଚାକିରି ଦେବାକୁ ଅନୁରୋଧ କରିଛି । ହେଲେ ଆପଣ କ'ଣ ଶୁଣିଲେ ? ସେ ଲାଞ୍ଚୁଆ ସାମଲଟା କି ଗଦ ଶୁଙ୍ଘେଇ ଥିଲା, ସେ ଯାହା କହୁଥିଲା ଆପଣ ବେଦର ଗାର ମାନୁଥିଲେ ।

ପ୍ରତ୍ୟୁତ୍ତର ନ ଦେଇ ଫେରିଆସିଲି ଗାଡ଼ି ଷ୍ଟାର୍ଟ ଦେଇ ।ଫେରିଆସି ଲେଖୁଛି ଏ ଡାଇରି । କିନ୍ତୁ ମନ ଭିତରର କମ୍ପନ, ଝଡ଼ ପରି ଅନ୍ତର ଥରା ଉଦ୍‌ବେଗ, ଆଉ ଭୟ ନାଗଫେଣି କଣ୍ଟା ପରି ଦେହଯାକ ଫୋଡ଼ି ହୋଇଯାଉଛି । ଓଃ... କଷ୍ଟ, ଭାରି କଷ୍ଟ ।

ଅସ୍ୱଚ୍ଛ ଦିଶୁଛି ଅବଶିଷ୍ଟ ଚାରି ପାଞ୍ଚ ଧାଡ଼ିର ସମସ୍ତ ଅକ୍ଷର । ପାଣି ତ ନୁହେଁ, ଅଶ୍ରୁ । ବାପାଙ୍କ ଲୁହରେ ବୋଧେ ନେସି ହୋଇଯାଇଛି ସବୁ ଶବ୍ଦ । ଏମିତି ଏକ ସାମାନ୍ୟ କାରଣ ତେବେ ବାପାଙ୍କୁ ଏତେ ସ୍ପର୍ଶ କଲା ? ଚାକିରି କାଳକ ତ ବୋଉ ଯେତେବେଳେ ଯାହା କହିଛି ତାହା ତ ପୂରଣ କରିଛ । ହେଉ ପଛେ ଯେତେ ଅସାଧ, ଅନ୍ୟାୟ ସମାଜର ଦୁଃଖି ରଙ୍କି ତମଠୁ ତଳିଆ ଲୋକଙ୍କ କଥା ତମେ ତ ଦିନେ ଚିନ୍ତା କରନି । ପଛ ଦିନର ଗରିବୀ ଜୀବନ ବିତେଇଥିବା ଦିନଗୁଡ଼ିକର କଥା ତମେ ତ ପ୍ରାୟ ଭୁଲିଯାଇଥିଲ, ବାପା । ସମୟ ଅବା ମିଳିଛି କେଉଁଠି ସେସବୁ ପୁନରାବୃତ୍ତି କରିବାକୁ—

କିନ୍ତୁ !

ଅବସର ପରେ ଢେର ସମୟ ମିଳିଛି ।

ବୈରାଗ୍ୟ ବିତୃଷ୍ଣା ସ୍ୱଭାବରୁ ବାରି ହୋଇପଡୁଥିଲା । ଏଇ କିଛି ଦିନ ହେବ ତମେ ବାପା ! ବେଶ୍ ଆଗ ଅପେକ୍ଷା ବଦଳି ଯାଇଛ । ବ୍ୟାଙ୍କ୍ ଡ୍ରାଫ୍ଟ ? ମୃତ

ବୈକୁଣ୍ଠ ବାବୁ ? ତାଙ୍କ ସ୍ତ୍ରୀ ବିଧବା ସୁମିତ୍ରା ଦେବୀ ? କ'ଣ ଏମାନଙ୍କ ସହ ବାପାଙ୍କର ସମ୍ବନ୍ଧ ? ପୂର୍ବ ପୃଷ୍ଠାକୁ ଲେଉଟାଇଲେ, ପୃଷ୍ଠା ପରେ ପୃଷ୍ଠା । ପାଞ୍ଚ ମାସ କାଳ ଫାଙ୍କା—କିଛି ଲେଖି ନାହାନ୍ତି ବାପା ।

ଅକ୍ଟୋବର ନଅ ପୂର୍ବ ଡାଇରି ଲେଖା ହୋଇଥିଲା ଏପ୍ରିଲ ଦୁଇ ତାରିଖରେ ।

'ତମେ ନୀଳିମା ! ଚାଲିଗଲ ।

ଯଦିଓ ତମର ଯିବା ଆଗରୁ ନିର୍ଦ୍ଧାରିତ ହୋଇଥିଲା ତଥାପି ଦେଶ ବିଦେଶର କ୍ୟାନସର ଇନିଷ୍ଟିଚ୍ୟୁଟରେ ଖ୍ୟାତନାମା ଡାକ୍ତରମାନଙ୍କ ପାଖରେ କାଳେ ତମେ ବଞ୍ଚିଯିବ ଚିକିତ୍ସା କରିଛି । ପଇସା ପାଣି ଭଳି ଖର୍ଚ୍ଚ କରିଛି । ହେଲେ କର୍କଟ ରୋଗ ଜିତାପଟ ନେଇ ମୋ ସଞ୍ଚିତ ଅର୍ଥକୁ ବେଖାତିର କରି ତମକୁ ଶୋଷି ଖାଉଗଲା, ତମେ ସମସ୍ତ ସ୍ନେହ ବନ୍ଧନ ଧନ ସମ୍ପତ୍ତିର ମୋହ ତ୍ୟାଗ କରି କେମିତି ଏ ଧରାଧାମ ଶୀଘ୍ର ଛାଡ଼ିବ ଆତୁର ହୋଇ ପଡ଼ିଥିଲ ।

ହେଲେ କିଛି ତ ସାଥିରେ ନେଲ ନାହିଁ । ସବୁ ସେମିତି ରହିଛି କିନ୍ତୁ ତମେ ନାହଁ । ତମେ ଥିବାବେଳର ଯେଉଁ ଆବେଗ ଆଉ ଉତ୍କଣ୍ଠା ଏଇଟା ହେଲାନି, ସେଇଟା ହେଲାନି, ୟାକୁ ଆଣ ତାକୁ ଆଣ, ଲମ୍ବା ବରାଦି । ଭୁବନେଶ୍ୱରରେ ପାଦ ଦେଲା ଦିନୁ ପୂର୍ବଦିନଗୁଡ଼ିକ ଏପରି ଭୁଲିଗଲ ପାଖପଡ଼ୋଶୀଙ୍କ ମିଛ ଆଦବ କାଇଦାକୁ ସତ ମଣି ସ୍ୱପ୍ନ ଦେଖିଲ, ବିଭୋର ହେଇପଡ଼ିଲ ଯେ ମୁଁ ତମକୁ ବୁଝେଇ ପାରିଲି ନାହିଁ ।

ଦିନ ଥିଲା...

ଥିଲା ନ ଥିଲାକୁ ଭୁଲି ତମେ ପରା ବାହି ନେଉଥିଲ ମୋର ଏଇ ଛୋଟିଆ ସଂସାରର ନାଆଟିକୁ ।

ଗାଁରୁ ଗୋଡ଼ କାଢ଼ି ଆସିଲାବେଳେ ଆମ ସାଥିରେ ଥିଲା ଦି'ଟା ଟ୍ରଙ୍କ, କିନ୍ତୁ ଆଜି ଆଖି ଝଲସି ଯାଉଛି ଅକଳନ ସମ୍ପତ୍ତି ଦେଖି ।

ସେବା, ଉତ୍ସର୍ଗ ଓ ମଣିଷପଣିଆର ବାହ୍ୟମୁଖାଟିକୁ ପିନ୍ଧି ଜନସେବାରେ ଚାକିରି ଖୋଳଟାକୁ ଦେହରେ ଗଳେଇ ବେଶ୍ ବଢ଼େଇଛି ନିଜର ଧନ ଦରବ । ତିରିଶ ବର୍ଷ କ୍ଷମତାର ଶକ୍ତ ପରଶକୁ ହାତରେ ଧରି ଶୁଖିଲା କାଠ ଚିପୁଡ଼ି ପାଣି ବାହାର କରିବାର କୌଶଳ ମତେ ଭଲ କରି ଜଣା । ହେଲେ ଆଜି ଅବସର ପରେ ମୁଁ ଯେ ଜନସ୍ରୋତର ମହାସମୁଦ୍ରରେ ସାଧାରଣ ମଣିଷ; ଭାବିଲା ବେଳକୁ ମୋ ମୁଣ୍ଡ ଘୂରି ଯାଉଛି । ସହର ଉପକଣ୍ଠରେ ଦଶଏକର ଫାର୍ମ ହାଉସ୍, ମାଛ ଚାଷ ପାଇଁ ଦି' ଏକର ପୋଖରୀ, ନଡ଼ିଆ ବଗିଚା, ଉପକୂଳ ଅଞ୍ଚଳରେ ଚିଙ୍ଗୁଡ଼ି ଚାଷର ବିସ୍ତୃତ ଘେରିବନ୍ଧ । ବେଳେ ବେଳେ ବୁଲି ଆସୁଛି, ହେଲେ ମନ କେଉଁଠି ଲାଗୁନି କ'ଣ ମିଳିବ ଏ ସବୁରୁ ?

ବିବେକର ଛାୟା ମୋ ପାଖରେ ବାରମ୍ବାର ଠିଆ ହେଉଛି, ପ୍ରଶ୍ନ ପରେ ପ୍ରଶ୍ନ ପଚାରି ଚାଲିଛି । ମୁଁ ଉତ୍ତର ଠିକ୍ ରୂପେ ଦେଇ ନ ପାରି ହାରିଯାଉଛି । ସାହସର ବାଲିବନ୍ଧ ଭୁଷୁଡ଼ି ଯାଉଛି, ଯୁକ୍ତି ତର୍କ ଦ୍ୱନ୍ଦ୍ୱ ସଂଘାତରେ । ମୁଁ ଅତିଷ୍ଠ ହୋଇଗଲିଣି । ରାତିରେ ନିଦ ହେଉନି ।'

ସେଇଠି ରହିଯାଉଛି ସେଦିନର ଲେଖା । ପୁଣି ପଛକୁ ଲେଉଟାଇଲେ; ପଛ ପୃଷ୍ଠାକୁ । ଜାନୁଆରୀ ଏକତିରିଶ ବାପାଙ୍କର ଚାକିରିର ଅବସର ଦିନ ।

'ମୁକ୍ତ ଆକାଶର ବିହଙ୍ଗ ଭଳି ନିଧଡ଼କ ଜୀବନ ବିତାଇବାର ଶୁଭକାମନା । ଭାଷଣ ଶୁଣି ଦପ୍ତରର କାର୍ଯ୍ୟ ସରିଲା । ମୋଟା ଗଜରା ଫୁଲମାଳ । ଉପଢ଼ୌକନ ସହ ସରକାରୀ ଗାଡ଼ି ଆଣି ମୋତେ ଛାଡ଼ି ଚାଲିଗଲା । ନୀଳିମା, ନିଲୁ, ସିଲୁ, ବୋହୂ, ଝିଅ ସମସ୍ତେ ସଙ୍ଗୁଳି ଆଣିଲେ । ସନ୍ଧ୍ୟା ନଇଁ ଆସିଲା । ଭାରି ଅଳସ ନିଛାଟିଆ ନିଃସଙ୍ଗ ମନେ ହେଉଥାଏ । ନୀଳିମାଙ୍କ ଥଟା ପରିହାସ ଭଲ ଲାଗୁ ନ ଥାଏ, ପଛ କଥାଗୁଡ଼ିକ ମନ ଭିତରେ ଚଳଚ୍ଚିତ୍ର ପ୍ରାୟ ମନକୁ ପଶି ଆସୁଥାଏ । ତିରିଶ ବର୍ଷ କେତେ ଚଞ୍ଚଳ ସରିଗଲା ସତେ । ସ୍ୱାଧୀନତା ପରେ ସରକାରୀ ଚାକିରି କରିବା ତଥା ଜନସାଧାରଣଙ୍କ ସେବାରେ ନିୟୋଜିତ ହେବେ ବୋଲି କେତେ ସ୍ୱପ୍ନ ଦେଖିଥିଲି, ନୂଆ ନୂଆ ମନରେ କେତେ କାମନା ଉଦ୍ଦୀପନା ଆଉ ପରିଶ୍ରମ, ନାଁ କମେଇବାର ଝୁଙ୍କ୍ ପରେ ପଦୋନ୍ନତିର ସିଡ଼ିରେ ଉଠିବା ପରେ କିଭଳି ସ୍ୱାର୍ଥରେ ଜଡ଼ି ଯାଉଛି ଅମାନବିକ ଆଚରଣରେ ଛଳନା କରିଛି ସବୁ ମନେ ପଡୁଛି । ଦେଶଠୁ ନେଇଛି, ଦେଇଛି କେତେ ? ସଂକୀର୍ଣ୍ଣ ପରିଧିର ବଳୟ ଭିତରେ ଉବୁଟୁବୁ ଅନିରୁଦ୍ଧ ଦାସ । ସତରେ କେତେ ନିଃସହାୟ, ନିଃସଙ୍ଗ, ତୁଚ୍ଛ ନିଜର ବୃଥା ଅହମିକାରେ ଅର୍ଥ ବିଭାଗରେ ଥିବାବେଳେ ଲକ୍ଷ ଲକ୍ଷ କର୍ମଚାରୀଙ୍କ ସ୍ୱାର୍ଥ ସୁରକ୍ଷା ଲାଗି ସଙ୍ଗଠିତ ବୀମା ଯୋଜନା ପ୍ରଚଳନରେ କେତେ କର୍ମଚାରୀଙ୍କୁ ସୁବିଧା ଦେଇଛି ।

ନା... ନା... ଅନିରୁଦ୍ଧ । ସେଥିରେ କୁଆଡ଼େ ମୋର ବି ସ୍ୱାର୍ଥ ନିହିତ । ହଁ, ତାସଲ୍ୟ କରିଛି ମୋ ବିବେକ, ଇନ୍‌ସୁରାନ୍ସ କମ୍ପାନୀ ଏକାବେଳକେ ଚାରିଟା କାର୍ ଦେଇଥିଲା । ଏବେ ବି ପୁଅ ନିଲୁ ସେଗୁଡ଼ିକୁ ଟ୍ରାଭେଲର୍ସ ବିଜିନେସ୍‌ରେ ଲଗେଇଛି ।

ଖାଦ୍ୟ ଓ ଯୋଗାଣ ବିଭାଗରେ ଥିଲାବେଳେ ସିମେଣ୍ଟଠୁ ଆରମ୍ଭ କରି ସବୁ ମାଗଣା । ଔଦ୍ୟରେ ଥିବାବେଳେ ରାଜଧାନୀରେ ଚାରିଟା କୋଠା ତିଆରି ହୋଇଛି । ଶିକ୍ଷା ବିଭାଗରେ ଥିଲାବେଳେ ପିଲାଙ୍କ ସର୍ବୋଚ୍ଚ ନମ୍ବର । ସ୍ୱାସ୍ଥ୍ୟ ବିଭାଗରେ ଥିଲାବେଳେ ଝିଅର ଡାକ୍ତରୀ ଚାକିରି । ଶେଷରେ ଡାଇରେକ୍ଟର ଇଷ୍ଟେଟ ଭାବରେ ପୁଅ ଝିଅ ନାଁରେ ଛ'ଟି ପ୍ଲଟ, ମାର୍କେଟ କମ୍ପ୍ଲେକ୍ସ ବିଲଡ଼ିଂ ଆହୁରି କେତେ କ'ଣ ! ଉଭା ଯେତେ ପୋତା ସେତେ ।

ଏସବୁ ପ୍ରଶ୍ନର କ'ଣ ବା ଉତ୍ତର କରିଥାଆନ୍ତି ବିବେକକୁ ? ସେ ଯେ ପ୍ରତି ମୁହୂର୍ତ୍ତରେ କ୍ଷତାକ୍ତ କରି ଚାଲିଛି ମୋ ଅନ୍ତରକୁ । ଦସ୍ୟୁ ରତ୍ନାକର ପରି ଆତ୍ମୀୟଙ୍କୁ ପ୍ରଶ୍ନ ପଚାରି ଉତ୍ତର ନ ପାଇ ଧ୍ୟାନସ୍ଥ ହୋଇଯିବା ଭଳି ମୁଁ ଆଜି ନିଜକୁ ପ୍ରଶ୍ନ ପଚାରୁଛି କ୍ଷତବିକ୍ଷତ ହେଉଛି––ଜୁଡୁବୁଡୁ ରକ୍ତରେ ମୋ ହୃଦସ୍ପନ୍ଦନ ଯେ ବନ୍ଦ ହୋଇଯିବ ।

କ୍ଷମତା, ପ୍ରତିପତ୍ତି, ସାହସ ଓ ନିଜକୁ ମିଛର ପ୍ରତୀତି ଭିତରେ ବୁଡ଼େଇବାର ବୟସ ବି ନାହିଁ ।'

ଟେବୁଲ ଡ୍ର ଭିତରୁ ଖୋଜା ଖୋଜିକରି ନିର୍ମଳ କାଢ଼ିଲେ ରେଜେଷ୍ଟ୍ରି ଡାକରେ ଫେରି ଆସିଥିବା ଚିଠିଟିକୁ, ଚିଠି ସହ ଏକ ଲକ୍ଷ ଟଙ୍କାର ବ୍ୟାଙ୍କ ଡ୍ରାଫ୍ଟ ।

'ମଣିଷ ଭୁଲ କରେ, ମୁଁ ବି ଭୁଲ କରିଛି । ଆଇନ ସମ୍ମତ ଅଧିକାରରୁ ତୁମ ପୁଅକୁ ବଞ୍ଚିତ କରିଥିବାରୁ ମୁଁ ଦୋଷୀ । ସାମଲବାବୁଙ୍କଠୁ ମୁଁ ପଚାଶ ହଜାର ପାଇଥିଲି, ସୁଧମୂଳ ସହ ଏ ବ୍ୟାଙ୍କ ଡ୍ରାଫ୍ଟଟି ଗ୍ରହଣ କରିବ । ମୋତେ ଅନ୍ତତଃ କ୍ଷମା କରିଦେବ ।'

ବାପାଙ୍କର ମାନସିକ ଅଶାନ୍ତି, ହୃଦଘାତର କାରଣ ସୁସ୍ପଷ୍ଟ ହୋଇଯାଇଛି ନିର୍ମଳଙ୍କ ପାଖରେ । ବାପା ତେବେ ନିଜର ବିବେକ ସହ ସାକ୍ଷାତ ପାଇଛନ୍ତି । ନିଚ୍ଛୋଳାରେ ଏକା ଏକା ତାଙ୍କରି ସାଙ୍ଗରେ ବାପା ତେବେ କଥା ହେଉଥିଲେ ଏତେଦିନ ।

ସବୁ ମଣିଷ କ'ଣ ବୟସ ଭାରାରେ ଏତେ ବିଳମ୍ବରେ ଏଇ ଚତୁର୍ଥ ଅବସ୍ଥାରେ ନିଜକୁ ଚିହ୍ନନ୍ତି । ନିଜ ସହ ବସି ବସି ଆଳାପ କରନ୍ତି । ପଶାପାଲିରେ ଏକା ଏକା ଗୋଟି ଗଡ଼ାନ୍ତି । ପାପ ପୁଣ୍ୟର ତଉଲ କରନ୍ତି ସମୟ ନିକିତିରେ ।

ବାପାଙ୍କ ସହ ତାଙ୍କ ବିବେକର ଯଦି ଯଥେଷ୍ଟ ଆଗରୁ ସାକ୍ଷାତ ହୋଇଥାଆନ୍ତା, ତେବେ ? ଏ ହୃଦ୍‌ଘାତରୁ ହୁଏତ ବର୍ତ୍ତି ଯାଇଥାଆନ୍ତେ ସେ । ପୁଣି ପୁରୁଣା ଡାଇରି ଖେଳାଉ ଖେଳାଉ ଫୋନ୍ ରିଂ ହେଲା––ସଂଯୁକ୍ତା ହସ୍‌ପିଟାଲରୁ ଫୋନ୍ କରିଛନ୍ତି । ଶୀଘ୍ର ଆସ, ବାପା ସିରିଅସ୍ ।

○

# ମର୍ତ୍ତ୍ୟରେ ଇମର୍ଜେନ୍‌ସି

ହେ ବିଶ୍ୱନିୟନ୍ତା ବିଷ୍ଣୁ ! ତମେ ତ ଜ୍ୟୋତି ମଧ୍ୟରେ ତେଜଦୀପ୍ତ ଅଂଶୁମାନ । ସୃଷ୍ଟିର ଆଦି ମଧ୍ୟରେ ଅନନ୍ତ । ବିପୁଳ ବ୍ୟାପକତା ଭିତରେ ବିଧାତା । ତମରି ଆଜ୍ଞାରେ ସଚରାଚର ବ୍ରହ୍ମାଣ୍ଡ ଆତଯାତ, ପବନ ବହେ, ସୂର୍ଯ୍ୟ ଉଏଁ, ପତ୍ର କଅଁଳେ, ଜୀବନ ପ୍ରଦୀପ ଜଳେ ଆଉ ଲିଭେ । ତମେ ସକଳ ଶକ୍ତିର ଆଧାର । ତମେ ସ୍ଥୂଳରୁ ସ୍ଥୂଳତର ଓ ସୂକ୍ଷ୍ମରୁ ସୂକ୍ଷ୍ମତର । ନିତ୍ୟ ସ୍ଥିର ସର୍ବବ୍ୟାପକ ହୃଷୀକେଶ । ଶ୍ରୀହରି ! ଅନ୍ତର୍ଯ୍ୟାମୀ । ହେଲେ, ତମେ ଆଜି ଅସ୍ଥିର, ଅଶାନ୍ତ, ଅପ୍ରସନ୍ନ, ଉଦାସ ସ୍ୱଭାବ ।

ଗୁଣୁଗୁଣେଇ ଉଠିଲେ ମନେ ମନେ ମା'ଲକ୍ଷ୍ମୀ ସାଆନ୍ତାଣୀ । ଶାନ୍ତ କ୍ଷୀରସାଗରରେ ଆଜି ଉଦ୍‌ବେଳିତ ଉତ୍ତାଳ ତରଙ୍ଗ । ଚତୁର୍ଦ୍ଦିଗ ଅସ୍ଥିର । ସର୍ପରାଜ ବାସୁକୀଙ୍କ ଦେହରେ ଅସମ୍ଭବ କମ୍ପନ; ସହସ୍ର ଫଣାରୁ ତାଙ୍କର ରହି ରହି ଫୁତ୍‌କାର । ପକ୍ଷୀରାଜ ଗରୁଡ଼ ଯେଉଁଠି ଆଦେଶ ମାତ୍ରକେ ଆସି ଯୋଡ଼ହସ୍ତରେ ବିଦ୍ୟମାନ ହେଇ ସ୍ୱୟଂ ନାରାୟଣଙ୍କୁ ପୃଷ୍ଠରେ ବସେଇ ପ୍ରଦକ୍ଷିଣ କରନ୍ତି, ସେ ଆସି ଏଣିକି ତେଣିକି ଚାହିଁ ବିଷ୍ଣୁଙ୍କୁ ନଦେଖି ନଅର ଚାରିପାଖେ ଘୂରିଆସିଲେଣି ।

କାହିଁକି ଏପରି ବ୍ୟତିକ୍ରମ ! କାହିଁକି ଏମିତି ବେଢ଼ଙ୍ଗ ଉଦ୍‌ବିଗ୍ନ ଅନିୟମିତ ଆଚରଣ, ମା'ଲକ୍ଷ୍ମୀ କିଛି ବୁଝିପାରି ନାହାନ୍ତି । ଆଗରୁ ଏମିତି ଅନୁଭୂତି କେବେ ନଥିଲା । କାରଣ ଜାଣିବାକୁ କେତେଆଡୁ କେତେ ଚିନ୍ତା ମନରେ ଗୁରେଇ ତୁରେଇ ହୋଇଯାଉଛି । ଆଶଙ୍କାରେ ଦେହ ତାଙ୍କର ଶୀତେଇ ଉଠୁଛି ।

ଦେବସଭାରୁ ଫେରିବା ପରେ ବିଷ୍ଣୁଙ୍କର ଚିନ୍ତିତ ଭାବ ଯେ କିଭଳି ପ୍ରତିକ୍ରିୟା ସୃଷ୍ଟି କରିଛି, ପରିସ୍ଥିତି କିଭଳି ଜଟିଳ ହୋଇଯାଇଛି, କ୍ଷୀରାବ୍ଧିଶାୟୀଙ୍କୁ ମୁହଁ ଖୋଲି ପଚାରିବା ପାଇଁ ଉଠିପଡ଼ିଲେ ମା'ଲକ୍ଷ୍ମୀ । କିନ୍ତୁ ସେ କିଛି ପଚାରି ପାରିଲେ ନାହିଁ । ଭାବିଥିଲେ ଅନନ୍ତ ଶୟନରୁ ଉଠିବା ପରେ ପ୍ରଭୁଙ୍କର ମନର ଗତି ବଦଳିଯିବ ହେଲେ ଉଠିବା ପରେ ମଧ୍ୟ ସେଇ ଅବସାଦ, ବିଷାଦ ମୁଖମଣ୍ଡଳ, ନିରେଖି ଚାହିଁଲେ ତଥାପି କ୍ଳାନ୍ତି ମେଣ୍ଟିନି । ସୁନ୍ଦର, ସୁଠାମ କମନୀୟ ରୂପକାନ୍ତି ମଳିନ ପଡ଼ିଗଲାଣି । ବ୍ୟସ୍ତତାର ଚିହ୍ନ ଅଙ୍ଗେ ଅଙ୍ଗେ ବାରି ହୋଇଯାଉଛି । ବିଚଳିତ ଭାବରେ ପଦଚାରଣ କରୁ କରୁ ବିଷ୍ଣୁ ନିରନ୍ତର ନିୟୋଜିତ ସରସ୍ୱତୀଙ୍କୁ ମୃଦୁ ବୀଣାବାଦନ ବନ୍ଦ କରିବାକୁ ଇଙ୍ଗିତ ଦେଇ; ନିଶ୍ଚୁପ, ନିଥର ନୀରବତାରେ ଅବସନ୍ନ ପରମେଶ୍ୱର ଓଠ ତଳେ ଦି' ହାତର ମୁଠାକୁ ଥୋଇ ପୁଣି ଭାବିବାକୁ ଲାଗିଲେ । ଦେବସଭାକୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ଭାଙ୍ଗି, ଦେବତା ପଦବୀ ଉଚ୍ଛେଦ କରି, ପଦଚ୍ୟୁତ ଦେବତାଙ୍କୁ ମର୍ତ୍ତ୍ୟକୁ ପଠେଇ; ସେ କ'ଣ ଉଚିତ ପଦକ୍ଷେପ ନେଇନାହାନ୍ତି ? ହଁ, ସୃଷ୍ଟିକର୍ତ୍ତା ବ୍ରହ୍ମା ଓ ସଂହାରକର୍ତ୍ତାଙ୍କ କାନରେ ଆଗରୁ ଟିକିଏ ପକେଇ ଘୋଷଣାନାମା ଜାରି କରି ଦେଇଥିଲେ ଆଜି ଏତେ

ଚିନ୍ତା ନଥିଲା । କିନ୍ତୁ ଆଲୋଚନା ପାଇଁ ତ ଫୁରସତ ନଥିଲା । ଦେବତାଙ୍କ ଔଦ୍ଧତ୍ୟ ଆଉ ପାଟିତୁଣ୍ଡରେ ଦେବସଭା ଉଠୁଥିଲା ଆଉ ପଡୁଥିଲା । ହିତାହିତ ଜ୍ଞାନଶୂନ୍ୟ ଦେବତାମାନେ ଯେଉଁ କାଣ୍ଡ ଭିଆଇଲେ; ଉନ୍ମତ୍ତ ହେଇ ତାଙ୍କ ଆଡ଼କୁ ମାଡ଼ି ଆସିଲେ, ଅଶାଳୀନ ବକ୍ତବ୍ୟ ଦେଲେ ସେଥିରେ କେମିତି ଅବା ସମ୍ଭାଳିଥାଆନ୍ତେ ସେ !

ମନକୁ ପାପ ଛୁଇଁ ଯାଉଛି, କାଳେ କିଏ ଦୋଷଟାକୁ ତାଙ୍କ ଉପରେ ଲଦି ଦେବ କି ?

ବିଷମ ପରିସ୍ଥିତିକୁ ସେ ସମ୍ଭାଳି ନେଇଛନ୍ତି । ଏମିତି କେତେ ବିପଦ ସେ ଆଗରୁ ସମ୍ଭାଳିଛନ୍ତି—ନଜିର ବି ରହିଛି । ଏ ଅବଧି ପ୍ରଶଂସା କି ବିରୋଧ ମତାମତ ଆସି ପହଞ୍ଚିନାହିଁ । ପହଞ୍ଚିଗଲେ ଯମରାଜ କି ଚିତ୍ରଗୁପ୍ତ ଖବର ଦେଇଥାଆନ୍ତେ । ଦେବର୍ଷି ନାରଦ ଗଲେ ଯେ ଏ ପର୍ଯ୍ୟନ୍ତ ଫେରିନାହାନ୍ତି । ନିଦ ମଳ ମଳ ସନ୍ତପ୍ତ ଆଖିରେ ପୁଣି ତନ୍ଦ୍ରା ଚାଲିଆସିଲା । ସେ ତନ୍ଦ୍ରାରେ ହଜିଯାଇଥିଲା ଶାନ୍ତି, ପରିତୃପ୍ତି ଆଉ ପରିପୂର୍ଣ୍ଣ ପ୍ରସନ୍ନତା । ଖାଁ ଖାଁ ଲାଗୁଥିଲା ସମଗ୍ର ପରିବେଶ । ଜଗତକର୍ତ୍ତା ବିଷ୍ଣୁଙ୍କର ଦି'ଘଡ଼ି ଅନନ୍ତ ଶୟନରେ ବିଶ୍ରାମ ଯେ ମର୍ତ୍ତ୍ୟର ଶହେ ବର୍ଷ ସଙ୍ଗେ ସମାନ ।

ଦିନ ଥିଲା, ଦେବତାମାନଙ୍କୁ ଆର୍ଯ୍ୟଭୂମିରୁ ମୁନି-ଋଷିମାନେ ନାନା ତପଶ୍ଚରଣ, କଠିନ ତପସ୍ୟା ସାଧନାରେ ମଣିଷମାନଙ୍କୁ ଦେବତା ସ୍ତରକୁ ପଦୋନ୍ନତି ଦେଇ ଦେବସଭାକୁ ପଠାଇଥିଲେ । ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ଆଶୀର୍ବାଦରୁ ପାପ ଯୋନିରୁ ଜାତ କ୍ରମବିବର୍ତ୍ତନର ପ୍ରକ୍ରିୟାରୁ ଚୌରାଶୀ ସହସ୍ର ଯୋନି ଅତିକ୍ରମି କୋଟି କୋଟି ବର୍ଷ ପରେ ଯାଇ ଅନେକ କଟକଣାରୁ ଉତ୍ତୀର୍ଣ୍ଣ ହୋଇ ତେତ୍ରିଶ କୋଟି ଦେବତାଙ୍କ ଉତ୍ପତ୍ତି ହୋଇଥିଲା । ସୁଖ, ସମ୍ଭୋଗ, ଐଶ୍ୱର୍ଯ୍ୟରେ ମାତି ନିଜର ଅତୀତକୁ ଭୁଲି ମନୁଷ୍ୟର ସମୟ ଅସମୟର ପର୍ଯ୍ୟାପ୍ତ ନୈବେଦ୍ୟକୁ ଗ୍ରହଣ କରି, ବରପ୍ରଦାନ କରି ଦେବତାମାନେ ନିଜେ ନିଜକୁ ସ୍ୱୟଂଭୂ ଭାବି ଏତେ ଅହଂକାରୀ ଓ ବିଶୃଙ୍ଖଳିତ ହୋଇଯିବେ, ପରମେଶ୍ୱର ବିଷ୍ଣୁ ଭାବି ନ ଥିଲେ ।

ଦେବସଭା ଭାଙ୍ଗିଦିଆଗଲା । ଆର୍ଯ୍ୟ ଓ ଅନାର୍ଯ୍ୟ ଭୂମିରୁ ମଣିଷରୁ ଦେବତା ହେବା ପ୍ରଣାଳୀକୁ ପୂରାପୂରି ବନ୍ଦ କରିଦିଆଗଲା । ତେତ୍ରିଶ କୋଟି ଦେବତାଙ୍କ ଭିତରୁ ଆର୍ଯ୍ୟାବର୍ତ୍ତରେ ତିରିଶ କୋଟି ଜନ୍ମନେବା ପରେ ଅବସ୍ଥା ଯେ କ'ଣ ହୋଇଥିବ ! ଦୈନନ୍ଦିନ ଜୀବନ କେମିତି ବିତୁଥିବ, ସେ ସବୁର ଖବର ସଂଗ୍ରହ କରିବା ଲାଗି ନାରଦଙ୍କୁ ପଠେଇବା ପରେ ଚିନ୍ତିତ ହୋଇପଡ଼ିଛନ୍ତି ବିଷ୍ଣୁ ।

ଯାହା ସିଦ୍ଧାନ୍ତ ସେ ନେଲେ, ତାର ପରବର୍ତ୍ତୀ ଫଳ ଯାହା ହେଉ ନା କାହିଁକି ସ୍ୱର୍ଗରେ ଗହଳ ଚହଳ ତ ଆଉ ନାହିଁ, ନୈବେଦ୍ୟ ଗ୍ରହଣ ନିମନ୍ତେ ପାଟିତୁଣ୍ଡ ବି ନାହିଁ । ଦପ୍ତର ଠିକ୍‌ଠାକ୍ ଚାଲିଛି ଗଣତାନ୍ତ୍ରିକ ପଦ୍ଧତିରେ । ସବୁଠୁ କମ୍ ଶାସନ କରୁଥିବା ସରକାର ହିଁ ସର୍ବଶ୍ରେଷ୍ଠ ସରକାର, ନୀତି ନିୟମରେ ।

ସୁ ସୁ ହୋଇ ପବନ ବହିଗଲା, ଦୂରରୁ କଠଉ ଶବ୍ଦ ବି ଶୁଭିଲା । ଜଗତପାଳକ ବିଷ୍ଣୁଙ୍କର ଛାଇ ନିଦ ଚାଉଁକରି ଭାଙ୍ଗିଗଲା; ପହଞ୍ଚିଲେ ବ୍ରହ୍ମାଙ୍କ ମାନସପୁତ୍ର ଦେବର୍ଷି ନାରଦ ।

ଖବର ପାଇବାକୁ ନାରଦଙ୍କୁ ସାଥିରେ ଧରି ସନ୍ନିକଟ ନିଭୃତ କକ୍ଷକୁ ଚାଲିଗଲେ ବିଷ୍ଣୁ ।

ପ୍ରଭୁଙ୍କ ଆଦେଶରେ ଆର୍ଯ୍ୟାବର୍ତ୍ତ ପରିଭ୍ରମଣ ସାରି ନାରଦ ଅନାର୍ଯ୍ୟ ଭୂମି ବ୍ରହ୍ମଲୋକ, ଆଉ କୈଳାସ ପର୍ଯ୍ୟଟନ କରିବାକୁ ମନ ବଳାଇଥିବାରୁ ବିଳମ୍ବ ହୋଇଗଲା କହି କ୍ଷମା ପ୍ରାର୍ଥନା କଲେ, ନାରଦଙ୍କ ପ୍ରତ୍ୟୁତ୍ପନ୍ନମତିତାକୁ ତାରିଫ କରୁ କରୁ ବିଷ୍ଣୁ କିଞ୍ଚିତ ଉଲ୍ଲସିତ ହେଲେ ସତ; କିନ୍ତୁ ସେ ନୀରବ ରହିଲେ । ନାରଦ କହି ଚାଲିଲେ ।

ତିରିଶ କୋଟି ଦେବତା ଆର୍ଯ୍ୟାବର୍ତ୍ତକୁ ପସନ୍ଦ କଲେ, ଆଦେଶର ଖିଲାପ କାଳେ ହୋଇଯିବ, ସେଥିପାଇଁ ଦେବତା ଯିଏ ଯେଉଁଠି ଚାହିଁଲେ, ଚିତ୍ରଗୁପ୍ତ ସେମାନଙ୍କୁ ସେଇଠିକି ପଠେଇଲେ । ଅବଶିଷ୍ଟ ଅବାଧ ହେବାରୁ ଆପଣଙ୍କ ନିର୍ଦ୍ଦେଶ ବଳରେ ଚିତ୍ରଗୁପ୍ତ ସେମାନଙ୍କୁ ବନ୍ଦୀ କଲେ । କାରାଗାରର ଦୁଃଖ, ନିର୍ଯାତନା, ଅନାହାର, ଅର୍ଦ୍ଧାହାରରେ ସନ୍ତୁଳିତ ହୋଇ ଶେଷରେ ଅନେକ କାକୁତି ମିନତି କରିବାରୁ, ଚିତ୍ରଗୁପ୍ତ ଯମରାଜଙ୍କ ଅନୁମୋଦନରେ ସେମାନଙ୍କୁ ଆର୍ଯ୍ୟାବର୍ତ୍ତକୁ ନ ପଠେଇ ଅନାର୍ଯ୍ୟଭୂମିକୁ ପଠେଇଦେଲେ । ବିଚକ୍ଷଣ ବୁଦ୍ଧି ବଳରେ ଏଇ ଦେବତା, ଆଜ୍ଞା ! ଆର୍ଯ୍ୟଭୂମିର ଦେବତାମାନଙ୍କୁ କୂଟନୀତିରେ ଟପି ଯାଇଛନ୍ତି ।

ମର୍ତ୍ତ୍ୟର ଜନସଂଖ୍ୟା ଥିଲା ସୀମିତ । କିନ୍ତୁ ଏଇ ଦେବତାମାନେ ସେଠି ଜବରଦସ୍ତ ଧସେଇ ପଶିଯିବାରୁ ଲୋକସଂଖ୍ୟା ହୁ ହୁ ହୋଇ ବଢ଼ିଗଲାଣି । ଆର୍ଯ୍ୟାବର୍ତ୍ତରେ ସବୁଠୁ ବେଶୀ ଭିଡ଼ । ମନୁଷ୍ୟଙ୍କର ଆଚରଣ ଖୁବ୍ ସରଳ, ନିଛକ ଆଉ ନିଷ୍କପଟ ହୋଇଥିବାରୁ ଜନସଂଖ୍ୟାକୁ ରୋକିବା ନାଁରେ ଦେବତାମାନେ କାଇଦାକଟକଣା ଲାଗୁ କଲେ । କେତେବେଳେ ତିନି, କେତେବେଳେ ଦୁଇ ଓ ଶେଷରେ ଏକ ବୋଲି ସ୍ଲୋଗାନରେ କାନ୍ଥ-ବାଡ଼ ଖାଲି ଚିତ୍ର ବିଚିତ୍ର । ସବୁଜ ପତ୍ରିକା ପ୍ରଚଳନ, ସୁବିଧା ସୁଯୋଗ ଓ ପ୍ରତିଶ୍ରୁତି ପ୍ରୋତ୍ସାହନ । ମୂଳ ତତ୍ତ୍ୱ ବୁଝିବାକୁ କାହାରି ମୁଣ୍ଡରେ ମସଲା ନାହିଁ । ଦେବତାମାନେ ଯଦି ମର୍ତ୍ତ୍ୟକୁ ଯାଇ ନ ଥାଆନ୍ତେ ଆର୍ଯ୍ୟାବର୍ତ୍ତରେ ତେବେ ଚାଳିଶ ପଚାଶ କୋଟି ଭିତରେ ନଅଟ ପଅଟ ହେଉଥାଆନ୍ତେ । ଅବଶ୍ୟ ଦେବତାମାନେ ମର୍ତ୍ତ୍ୟରେ ଥିବାରୁ ମହାମାରୀ, ମଡ଼କ, ଦୁର୍ଭିକ୍ଷ, ତିରୋଟ, ଭୂକମ୍ପ ସେତେ ହେଉନି । ଆଧୁନିକ ଧନ୍ୱନ୍ତରୀମାନେ ଯମଦେବତାଙ୍କ ଚର କାଳ ବିକାଳଙ୍କୁ ଦେଖିଲେ ଗୋଡ଼ାଉଛନ୍ତି ଯେ, ସେମାନେ ନୟାନ୍ତ ହେଲାଣି । ତଥାପି ଜନ୍ତୁପତି ଯମ ନିଜେ ଯାଇ ଖୁବ୍ ଲଢ଼ାଭିଡ଼ାରେ ଯମପୁରକୁ ଆଣୁଛନ୍ତି, କିନ୍ତୁ ଦେବତାଙ୍କୁ ଛୁଇଁ ପାରୁନାହାନ୍ତି । ମରୁଛନ୍ତି, ପୁଣି ସଙ୍ଗେ ସଙ୍ଗେ ସେଇଠି ଜନ୍ମ ନେଉଛନ୍ତି । କାରଣ ମର୍ତ୍ତ୍ୟରୁ ଆସିବା ବାଟ ତ ଆପଣ ବନ୍ଦ କରି ଦେଇଛନ୍ତି ।

ନାରଦଙ୍କ କଥାରେ ଅଳ୍ପ ହସିଦେଲେ ବିଷ୍ଣୁ ।

ପ୍ରଥମେ ପରସ୍ପର ଭିତରେ ବୁଝାମଣା ମିଳାମିଶା କରି ଆପଣଙ୍କ ଆଦେଶ ମୁତାବକ ମଣିଷର ସେବକ ସାଜି ଚତୁରପଣରେ ମଣିଷଠୁ ଶାସନତନ୍ତ୍ରର ଡୋରିକୁ ହାତେଇନେଲେ ଦେବତାମାନେ । ସୁଖ-ସମ୍ଭୋଗ, ଆମୋଦ-ପ୍ରମୋଦ ସେମାନଙ୍କର ରକ୍ତଗତ ସମ୍ପର୍କ । ଭୋଗବାଦୀ ଦେବତାମାନେ ମନୁଷ୍ୟ ସୁଲଭ ତ୍ୟାଗ ଆଦର୍ଶର ମିଠା କଥା କହି ଭିତରେ କୂଟନୀତି ପ୍ରୟୋଗ କରି ମୁହଁରେ ଲମ୍ବା ଭାଷଣ ମାରି, ବଡ଼ ପାଟିରେ ମିଛକୁ ସତ ବୋଲି କହିବାର ଦକ୍ଷତା ନାରଦ ନିଜେ ଦେଖିଛନ୍ତି ।

ମନୁଷ୍ୟ ରୂପରେ ଦେବତାମାନେ ଜନ୍ମିଥିବାରୁ ମନୁଷ୍ୟ ଏମାନଙ୍କୁ ଦେବତା ବା ସ୍ୱର୍ଗରୁ ବହିଷ୍କୃତ ପଦଚ୍ୟୁତ ଦେବତା ବୋଲି କେମିତି ଜାଣିବ ? ଜାଣିବାର ସୁଯୋଗ ବା କେମିତି ମିଳିବ ? ଆପଣଙ୍କର ତ କଡ଼ା ନିର୍ଦ୍ଦେଶ ଯେ ବିନାନୁମତିରେ, ବିନା ଯାଞ୍ଚରେ କୌଣସି ସମ୍ବାଦ କୌଣସି ସୂତ୍ରରେ ପ୍ରକାଶିତ ହେବନି । ଏଣୁ ସ୍ୱର୍ଗପୁରୀରୁ କିଏ ବା କାହିଁକି କଥା ପ୍ରଘଟ କରିବ । ଏଣୁ ମଣିଷ ଏ ରହସ୍ୟ ଜାଣିବା ସମ୍ଭବ ନୁହେଁ ।

ଗରିବୀ ହଟେଇବେ, ବେକାରୀ ଦୂରେଇବେ, ଦରିଦ୍ର କେହି ରହିବେ ନାହିଁ, ସମସ୍ତଙ୍କୁ ସମାନ ଅଧିକାର ମିଳିବ ବୋଲି ଗଳା ଫଟେଇ ଚାରିଆଡ଼ କମ୍ପେଇ ଶାସନତନ୍ତ୍ରକୁ ଯେନତେନ ଉପାୟରେ କରଗତ କଲେ ଦେବତାମାନେ । ସ୍ୱର୍ଗରେ ସିନା ମାଇକ୍ ନଥିଲା, ଏବକୁ ଆଉ ପ୍ରଚାରର କିଛି ଅସୁବିଧା ନାହିଁ । ଇଣ୍ଟରନେଟ୍, ଓ୍ୱେଭନେଟ୍ ସୂଚନା ବିଜ୍ଞାନର ବିସ୍ଫୋରଣ ହୋଇଗଲାଣି ।

ବିଷ୍ଣୁ ଏଇଠି ମୁହଁ ଖୋଲିଲେ, ନୀତିନିଷ୍ଠ ବିଚକ୍ଷଣ ନୀତିବିଶାରଦ ଶୁକ୍ରଙ୍କ ପରି ବହୁ ଭାବିଚିନ୍ତି, କେତେ ଗ୍ରହ ଗ୍ରହାନ୍ତର ପର୍ଯ୍ୟଟନ କରି ମୋଟାମୋଟା ବହିରୁ ଟିପାଟିପି ଉତରା ଉତୁରି କରି ବଡ଼ ସମ୍ବିଧାନଟିଏ ଯେତେବେଳେ ପ୍ରଣୟନ କରିଥିଲେ, ସେତେବେଳେ ସମସ୍ତେ ପ୍ରଶଂସାରେ ଶତମୁଖ ହେଇଥିଲେ ସେଦିନ ।

ହଁ, ସେଥିରେ ଆପଣଙ୍କର ସମ୍ମତି ଥିବା ସଙ୍ଗେ ସଙ୍ଗେ ସ୍ୱୟଂ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ସ୍ୱାକ୍ଷର ଆଉ ଢୁଳେଇ ଢୁଳେଇ ଚିଲମରୁ ହୁସ୍ ହୁସ୍ ଧୂଆଁ ଛାଡ଼ି ମହେଶ୍ୱର ଲମ୍ବା ସନ୍ତକ କରି ନନ୍ଦି ଓ ଭୃକୁଟିଙ୍କୁ ଚିଲମ ସଜ କରିଦେବାରେ ବିଳମ୍ବ କରିଦେଇ ଥିବାରୁ ବି' ଆପତ୍ତ ଦେଇ ଚିଡ଼ିମିଡ଼ି ହେଇ ସଭା ମଝିରୁ ଉଠିଗଲେ । ମୁଁ ନିଜେ ଦେଖିଛି ପରା... । ନାରଦ ଜୋରରେ ଏତକ କହିଦେବାରୁ ଶଙ୍କିତ ହେଇଗଲେ ।

ଛୋଟଠାରୁ ବଡ଼ କର୍ମଚାରୀ, କୁଜିନେତା, ବଡ଼ ନେତା, ମନ୍ତ୍ରୀପାର୍ଷଦ, ବିଧାୟକ, ସାମ୍ବାଦିକ ଗୁମାସ୍ତାମାନେ ସବୁ ନରରୂପୀ ଦେବତା ପଦବୀରେ ଜୀବନଯାକ ରହିବା ଲାଗି ଟଣାଓଟରା ଦେଖି ନାରଦ ଛାନିଆଁ । ଯେତିକି ମନେପଡୁଥାଏ, ନାରଦ କଥାର ପେଡ଼ି ସେତିକି ଖୋଲୁଥାଆନ୍ତି, ଆପଣ ଆଦେଶ ଦେଇଥିଲେ, ଦେବତାମାନେ ମଣିଷର ସେବକ ହେଇଗଲେ ଦେବତାଙ୍କ ଅହଂକାର ଆପେ ଆପେ ଚାଲିଯିବ; ମଣିଷ ଆଉ

ଦେବତାଙ୍କ ଭିତରେ ବିଭେଦ ରହିବନି—ନିୟମର ବ୍ୟାଖ୍ୟା କଦର୍ଥ କରାଗଲା । ଦେବରାଜ ଇନ୍ଦ୍ର ମର୍ତ୍ତ୍ୟରେ ଆନନ୍ଦରେ ଅଛନ୍ତି । ଇନ୍ଦ୍ରପୁରୀ ତା' ପାସଙ୍ଗରେ ପଡ଼ିବନି । ତାଙ୍କର ଜନସେବକର ଭୂମିକା ଦେଖିଲି, ତା'ପରେ ମୁନିବର ଚମତ୍କାର ଅଭିନୟ । ମୋ ଆଖିକୁ ପହିଲୁ ପହିଲୁ ପରତେ ହେଲାନି; ସେ ଯେ ସ୍ୱୟଂ ଦେବରାଜ ଇନ୍ଦ୍ର ।

ଠିକାଦାରୀ କରୁ କରୁ ହଠାତ୍ ନିର୍ବାଚନରେ ଅବତୀର୍ଣ୍ଣ ହୋଇଗଲେ । ଭୋଟ ପାଇ ମନ୍ତ୍ରୀ ବି ହେଇଗଲେ । ଅର୍ଥ, ବାହୁବଳ ଓ ଗୁଣ୍ଡାମୀ ବଳରେ କାହାକୁ ଖାତିର ନାହିଁ ତାଙ୍କର । ଫାଇଦା ଦେଖି ତାଙ୍କ ଅଞ୍ଚଳରେ ଦରକାର ଅନୁଯାୟୀ ଅସରା ଅସରା ମେଘ ଢାଳିଲେ । ମୁଖ୍ୟ ବିଶ୍ୱକର୍ମାଙ୍କୁ ହାତରେ ରଖି ମନ ଯେଉଁଠି ହେଲା, ପକ୍କା ରାସ୍ତା, ରାସ୍ତା ଚଉଡ଼ା, ପୋଲ, ବିଜୁଳିବତୀ, ପଥରବନ୍ଧ, ଘେରିବନ୍ଧ, ଲଳିତା ଆବାସ, ଥାନା, ପାଇଖାନା ଉଦ୍‌ଘାଟନ ଆହୁରି କେତେ କେତେ ଯେତେବେଳେ ଯାହା ଅବୁଝା ମନରେ ପଶିଲା, କଲେ । ଉଦ୍ଦେଶ୍ୟ ସେ ଓ ତାଙ୍କ ଉତ୍ତରପୁରୁଷ ଭୋଟ ଧନ୍ଦାରେ ପରାସ୍ତ ହେବେ ନାହିଁ । ବେଳେ ବେଳେ ଅନ୍ୟ ଦେବତାମାନେ ଠିଆ ହେବାକୁ ହୁକୁର ହୁକୁର ହେବାରୁ ଅର୍ଥ ଆଉ ଗୁଣ୍ଡାମୀ ବଳରେ ସେମାନଙ୍କୁ ଏମିତି ସାବାଡ଼ କରିଦେଲେ ଯେ ଆଉ କେବେ ବି ମନ ବଳେଇବେ ନାହିଁ । ଅନ୍ୟ ଅଞ୍ଚଳରେ ମଲେ କି ଗଲେ ତାଙ୍କର ଯାଏ ଆସେନା—ଅନାବୃଷ୍ଟିରେ କେଉଁଠି ହାହାକାର ପଡ଼ିଲାଣି ତ ଅତି ବୃଷ୍ଟିରେ ବନ୍ୟା । ମଣିଷ ତ୍ରାହି ତ୍ରାହି ଡାକିଲେଣି । ତାଙ୍କର ନିଘା ନାହିଁ । ୟା'ର ସୁଯୋଗରେ ଛୋଟ ବଡ଼ ବିଶ୍ୱକର୍ମାଙ୍କର କିଳାପୋତିଆ ରୋଜଗାର, ରାତାରାତି ଲମ୍ୱାଦାଢ଼ି କଳାଧନରେ ଖାଲି ଜମିବାଡ଼ି; ଗହଣା, ଗାଡ଼ିମଟର, କୋଠାବାଡ଼ି, ନଭଶ୍ଚୁମ୍ବୀ ଅଟ୍ଟାଳିକା । ସହର ଗାଁଗଣ୍ଡା ପୂରା ଧବଳମୟ ହୋଇଗଲାଣି । ଦୁର୍ନୀତି ନିବାରଣ ବିଭାଗଟିଏ ଅଛି; ତଦାରଖ ନାଁରେ ମୋଟା ଅଙ୍କର ଅର୍ଘ୍ୟ ନେଇ ବେଶ୍ ଆରାମରେ ଅଛନ୍ତି । କଳାଧନ କ'ଣ ବୋଲି ପଚାରି ଦେଲାରୁ ଉତ୍ତର ମିଳିଲା—ପଚାରନ୍ତୁ ନାହିଁ, ତାହା ତ ହିସାବ ବହିର୍ଭୂତ, ଅଶରୀରୀ ପରି ଏମାନେ ଆସନ୍ତି, କେଉଁଠି ରହନ୍ତି, କେଉଁଠି ପଶନ୍ତି, ଟେର୍ ମିଳିବା କଷ୍ଟ ।

କର୍ତ୍ତବ୍ୟ ଚାଲିଛି, ଧର୍ମକୁ ଖାଲି ଆଖିଠାର ।

ଦେବର୍ଷି ନାରଦ, ସ୍ୱର୍ଗପୁରୀଠାରୁ ମର୍ତ୍ତ୍ୟର ସୁଖ-ସମୃଦ୍ଧି କ'ଣ ବେଶି ? ଏହା ଥିଲା ବିଷ୍ଣୁଙ୍କର ଉତ୍କଣ୍ଠା ଓ ଆବେଗଭରା ପ୍ରଶ୍ନ ।

ଯାହା ଏ ନେତ୍ର ଦେଖିଆସିଛି, ତାହା ତ ବଖାଣୁଛି ପ୍ରଭୁ ! ମନରୁ କିଛି ନୁହେଁ ।

ଭୋଗ, ଉପଭୋଗ ଓ ସମ୍ଭୋଗରେ ମାତି ଦେବତାଗଣ, ନିରୀହ ନିପୀଡ଼ିତ ମନୁଷ୍ୟଙ୍କୁ ପ୍ରତି ମୁହୂର୍ତ୍ତରେ ଶୋଷଣ କରୁଛନ୍ତି । ନିଜ ସ୍ୱାର୍ଥ ସାଧନ ନିମନ୍ତେ ଯାହା ପାରେ ତାହା କରୁଛନ୍ତି, ପ୍ରତିଦାନରେ ଜହ୍ନମାଟିକୁ ବନ୍ଧା ଦେଇ ମଧ୍ୟ । ଭାରି ଦୁଃଖ ଲାଗିଲା ଆଜ୍ଞା ! ହର୍ଷଦ, ହାୱାଲା, ବୋଫର୍ସ, ୟୁରିଆ, ଗୋଖାଦ୍ୟ ପ୍ରକାର ପ୍ରକାର

ଦୁର୍ନୀତି । ଘରୋଇକରଣ, ଉଦାରୀକରଣ, ଉଧାରୀକରଣ, ନିଜିକରଣ, ବ୍ୟବସାୟୀକରଣ, ସାମ୍ପ୍ରଦାୟୀକରଣ, ଗୋଲକୀକରଣ ନୂଆ ନୂଆ ଶବ୍ଦର ଚକ୍‌ମା ଦେଖେଇ ନିଜର ଥଳି ଭରି ପେଟ ଫୁଲେଇ ଯାନବାହନ ଚଢ଼ି ପେଁ ପାଁ କରି ପରିବେଶକୁ ଯେଭଳି ଦୂଷିତ କରୁଛନ୍ତି, ସହରଗୁଡ଼ିକ ଧୂମମୟ ହୋଇଗଲାଣି । ଦେବତାମାନେ ଶୀତତାପ ନିୟନ୍ତ୍ରିତ କୋଠରୀରେ ରହି ଘୁଙ୍ଗୁଡ଼ି ଛାଡୁଛନ୍ତି ।

ବ୍ୟାସ ପ୍ରଭୃତି ତତ୍ତ୍ୱଜ୍ଞମାନେ ଯିବାପରେ ପୁରାଣ, ବେଦ, କ୍ଲାସିକରେ ଉଇ ଧରିଲାଣି । ସାହିତ୍ୟ ସଭା, ଭାଷଣ ବାଜିରେ ପ୍ରକମ୍ପିତ ହେଉଛି ଗଗନ ପବନ । ଗୁଣାତ୍ମକ ବିକାଶକୁ ନଜର ନାହିଁ କି ଲେଖାଲେଖିରେ କାହାରି ମନ ଧ୍ୟାନ ନାହିଁ । କାଳଜୟୀ କୃତିଟିଏ ପାଇବା ସାତ ସପନ । ସାହିତ୍ୟର ଧାରଣା ନ ଥିବା ଦେବତାଗୁଡ଼ାଙ୍କୁ ସଭାରେ ପୁରୋଧା କରି ସମ୍ବର୍ଦ୍ଧନା ସଭା, ଆଉ ମାଳ ମାଳ ପୁରସ୍କାର ଦିଆଚାଲିଛି । ପଲ୍ଲବଗ୍ରାହିତାର ପ୍ରାବଲ୍ୟ ଏକ ସହଜ ଅଧ୍ୟବସାୟକୁ ସୃଷ୍ଟି କରିଚାଲିଛି । ସତେଯେମିତି ସୃଜନଶୀଳ ଲେଖକଟି 'ବିପୁଳା ଚ ପୃଥ୍ୱୀ କାଳ ନିରବଧି' ବ୍ୟାଖ୍ୟାକୁ ଉଝେଇ ଦେଲାଣି ।

ଯାହା ଜଣାପଡୁଛି, ଦେବତାମାନେ ଆଉ ମର୍ତ୍ତ୍ୟର ସୁବିଧା ସୁଯୋଗ ଛାଡ଼ିବେନି, ଆଉ କେଉଁଠିକି ବି ଯିବେନି ।'' ଚମକି ପଡ଼ିଲେ ବିଷ୍ଣୁ, ଏଁ ?

ବଡ଼ ଆଁ କରି ଟାଟକା ପ୍ରାୟ ଚାହିଁଲେ ନାରଦଙ୍କୁ । ହଠାତ୍ ବନ୍ଦ ଦରଜାରେ ଖଟ୍ ଖଟ୍ ଶବ୍ଦ । ବିଷ୍ଣୁଙ୍କ ଇଙ୍ଗିତରେ ନାରଦ କବାଟ ଖୋଲିଦେଲେ । ସାମ୍ନାରେ ଚିତ୍ରଗୁପ୍ତ, ହାତରେ ସାଲୁ କନାଗୁଡ଼ା ନଥିପତ୍ର । ଜନ୍ତୁପତି ଯମଙ୍କ ଧମକପୂର୍ଣ୍ଣ ନିଳମ୍ବନର ଭୟରେ ମନ୍ତ୍ରୀ ଚିତ୍ରଗୁପ୍ତ ଅସମୟରେ ଅପ୍ରତ୍ୟାଶିତ ଭାବରେ ବୈକୁଣ୍ଠକୁ ପ୍ରବେଶ କରିଥିବାରୁ କ୍ଷମା ମାଗିନେଲେ ଓ ବଢ଼େଇଦେଲେ ନଥିଟିକୁ, ବିଷ୍ଣୁଙ୍କ ହାତକୁ ।

ନଥିଟିରେ 'ଅତ୍ୟନ୍ତ ଜରୁରୀ' 'ବିଶେଷ ଅଗ୍ରାଧିକାର' ଲେଖାଥିବା ଡେଙ୍ଗା ପତାକାଟିଏ ମଧ୍ୟ ସଂଲଗ୍ନ ହୋଇଛି । ଭିତରେ ତିନିଗୋଟି ଅନୁସ୍ମାରକ । ବ୍ରହ୍ମବର୍ତ୍ତରୁ ଦୁଇ, କୈଳାସରୁ ଗୋଟିଏ ।

ଯମ ଯାକୁ ପାଇ ଛାନିଆଁ ହେଇ ତରବରରେ ନଥି ଦେଇଛନ୍ତି, ଟିପ୍ପଣୀ ପୃଷ୍ଠାରେ ଲେଖିଛନ୍ତି; ମନୁଷ୍ୟ ଓ ଦେବତାମାନଙ୍କ ଭିତରେ କନ୍ଦଳ ଦିନକୁ ଦିନ ବଢ଼ି ଚାଲିଛି । ମନୁଷ୍ୟଙ୍କ ପାଇଁ ଆଇନ୍ ଯେତେ କଡ଼ାକଡ଼ି ଭାବରେ ଲାଗୁ ହେଉଛି, ଦେବତାମାନଙ୍କ ପାଇଁ ସେତେ କୋହଳ ହୋଇଯାଉଛି । କିନ୍ତୁ ପ୍ରଚାର ଚାଲିଛି ଯେ, ଆଇନ୍ ସମସ୍ତଙ୍କ ପାଇଁ ସମାନ । ଧନ ଯେତେ ଅର୍ଜନ କରୁଛନ୍ତି ଦେବତା, ମଣିଷଙ୍କର ସେତେ ଛିଣ୍ଡି ଛିଣ୍ଡି ଆସୁଛି । ମଣିଷ ହତଶିରୀ ଦରିଦ୍ର ହୋଇଗଲାଣି । ଘରଦ୍ୱାର ଶୂନ, କ୍ଷୁଧା ଭୟ ଜର୍ଜରିତ ମଣିଷ ଆର୍ତ୍ତନାଦ, ସମ୍ମିଳିତ ହା ହଲାରେ ଜାଗାଏ ଜାଗାଏ ଅଞ୍ଚଳ କମ୍ପୁଛି । ପୁଣି ଭୋଗ, ଭୟ, ଭ୍ରଷ୍ଟାଚାର ବିଲୋପ, ଦେବତାଙ୍କ ମିଛ ପ୍ରତିଶ୍ରୁତିରେ

ଭୁଲି ନିର୍ବାଚନୀ ନାରାରେ ମଧ୍ୟ ଦେବତାଙ୍କୁ ସାହାଯ୍ୟ କରୁଛି ଏଇ ମଣିଷ—ସ୍ଲୋଗାନ ଦେଉଛି, ନୋଟ ନେଇ ଭୋଟ ଦେଉଛି । ସାମାନ୍ୟ ମଜୁରି ନେଇ ଗାଡ଼ି ଭିତରେ ଆସି ସହର ସଭାରେ ଗହଳି କରୁଛି—ବଡ଼ ବିଚିତ୍ର ଭଣ୍ଡାମି ଇଏ । ଏତିକିରେ ଦେବତାଙ୍କ ଚକ୍‌ମା ସରିନାହିଁ ।

ଅନେକ ବିଳମ୍ବରେ ଅନାର୍ଯ୍ୟଭୂମିରେ ପହଞ୍ଚି ମଧ୍ୟ ଦେବତାମାନେ ତାଙ୍କ ପୂର୍ବସଞ୍ଚିତ ବଳବୁଦ୍ଧି ହେତୁ ଆର୍ଯ୍ୟାବର୍ତ୍ତର ଦେବତାମାନଙ୍କଠାରୁ ଯଥେଷ୍ଟ ଆଗରେ ଅଛନ୍ତି । ଅନାର୍ଯ୍ୟ ଭୂମିରେ ବେଶ୍ ଆଧିପତ୍ୟ ବିସ୍ତାର କରିବା ସଙ୍ଗେ ସଙ୍ଗେ ସମୟେ ସମୟେ ଆର୍ଯ୍ୟାବର୍ତ୍ତରୁ ଧନଦରବ ଲୁଟିନେଇ ପରମାନନ୍ଦରେ ଅଛନ୍ତି । ଯେତେ ସୁଖସମୃଦ୍ଧିରେ ପୁଞ୍ଜି ଖଟେଇବା ପରେ ବି ସରୁନାହିଁ । ବିନିଯୋଗ କରିବାର ବଳ ଓ ବୁଦ୍ଧି ତ ଦରକାର । ଏଣୁ ଆର୍ଯ୍ୟଭୂମିକୁ ସେ ପୁଞ୍ଜିକୁ ଧାରସୂତ୍ରରେ ପଠେଇ ମୋଟା ଅଙ୍କର ସୁଧ ନେଇ ସେ ପୁଞ୍ଜିକୁ ଦ୍ୱିଗୁଣିତ କରୁଛନ୍ତି । ପୂର୍ବ ସମ୍ପର୍କବଶତଃ ଆର୍ଯ୍ୟ ଓ ଅନାର୍ଯ୍ୟ ଦେବତାମାନଙ୍କ ଭିତରେ ଖୁବ୍ ନିବିଡ଼ ନିଗୂଢ଼ ଭାବ ବିନିମୟ ତ ରହିଛି, ପୁଞ୍ଜି ଆଣିବା ଏବଂ ସେ ପୁଞ୍ଜିରୁ ଅଧାରୁ ବେଶୀ ବାଟମାରଣା କରି ସେଇ ଅନାର୍ଯ୍ୟଭୂମିରେ ନିଜ ଗୁପ୍ତ ନାଁରେ ରଖିଦେବାରେ କିଛି ଅସୁବିଧା ନାହିଁ । ଉଭୟ ପକ୍ଷର ଏଥିରେ ଲାଭ ଜଡ଼ାତେଲକୁ ମେଣ୍ଢାବାଳ । ମୁଖା ଖୋଲିବାର ଆବଶ୍ୟକ ନାହିଁ । ବ୍ୟୋମଯାନ ଚଢ଼ି ପରିବାର ଓ ସାଥି ସହୋଦର ଧରି ବର୍ଷରେ ସାତ ଆଠଥର ଅନାର୍ଯ୍ୟଭୂମିରୁ ପୁଞ୍ଜି ସଂଗ୍ରହ ନାଁରେ ବୁଲି ଆସିଲେ ବି କାହାରି ଆପତ୍ତି ନାହିଁ । ହେଲେ ସବୁ ମାଡ଼ ସହୁଛନ୍ତି ମନୁଷ୍ୟ । ଆର୍ଯ୍ୟାବର୍ତ୍ତରୁ ଅଧେରୁ ଅଧିକ ସମ୍ବଳ ବର୍ଷରେ ପରା ଅନାର୍ଯ୍ୟମାନଙ୍କୁ ସୁଧ ଦେବାରେ ଯାଉଛି; ଏହାର ପ୍ରତିକାର ଦରକାର ।

ଟିପ୍ପଣୀ ପୃଷ୍ଠା ପଢ଼ିଲାପରେ ପତ୍ରବିନିମୟ ପୃଷ୍ଠାକୁ ଆଖି ପକେଇଲେ ବିଷ୍ଣୁ । ବ୍ରହ୍ମା ଲେଖିଛନ୍ତି—ତାଙ୍କ ପ୍ରଣୀତ ପ୍ରଜନନ ସୂତ୍ର କାମ ଦେଉନି । ଟେଷ୍ଟଟ୍ୟୁବ୍ ଓ କ୍ଲୋନ ପଦ୍ଧତିରେ ମନୁଷ୍ୟ ଯେଉଁ ମୁହୂର୍ତ୍ତରେ ଚାହିଁବ ଦେବତାମାନଙ୍କ ଅପେକ୍ଷା ଜନସଂଖ୍ୟାକୁ ବଢ଼େଇଦେବ । ଧୀରେ ଧୀରେ ଦେବତାଙ୍କ କପଟାଚାର ଲୋକଲୋଚନକୁ ଅଣାଯିବାକୁ ଉଦ୍ୟମ ଚାଲିଛି ଓ ମର୍ତ୍ତ୍ୟରେ ମଣିଷ ଭିତରୁ ଦେବତା କିଏ, ତାହା ବାରି ହୋଇଯିବାକୁ ଆଉ ପ୍ରାୟ ବେଶୀ ସମୟ ନାହିଁ । ଯଦି ଯୁଦ୍ଧ ଲାଗେ, ତେବେ ବିପଦ, ତେଣୁ ବ୍ରହ୍ମା ଆତଙ୍କିତ ।

ଭୋଳାନାଥ ମହେଶ୍ୱର ମଧ୍ୟ ଘୋର ସନ୍ଦେହରେ ଅଛନ୍ତି । ଚିଠି ସାରା ପୋଡ଼ା ଟିକି ଟିକି କଳାଦାଗ । ବୋଧହୁଏ ଚିଲମ ଝୁଲରୁ ଏ ଅବସ୍ଥା । ସେ ଲେଖିଛନ୍ତି—ଆର୍ଯ୍ୟାବର୍ତ୍ତରେ ସଙ୍କଟ, ଖଣ୍ଡପ୍ରଳୟ, ଘୂର୍ଣ୍ଣିବାତ୍ୟା, ମହାମାରୀ ଦୁର୍ଭିକ୍ଷରେ ଯେତେ ମରୁଛନ୍ତି, ତାହା ଅଳ୍ପ । ମନୁଷ୍ୟ ଆଉ ଦେବତାଙ୍କ ଅନୁପାତିକ ଭାରସାମ୍ୟ ସେ ରକ୍ଷା କରିବାକୁ ଅକ୍ଷମ । ଏଣୁ ଦେବତା କି ମନୁଷ୍ୟ ହୁଅନ୍ତୁ, ଧ୍ୱଂସ ଅନିବାର୍ଯ୍ୟ । ତାଣ୍ଡବ ଲାଗି ତାଙ୍କ ଗୋଡ଼ ମନକୁ ମନ ଖାଲି ଶଲ ଶଲ ହେଲାଣି । ଦି'ଟା ଯାକ

ଚିଠିରେ ସମାଧାନର ପ୍ରସ୍ତାବ ନାହିଁ । ବିଷ୍ଣୁ ବିରକ୍ତ ହୋଇଗଲେ । ଯମରାଜଙ୍କ ଖାମଖିଆଲି ଦାୟିତ୍ୱହୀନ ଟିପ୍ପଣୀ ଦେଖି ।

ନଥିଟିକୁ ଯୁକ୍ତିଯୁକ୍ତ ପ୍ରସ୍ତାବ ଦେଇ ପୁନଃ ଉତ୍‌ଥାପନା ନିମନ୍ତେ ଲେଖିଦେଇ ସେ ଫିଙ୍ଗିଦେଲେ ଚିତ୍ରଗୁପ୍ତଙ୍କ ଆଡ଼କୁ ।

ବିଷ୍ଣୁଙ୍କର ପ୍ରଚ୍ଛନ୍ନ କ୍ରୋଧ ଲକ୍ଷ୍ୟ କରି ଥତମତ ହୋଇଗଲେ ଚିତ୍ରଗୁପ୍ତ । ନାରଦ ମଧ କ୍ଷଣିକ ପାଇଁ ଅଟିଗଲେ ତାଙ୍କର ବିରିକ୍ତିଭାବ ଦେଖି ।

ନାରଦଙ୍କ ଆଖିର ଇସାରାରେ ଚିତ୍ରଗୁପ୍ତ ତୁରନ୍ତ ସ୍ଥାନ ତ୍ୟାଗ କଲେ ।

''ଦେଖ ହୋ ନାରଦ ! ବ୍ରହ୍ମା ମହେଶ୍ୱରଙ୍କ ପ୍ରକାର ପ୍ରକାର ହୁନ୍ଦର ମୁଁ କେତେ ସହିବି ! ଝାମେଲା ଆରମ୍ଭ କରିଦେବେ, ସମାଧାନ କରିବାକୁ ମୋ ପାଖକୁ ଦୌଡ଼ିବେ ।''

''ଆପଣ ପରା ଅଗତିର ଗତି, ଅନାଥର ନାଥ, ସର୍ବମୟ କର୍ତ୍ତା । ଆପଣଙ୍କ ପାଖକୁ ନ ଆସି ଆଉ ଯିବେ କୁଆଡ଼େ ?'' ନାରଦ ଛଳରେ ମୁରୁକି ହସି ଦେବାରୁ ବିଷ୍ଣୁ ଟିକିଏ ଗମ୍ଭୀର ହୋଇଗଲେ ।

''ହଉ, ତାପରେ କ'ଣ ସବୁ ଦେଖିଲ ?''

ଆର୍ଯ୍ୟଭୂମିର ଗୋଟିଏ ଛୋଟ ଉପଖଣ୍ଡକୁ ଯାଇଥିଲି । ଲୋକଗୁଡ଼ା ଭାରି ସ୍ନେହୀ, ସରଳ ଆଉ ବିଶ୍ୱାସୀ । କିନ୍ତୁ ଦରିଦ୍ର ଓ ସମ୍ପୂର୍ଣ୍ଣ ଅଜ୍ଞ । ସେଇଠି ଟିକେ ବେଶୀ ଦିନ ଠାକିଗଲି । ଦେବତାମାନେ ସେଠି ଚରି ଯାଉଛନ୍ତି । ଗୋଡ଼ାଣିଆ ତୋଷାମଦକାରୀଙ୍କର ସ୍ୱର୍ଗସୁଖ ସେଠି । କଦବା କେମିତି ଯଦି ତଳିଆ ଦେବତାଙ୍କର ଉପରୁ ବଦଳି ହେଇଗଲା, ତେବେ କଥା ସରିଲା ଜାଣ । ଉପର ଦେବତାଙ୍କୁ ଖୁସି କରି ପୁଣି ସେଠି ରହିବେ । ଲୋକେ ଅନାହାରରେ ମରୁଛନ୍ତି, ଅଥଚ ଏମାନଙ୍କର ସବୁଦିନେ ବାହାଘର ଲଟରପଟର । ଧଅ କହିଲେ ବାନ୍ଧିବେ; ଅଙ୍ଗୁଳି ଦେଖେଇଲେ ବାହା ଗିଳିବେ ।

ଆଗ ବାଟ, ପଛ ବାଟ ଯେଉଁ ବାଟ ପାଇଲେ, କ୍ଷମତାକୁ ହାତଛଡ଼ା ନ କରି ଧସେଇ ପଶିଯିବେ । ଗାଦିଟାକୁ ବାପ ଅଜା ଚଉଦ ପୁରୁଷର କହି ମାଡ଼ିବସି ନିୟମ କାନୁନ୍‌ର ନକ୍‌ସା ବଦଳେଇ ପକେଟ ଗରମ କରି ଶୁଙ୍ଘି ଶୁଙ୍ଘି ଦେବତା ଦେବତା ବାସୁଥିବା ଅସଲି ଦେବତାଙ୍କୁ ନିଯୁକ୍ତି, ପ୍ରଯୁକ୍ତି, ପୁନଃନିଯୁକ୍ତି ଦେଇ ଦେଲାପରେ, ମନୁଷ୍ୟ ହତାଶ, ଭକୁଆ ସାଜି ବେକାର । ତିନିଶହ ପଞ୍ଚଷଠି ଦିନରେ ତିନିଶହ ପଞ୍ଚଷଠି ଶିଳ୍ପ । ଓଜସ୍ୱିନୀ ଭାଷଣ, ସେ ବକ୍ତୃତା ଶୁଣି କେହି ଯ[illegible] ଉଠି ଯାଆନ୍ତି ନାହିଁ । ସେମାନେ ସଭାରେ ଯାହା ଉଦ୍‌ଗାରନ୍ତି, କାମରେ ଠିକ୍ ଓଲଟା । ଦିବାରାତ୍ରି ଆମୋଦ ପ୍ରମୋଦ ଓ ରସକେଳିରେ ଆରମ୍ଭ ହୁଏ ଜନସେବା । ନଥିଚାଷ ହୁଏ ଗୁପ୍ତରେ, ତାହା ପୁଣି ନନ୍ଦନବନରେ ।

ଯଥାକଥା ଚାଲିଥିଲା ଏ ଶାସନ । ହଠାତ୍ ବିଳିବିଳେଇ ଉଠିଲେ ହୁଙ୍କାପିଟା ହୁମ୍କା ଆଉ ଜଣେ ଦେବତା । ଆଗରୁ ଥରେ ପେଞ୍ଚପାଞ୍ଚରୁ ଶାସନ ହାତଛଡ଼ା ହୋଇଯାଇଥିଲା । କିନ୍ତୁ ଏଥର ସଂସ୍କାର ଆଣିବେ କହି ବହୁତ ବଖାଣିଲେ । ହେଲେ କାମରେ ଶୂନ । ପେଟ ବିକଳରେ ଅନେକ ଦିନ ଧରି ଶୁଖିଲା ପଡ଼ିଥିବା ତାଙ୍କର ଚେଲା ଚାମୁଣ୍ଡା ମଉକାଦେଖି ଢେର ରୋଜଗାର କରିନେଲେ ।

ଆପଣ ତ ଜାଣନ୍ତି କିଟି କିଟି ଅନ୍ଧାର ରାତିରେ ଇନ୍ଦ୍ରସଭାରେ ସୋମରସର ବ୍ୟବହାର ହେଉଥିଲା, କିନ୍ତୁ ଏବକୁ ମର୍ତ୍ତ୍ୟରେ ହେରୋଇନ୍, ବ୍ରାଉନସୁଗାର, ଚରସ ଓ ସୋମରସର ପ୍ରଚଳନ । ଦେବତାମାନେ ଯା'ର ବଶବର୍ତ୍ତୀ । ମନୁଷ୍ୟ ଦେଶୀ, ମହୁଲି, ଚାଉଳି, ହାଣ୍ଡିଆ ଖାଇ ଯେମିତି ଥୋଡ଼ାଏ ନର୍କକୁ ଗଲେ, ଦେଖି ଧୈର୍ଯ୍ୟ ଧରିହେଲାନି । କିନ୍ତୁ ଅନେକ ଦେବତାଙ୍କର ଯା'ର ରାଜନୀତିରେ ହାତ ଚିକ୍କଣ ହୋଇଛି ।

ବିଶ୍ୱେଶ୍ୱର ବିଷ୍ଣୁ ମୁରୁକି ହସି ନାରଦଙ୍କୁ ଚାହିଁଲେ, ନାରଦ କହିବା ବନ୍ଦ କରୁ ନ ଥାଆନ୍ତି ।

ସୁଖ ଦୁଃଖର ତାରତମ୍ୟ ଦେବତାମାନେ ଭଲକି ଜାଣିଥିଲେ, ସୁଖ ଦେବା ଆଳରେ ମନୁଷ୍ୟକୁ ଯେତେ ରକମ ଦୁଃଖ ଯନ୍ତ୍ରଣା ଦେଇହେବ, ସେତେ ସୁଖରେ ରହିହେବ ।

ଏ ରହସ୍ୟଭେଦ ଜାଣିବା ଲାଗି ନାରଦ କେତେ ରୂପରେ ରହିଛନ୍ତି ମର୍ତ୍ତ୍ୟରେ ।

ନାରଦ ସୂକ୍ଷ୍ମ ରହସ୍ୟ ଭିତରକୁ ଯାଇଛନ୍ତି ଜାଣି ବିଷ୍ଣୁ ଉଲ୍ଲସିତ ହେଲାବେଳକୁ ନାରଦ ଆଉ ଏକ ଗୂଢ଼ତତ୍ତ୍ୱ ଆଡ଼ିକି ମାଡ଼ିଗଲେ ।

ପ୍ରେମ ସଦା ସ୍ୱର୍ଗୀୟ—ତାର ନାନା ଧର୍ମ ଓ ଗୁଣ । ରାଧାକୃଷ୍ଣ ପ୍ରେମ, ରୋମିଓ-ଜୁଲିଏଟ ପ୍ରେମ, ଲଇଲା-ମଜନୁ ପ୍ରେମ, ନାଗନାଗୁଣୀ ପ୍ରେମ... ହେଲେ ଅଧୁନା ହାଟରେ ପ୍ରେମ, ନଦୀକୂଳରେ ପ୍ରେମ, ଉଦ୍ୟାନରେ ପ୍ରେମ, ବାଟ ଘାଟରେ ପ୍ରେମ ଇତ୍ୟାଦି ଇତ୍ୟାଦି । ଇନ୍ଦ୍ରଙ୍କ ସଭାରେ ରମ୍ଭା, ମେନକା, ଉର୍ବଶୀ ନୃତ୍ୟ କରୁ କରୁ ବେଳେବେଳେ ତ୍ରିଦଶ ନିଶାସକ୍ତ ଦେବତା ବିମୋହିତ ହୋଇଯିବା ଶୁଣା ଅଛି । ଯେହେତୁ ମର୍ତ୍ତ୍ୟରେ ଜରା ତ୍ରିଦଶ ସଙ୍ଗେ ମିଶିଯାଇଛି, କନ୍ଦର୍ପ କାମଦେବ ମଦନଙ୍କ କରାମତି ବଢ଼ିଯାଇଛି । ବୟସ ନିର୍ବିବାଦରେ ଶ୍ୱାନ ସଉକ ଦେଖି ନାରଦ ଏକବାର ତାଜୁବ୍ ।

ଅନାର୍ଯ୍ୟ ଭୂମିର ରାଷ୍ଟ୍ରମୁଖ୍ୟ ଭବନ, ଆର୍ଯ୍ୟଭୂମିର ମନ୍ତ୍ରୀ ଦପ୍ତର ବଙ୍ଗଳା, ସଚିବାଳୟ, ଓକିଲ କୋଠି, ଅଫିସ୍‌ରେ ଖାଲି ଲୀଳା ଖେଳା ।

'ହୁଁ'ଟିଏ ମାରି ଉଠିପଡ଼ିଲେ ବିଷ୍ଣୁ ।

ନାରଦ ବଡ଼ ପାଟିରେ କହିଲେ, ପ୍ରତିକାର ଦରକାର, ପ୍ରତିକାର...

ଆଚ୍ଛା ଦେବର୍ଷି ନାରଦ ! କଥାର ମୋଡ଼ ବଦଳେଇ ବିଷ୍ଣୁ ପଚାରିଦେଲେ, ତମେ ଆର୍ଯ୍ୟାବର୍ତ୍ତରେ କେତେଦିନ କଟେଇଲ ?

ହଠାତ୍ କାନ ପାଖକୁ ହାତ ଚାଲିଗଲା, ପଛପଟର କେଶର ଝଟକୁ ସାଉଁଳୁ ସାଉଁଳୁ ବିନୟାବନତ କଣ୍ଠରେ ନାରଦ କହିଲେ ।

ଆର୍ଯ୍ୟାବର୍ତ୍ତର ମୋହ-ମାୟା କାଟିହେଲା ନାହିଁ । ରାଜଧାନୀରେ ଟିକେ ବେଶୀ ଦିନ ରହିଗଲି । ସବୁ ଉପଖଣ୍ଡର ଗୋଟେ ଗୋଟେ ଭବନ ହୋଇଛି । ମୋରି ଭଳି ଦାଢ଼ି, ନିଶ-ଜଟାଧାରୀ, ଗେରୁଆ ପିନ୍ଧି କୁଆଡୁ ଗୋଟେ ବାଆଜୀ ହରରୋଜ ନୂଆ ନୂଆ ଲଳନା ଆଣି କି ଲୀଳା ସେଠି କରିଥିଲା ଯେ ମତେ ଦେଖି ଖାଲି ମାରି ଗୋଡ଼େଇଲେ । ତଥାପି ଲୁଚିଛପି ଯେତିକି ଦେଖିଛି, ସେଠି ଦିନରାତି ଜଣାପଡ଼େନା——ଲୀଳା-ଖେଳା, ଖିଆ-ପିଆ, ମଉଜ-ମଜିଲିସ୍, ଭୋଜିଭାତ । ଜାଣିଲି ଏଇଥିପାଇଁ ଏ ଭବନଗୁଡ଼ା ଗଢ଼ା ହେଇଛି...

କଥା ମଝିରେ ପଶିଗଲେ ବିଷ୍ଣୁ ।

ତମେ ବୋଧହୁଏ ଦେବଲୋକରୁ ଯାଇ ପ୍ରଥମେ ଓହ୍ଲେଇ ପଡ଼ିଲ ଆର୍ଯ୍ୟଭୂମିରେ ?

ହଁ, ଆଜ୍ଞା ! ସେଇଠୁ ଯାତ୍ରାର ଶୁଭାରମ୍ଭ । ଫେରିଲାବେଳେ ଭାବୁଥିଲି ସେଇବାଟେ ଆସିବି ବୋଲି... ହେଲେ, ସେ ବାଟେ ଫେରିବା ମୁସ୍କିଲ ।

କାହିଁକି ?

ଡିସୁମ୍ ଡାସୁମ୍, ଡୋ... ଡା, ଆଖିବୁଜା ଅଣଅନ୍ଦାଜିଆ ଅନ୍ଧାରିଆ ଗୁଳିମାଡ଼ । କାଳେ ବାଜିଯିବ... ମତେ ଭାରି... ।

ଭଲ କଲ, ଭଲ କଲ ବିଷ୍ଣୁଙ୍କର ଦିବ୍ୟଚକ୍ଷୁ ବିସ୍ଫୋରିତ ହୋଇଗଲା ।

ହିମବନ୍ତକୁ ଚେଷ୍ଟାକରି ବି ଡେଇଁ ହେଲା ନାହିଁ । ଯାହାହେଉ ଫେରିବାକୁ କିଛି ଦିନ ଅଛି, ଆର୍ଯ୍ୟଭୂମିର ରାଷ୍ଟ୍ରମୁଖ୍ୟ ଅନାର୍ଯ୍ୟଭୂମିକୁ ପରିଭ୍ରମଣରେ ଆସିଥିଲେ, ତାଙ୍କ ସହ ସାକ୍ଷାତ ହୋଇଥିଲା——ଆପଣଙ୍କ ପ୍ରଦତ୍ତ କଷଟି ପଥର, ଯେମିତି ତାଙ୍କ ଦେହରେ ମୋ ଅଙ୍ଗୁଠି ମାଧମରେ ଲାଗିଯାଇଛି, ଜାଣିନେଲି ସେ ଦେବତା ନୁହେଁ, ଖୋଦ୍ ମନୁଷ୍ୟ । ବଡ଼ କଷ୍ଟରେ ସେ ଏଇ ପଦବୀ ପାଇଛନ୍ତି । ମର୍ତ୍ତ୍ୟର ଦେବତାମାନେ ବି ତାଙ୍କୁ ତାଙ୍କ ଗ୍ରୁପ୍‌ର ବୋଲି ଭାବି ନେଇଛନ୍ତି । ବେଳେ ବେଳେ ଗଡ଼ ଗଡ଼େଇ ଦେଉଛନ୍ତି, ପେଞ୍ଚ ପାଞ୍ଚ କରୁଛନ୍ତି । ବେଳେବେଳେ କ୍ଷମତା ଲଢ଼େଇରେ ଅପାରଗ, ଅପଦାର୍ଥ କହୁଛନ୍ତି । ତଥାପି ତାଙ୍କର ଧୈର୍ଯ୍ୟ ରହିଛି । ହେଇଟି, ମୁଁ କଥା ନଅସରେ ଭୁଲିଗଲିଣି, ସେ ମହାଶୟ ମୋ ହାତରେ ଚିଟାଉଟିଏ ଦେଇଛନ୍ତି ।

ନାରଦ ପେଡ଼ି ଭିତରୁ ଖୋଜାଖୋଜି କରି ବାହାର କଲେ ସେଇଚିଠି ।

ବିଷ୍ଣୁ ତରବରରେ ଢଉମୁଦ ଖୋଳକୁ ଚିରି ପଢ଼ିଲେ :

''ଆପଣଙ୍କ ଆଶୀର୍ବାଦରୁ ପଦବୀ ମିଳିଛି ସତ, କିନ୍ତୁ ଏ ଆସନ ଅନେକ ଦିନରୁ କଳଙ୍କିତ । ଭୋଗ-ବିଳାସ, ସମ୍ଭୋଗ, ଐଶ୍ୱର୍ଯ୍ୟ ଓ ସର୍ବୋପରି ସ୍ୱାର୍ଥ ଦେବତାଙ୍କୁ ପାଗଳ କରିଛି । ମନୁଷ୍ୟର ସାରଲ୍ୟ, ମହନୀୟ ତ୍ୟାଗ, ଆଦର୍ଶ,ଦୟା, କରୁଣା ଦେବତାର ଐନ୍ଦ୍ରଜାଲରେ ବନ୍ଦୀ ଆଉ ଶ୍ୱାସରୁଦ୍ଧ । ମଣିଷର ଆଶା ଅଭୀପ୍ସା ପ୍ରତି ମୁହୂର୍ତ୍ତରେ ଖଣ୍ଡ ଖଣ୍ଡ ହେଇ ଭାଙ୍ଗିପଡୁଛି । ନିସ୍ପୃହ ହେଇଯାଉଛି ମଣିଷର ବଞ୍ଚିବାର ମୋହ ଟିକକ, ସତେଯେପରି ଦେବତାର ଅକ୍ଟୋପାସର କବଳରୁ ଆଉ ବର୍ତ୍ତି ହେବନି । ତଥାପି... ତଥାପି ଏ ଅବକ୍ଷୟ ଆମେ ରୋକିବୁ । ଆପଣ ଏ ମର୍ତ୍ତ୍ୟଲୋକରୁ ଦେବତାମାନଙ୍କୁ ତୁରନ୍ତ ଫେରେଇ ନିଅନ୍ତୁ । ଦେବସଭା ପୁନଃସଂସ୍ଥାପିତ କରନ୍ତୁ କିମ୍ବା ସେମାନଙ୍କୁ ଅନ୍ୟ ଗ୍ରହ ଗ୍ରହାନ୍ତରକୁ ନିଅନ୍ତୁ, ଆମର କିଛି କହିବାର ନାହିଁ କି ଆମର ମଧ୍ୟ ଆଉ ଦେବତା ପଦୋନ୍ନତି ପାଇବାକୁ ଲାଳସା ନାହିଁ । ଆମେ ଆମ ଭୂମିକୁ ସମ୍ଭାଳି ନେବାକୁ ଆମର ଯଥେଷ୍ଟ ଶକ୍ତି ରହିଛି । ସେମାନଙ୍କୁ ଯଦି ଫେରାଇ ନ ନିଅନ୍ତି ପରିଣତି ଯାହାହେବ, ଆପଣ ହିଁ ଦାୟୀ ରହିବେ । ସମଗ୍ର ସୌରମଣ୍ଡଳର ଜୀବସତ୍ତାକୁ ଆମେ ଚାହିଁଲେ ଲୋପ କରିଦେବୁ । ଅଣୁ-ପରମାଣୁ ଶକ୍ତି ବଳରେ ପ୍ଳାଜମାରେ ପରିଣତ କରିଦେବୁ । ଆମେ ଶକ୍ତିଶାଳୀ... ।''

ଆଉ ପଢ଼ିପାରିଲେ ନାହିଁ, ରାଗରେ ଥରିଗଲେ ବିଷ୍ଣୁ । ହେଲେ, ପରିସ୍ଥିତିକୁ ସେ ଅନୁଭବ କରୁଥିଲେ ।

ଇଏ ତ ଚିଠି ନୁହେଁ, ଚରମ ପତ୍ର । ଚାହିଁଲେ ବିଷ୍ଣୁ ।

ବିଷ୍ଣୁଙ୍କ ନୀରବ ଭାଷା ବୁଝିପାରୁଥିଲେ ନାରଦ ।

ଅଳ୍ପ କେଇଟି ମୁହୂର୍ତ୍ତ ମଧ୍ୟରେ ସ୍ୱର୍ଗରେ ଆପାତକାଳୀନ ବୈଠକ ବସିଲା ବ୍ରହ୍ମାଙ୍କ ଅଧ୍ୟକ୍ଷତାରେ । ସବୁକିଛି ବୁଝାଇ ଦେଇଥିଲେ ବିଷ୍ଣୁ । ଅବୁଝା କଥା ପୂରଣ କରି ଚାଲିଥିଲେ ନାରଦ । ସର୍ବସମ୍ମତିକ୍ରମେ ଦେବତାଙ୍କ ଉପରେ ଇମର୍ଜେନ୍‌ସି ଜାରିହେବା ଠିକ୍ କରାଗଲା । ବିଷ୍ଣୁ ଥିଲେ ପ୍ରସ୍ତାବକ । ସମର୍ଥନ କରିଥିଲେ ସମସ୍ତେ । ଇମର୍ଜେନ୍‌ସି ଜାରି କରିବା ଦାୟିତ୍ୱ ଅର୍ପଣ କରାଗଲା ଦେବର୍ଷି ନାରଦଙ୍କ ଉପରେ । କାର୍ଯ୍ୟକାରୀ କରିବା ପାଇଁ ନିର୍ଦ୍ଦେଶ ହେଲା ଚିତ୍ରଗୁପ୍ତଙ୍କୁ ।

ଦେବତାମାନେ ଫେରିବେ, 'ହେଲେ, ମର୍ତ୍ତ୍ୟରୁ ସ୍ୱର୍ଗକୁ ନୁହେଁ, ଅର୍ଦ୍ଧ-ସ୍ୱର୍ଗକୁ, ତ୍ରିଶଙ୍କୁ ଅବସ୍ଥାରେ ରହିବାକୁ ହେବ, ନିଜ ନିଜର ଆଚରଣ ନ ବଦଳେଇବା ଯାଏ ।'

○

# ବିସ୍ମୃତିର ସ୍ୱର

କୋଳାହଳମୟ ସହରର ବ୍ୟସ୍ତ କ୍ଳାନ୍ତକର ପରିବେଶରୁ ଦୂରେଇ ଯାଇ ସେଦିନ ପହଞ୍ଚିଲି ସେଇଠି, ଯେଉଁଠି ଦିଗନ୍ତ ବିସ୍ତାରୀ କେବଳ ନିର୍ଜନତା । ସନ୍ଧ୍ୟା ଠିକ୍ ଅବତୀର୍ଣ୍ଣ । ଦିନଭରି ଯାତ୍ରୀମାନଙ୍କ ଭିଡ଼ରେ ଅବିଶ୍ରାନ୍ତ ବ୍ୟବସାୟୀ ସେମାନଙ୍କ ଅସ୍ଥାୟୀ ଦୋକାନକୁ ମୁଣ୍ଡରେ ମୁଣ୍ଡାଇ ଚାଲିଥାଆନ୍ତି ନିଜର ବାସସ୍ଥଳୀକୁ । ଆଗରୁ ଅନେକ ଥର ଧଉଳି ଆସିଛି । ଏଥର ସ୍ୱେଚ୍ଛାରେ ନୁହେଁ । ବରଂ ଧଉଳି ମତେ ହାତଠାରି ଡାକିଛି । ଧଉଳି ସମ୍ପର୍କରେ କିଛି ଲେଖିବାକୁ ଯାଇ ମୁଁ ସମ୍ପୂର୍ଣ୍ଣ ଆପଣା ଶୈଳୀରେ କହିବାକୁ ଯାଉଛି—ଅନ୍ତରର ସମଗ୍ର ସତ୍ତା ଆଉ ଅନୁଭବ ଭିତରେ ଯାହା ନିଜେ ଭାବୁଛି ଆଉ ଦେଖିଛି ଏଥିରେ ଇତିହାସର ଲେଶମାତ୍ର ବିବରଣୀ ନାହିଁ—ଅଛି ଦେହାନ୍ତର ଏକ ପରିକ୍ରମଣ ଓ ନିଜସ୍ୱ ଅନୁଭୂତି ।

ଚାରିଆଡ଼ ଶାନ୍ତ, ନିଷ୍କପଟ ଓ ନିରୋଳା । ଏଇ ମୁହୂର୍ତ୍ତର ଜାଗରିତ ଅନୁଭବ, ପୂର୍ବରୁ କେବେ ମୋ ମନକୁ ଆସି ନ ଥିଲା । ସୁଯୋଗ ମିଳି ନ ଥିଲା କହିଲେ ଭୁଲ୍ ହେବ । ତରବରିଆ ଭାବରେ ଆସି ଅନେକ ଥର ଧଉଳି ଦେଖିଛି । କିନ୍ତୁ ଏ ଦେଖିବା ଭିତରେ ରହିଛି ଭାବପ୍ରବଣତା, ଆତ୍ମନିରୀକ୍ଷଣ ଏବଂ ଅସ୍ମିତାବିହୀନ ଅନ୍ତର୍ଭାବ ଯାହା ଚିରନ୍ତନ ଆଉ ଅନନ୍ୟ ।

ନିକଟରେ ଅଙ୍କାବଙ୍କା ହୋଇ ଦୟାନଦୀ ବହିଯାଉଛି । ଜୀର୍ଣ୍ଣଶୀର୍ଣ୍ଣ ରୂପେ ଥିବା ପୁରାତନ ଶୈବ-ପୀଠର ଉଚ୍ଚ ଲମ୍ବ ପଥର ଉପରେ ବସି ପଡ଼ିଲି । ସାମ୍ନାରେ ଦୟାର ନୀଳ ଜଳରାଶି । ଧୀର ସ୍ରୋତର ଶବ୍ଦ କାନରେ ବାଜୁଥାଏ । କିନ୍ତୁ ଏ ଶବ୍ଦ ସବୁ ସମୟରେ, ଖରାରେ ଧୂ ଧୂ ଜଳୁଥିବା ସୂର୍ଯ୍ୟକିରଣରେ, ଗଭୀର ରାତ୍ରିର ନିଶାରେ, କି ଷଡ଼ ଋତୁରେ ଶୁଣାଯାଏ ନା—ଶୁଭେ ନିର୍ଦ୍ଦିଷ୍ଟ ସମୟର ତାଳ ନିର୍ଘଣ୍ଟରେ ଦିନ ଆଉ ରାତ୍ରିର ସନ୍ଧିକ୍ଷଣରେ ।

କିଛି ଦିନ ତଳେ ଦୟାବନ୍ଧରେ ବୟସ ଭାରାରେ ନଇଁଯାଇଥିବା ଜଣେ ବୃଦ୍ଧକୁ ଭେଟିଥିଲି । ଦିନାନ୍ତର ସମୟ । ଦୟାର ଢେଉରେ ଖେଳି ଉଠିଲା ଏକ ମର୍ମସ୍ପର୍ଶୀ ଶବ୍ଦତରଙ୍ଗ । ଦୟାନଦୀ ଏମିତି ଗୁମୁରି ଗୁମୁରି ନୀରବରେ ତାର ଅଶ୍ରୁ ଢାଳେ । କେବେ ବି ଦିନେ ତା ସ୍ରୁତ—ଲୁହ ନ ନିଗିଡ଼ି ଶୃଙ୍ଖଳା ପଡ଼ିନି । ତାର ଶବ୍ଦରେ ରହିଛି ଏକ କରୁଣ ରାଗ । ସହଜରେ ଜଣେ ବୁଝିପାରେନା ଗଭୀର ଭାବେ ନୀରିକ୍ଷଣ କଲେ ଯାଇ ଜାଣିବ ତାହା ନନ୍ଦରାଜା ଅଶୋକର ଅସିମୁନରେ ପ୍ରାଣପାତ କରିଥିବା ଲକ୍ଷ ଲକ୍ଷ କଳିଙ୍ଗ ସୈନ୍ୟଙ୍କ ମୃତ୍ୟୁରେ ଶୋକ ଦଗ୍ଧ ପରିବାରଙ୍କ ଦୁଃଖରେ ଅଭିଭୂତ ହୋଇ ଦୟା ପ୍ରକାଶୁଛି ତାର ଅସୁମାରି ସମ୍ବେଦନା । ଏତିକି କହି ଦି' ଟୋପା ତତଲା ଲୁହ ଢାଳିଥିଲା ବୃଦ୍ଧଟି କଳିଙ୍ଗପ୍ରେମୀ ସ୍ୱାଭିମାନରେ !

ଦୟା ତା' ବକ୍ଷରେ ଲୀଳାଖେଳା କରୁଥିବା ପୁତ୍ର ସନ୍ତାନଙ୍କ ନିଷ୍ଠୁର ଆତ୍ମତ୍ୟାଗ ପାଇଁ ଚିରଦିନ ଅଶ୍ରୁପାତ କରିବ ଆଉ ସେ ଅଶ୍ରୁଧାରର କେବେ ଅନ୍ତ ନାହିଁ । ସତେ ଅବା ସ୍ୱୟଂ ଦୟାନଦୀ ସେଦିନ ବୃଦ୍ଧଟି କଣ୍ଠରେ ଅବତୀର୍ଣ୍ଣ ହୋଇଯିବାର ମୁଁ ଲକ୍ଷ କରିଛି ।

ଜହ୍ନ ଉଇଁବା ପୂର୍ବରୁ ସେହି ବୃଦ୍ଧଙ୍କ କଥାକୁ ଚିନ୍ତା କରୁଥିଲି । ଧୀରେ ଝାପ୍‌ସା ଅନ୍ଧାର ଫେଡ଼ି ଚତୁର୍ଦ୍ଦିଗ ରଜତ ଶୁଭ୍ର ଜ୍ୟୋତ୍ସ୍ନା ମେଲି ଦେଲା । ଆଖପାଖରେ କେହି ନାହିଁ । ଝିଙ୍କାରିର ଅବିରାମ ଝିଁ ଝିଁ ଡାକ । ଆଉ ବେଳେ ବେଳେ ପାଖ ଗଛଡାଳରେ ଅଜଣା ପକ୍ଷୀର ଡେଣାଝଡ଼ା ଶବ୍ଦ ।

କେଜାଣି କାହିଁକି ମୋ ମନ ଭିତରେ ତନ୍ମୟତାର ଆବେଗ ଆସି ଯାଉଥାଏ । ଅକସ୍ମାତ୍ ଏକ ନାରୀର କଣ୍ଠସ୍ୱର—ଦୂରରେ ଗାଡ଼ି ରଖିଥିବା ପାର୍କିଂ ପ୍ଲେସ୍‌କୁ ଚାହିଁଲି । କିଛି ତ ନାହିଁ । ଆଗକୁ ଟିକେ ନଜର ଦେଲି ଯେଉଁଠି ଷ୍ଟାର୍ଟ ନ ଦେଇ ମୁଁ ଗାଡ଼ିକୁ ଗଡ଼େଇ ଆଣିଥିଲି । ଦେଖିଲି ଶୁଭ୍ର ସ୍ୱଚ୍ଛ ପରିଧାନରେ ନାରୀଟିଏ ମୋ ଆଡ଼କୁ ମାଡ଼ି ଆସୁଛି । ମନରେ ଟିକିଏ ଭୟ ସଞ୍ଚରି ଗଲା, କିନ୍ତୁ ପ୍ରକୃତିଗତ ସାହସ ଧରି ସେପରି ବସିରହିଲି । ଖୁବ୍ ପାଖାପାଖି ସେ ପହଞ୍ଚିଗଲା, ସୁନ୍ଦର ସୁଗଠିତ ଦେହଲତାର ବଙ୍କିମ ଭଙ୍ଗୀ । ଦୀର୍ଘ ଗ୍ରୀବା ଉପରେ ଦୟାନଦୀର ଢେଉଭଳି ଭାଙ୍ଗିପଡ଼ିଛି ତାର ଉନ୍ମୁକ୍ତ ଭ୍ରମର କୃଷ୍ଣ କୁନ୍ତଳ ରାଶି । କିନ୍ତୁ ଲଲାଟରେ ନ ଥାଏ ସିନ୍ଦୂରର ସଙ୍କେତ କି ହାତରେ ନ ଥାଏ ଚୂଡ଼ି ଶଙ୍ଖାର ନିକ୍ୱଣ ସଦ୍ୟବୈଧବ୍ୟ ବେଦନା ବିଧୂରା ପରି ଜଣାପଡୁ ଥାଏ ।

ମୁଁ ନିର୍ବାକ୍ ପ୍ରାୟ ତାର ଗତିବିଧିକୁ ଲକ୍ଷ୍ୟ କରୁଥାଏ ।

କ'ଣ ମୋତେ ଚିହ୍ନିପାରୁନ ?

ସିଦ୍ଧାର୍ଥ !

ସିଦ୍ଧାର୍ଥ ! ମୁଁ ତୁମର ଚିତ୍ରଲେଖା ।

ତମର କ'ଣ କିଛି ମନେ ପଡୁନି ।

ନାରୀକଣ୍ଠର ଏଇ ଅନୁନୟ ଅଭିବ୍ୟକ୍ତି ମୋ ଅନ୍ତରାତ୍ମାକୁ ଚହଲାଇ ଦେଲା, ହଠାତ୍ ତାର ହାତର ନରମ ସ୍ପର୍ଶ ମତେ ଟାଣିନେଲା କେଉଁ ଅକଳନୀୟ ଅତଳ ଅତୀତକୁ ।

ଉତ୍ତର ଦେଉନ ଯେ ! ମଉନ ରହୁଛ, କିଛି କ'ଣ ତୁମର ମନେପଡୁନି, ଜନ୍ମ ଜନ୍ମାନ୍ତର ପରେ ମଧ୍ୟ ତୁମର ସେଇ ଭାବବିହ୍ୱଳ ସ୍ୱଭାବରେ କିଛି ପରିବର୍ତ୍ତନ ଘଟିନି । କୁହ, କିଛି କୁହ ସିଦ୍ଧାର୍ଥ ! କ୍ରମେ ଚିତ୍ରଲେଖାର ସ୍ୱର ଗମ୍ଭୀର ହୋଇଯାଉଥାଏ ।

ଯନ୍ତ୍ରମାନବ ପରି କହିଲି—ହଁ ହଁ ଚିହ୍ନିଛି ।

ବିବାହ ପରେ ଆମର ଅଷ୍ଟମଙ୍ଗଳା ସରି ନ ଥାଏ । ମଗଧ ରାଜା ଅଶୋକ କଳିଙ୍ଗ ଉପରେ ଆରମ୍ଭ କଲେ କ୍ଷୀପ୍ର ଆକ୍ରମଣ । ଯୁଦ୍ଧକୁ ପ୍ରତିହତ କରିବାକୁ ଯାଇ ପ୍ରଥମେ ତୁମର ଜ୍ୟେଷ୍ଠ ଦୁଇଭାଇ ମଗଧ ସୈନ୍ୟଙ୍କ ହାତରେ ନିହତ ହେଲେ । ପ୍ରତିଶୋଧର ଦାବାନଳରେ ତୁମେ ବି ରଣାଙ୍ଗନରେ ଅବତୀର୍ଣ୍ଣ ହେଲ । ଯୁଦ୍ଧରେ ଜୀବନ ଦେଇ ସାରା ପରିବାରକୁ ନିଃସହାୟତା ଆଡ଼କୁ ଟାଣିନେଲ । ଇଲାକାଟା ଯାକ ନିଶୂନ୍ ନିଃଶବ୍ଦ । ଯୁବକ ଭେଣ୍ଡିଆଟାଏ ଦେଖିବା ସାତସପନ । ପଚାସଢ଼ା ଶବ ଗନ୍ଧରେ ପଶି ହେଉ ନ ଥିଲା ଯେମିତି । ବିଜୟୀ ମଗଧ ସେନାନୀ ଯୂଇ ପ୍ରସ୍ତୁତ କରି କୁଢ଼ କୁଢ଼ ଶବ ଏକାଠି କରି ନିଆଁ ଧରେଇ ଥିଲେ ଏଇ ମୁଣ୍ଡିଆଟା ଉପରେ ।

ଘାଣ୍ଟୁ ପଥର ଖୁଣ୍ଟ ପ୍ରାୟ ମୁଁ ମୂକ ହୋଇ ଯାଉଥିଲି । ମୋର ଶାଶ୍ୱତୀ ନାରୀର ସୃଜନୀ ପିପାସା ରହିଗଲା ଅସମାହିତ । ଏଇ ଦୟା ନଦୀର ଉଚ୍ଛାଣି ଗଭୀର ତୋପରେ ମୁଁ ଆତ୍ମବିସର୍ଜନ କଲି । ସେହିଦିନୁ ଏଇ ଅଶରୀରୀ ଆତ୍ମା ନେଇ ମୁଁ ଯୁଗ ଯୁଗ ଧରି ତୁମକୁ ଅପେକ୍ଷା କରିଆସୁଛି । ଚିତ୍ରାର କଣ୍ଠ ସ୍ୱରରେ ଭିଜା ଭିଜା ଉଦାସ ଭାବ ।

କ୍ରମେ ଅପସୃୟମାଣ ଅତୀତର ଘଟଣାବଳୀ ଶୁଣି କହିଲି—

ତୁମର ତ ମନେ ରହିବାର କଥା । କାରଣ ତୁମେ ଯେ, ଏଇଠି ରହିଗଲ । ଆଉ ମୁଁ ବହୁ ଜନ୍ମ ଘୂରି ଘୂରି ବୁଲୁଛି ।

ତଥାପି ଅସ୍ପଷ୍ଟ ଭାବରେ ଘଟଣା ଡୋରିରେ ନିଶ୍ଚୟ ବାନ୍ଧି ହୋଇଥିଲି ତାହା ନିଃସନ୍ଦେହ । ସର୍ବୋପରି ତୁମକୁ ତ ଚିହ୍ନିଛି । ତମେ ମୋର ସେଇ ଚିତ୍ରା—ଯାହାକୁ ବାପା ଭାଇଙ୍କ ବାରଣ ସତ୍ତ୍ୱେ ଭଲପାଇ ବସି ଏକାମ୍ରକାନନର ଶକ୍ତିପୀଠରେ ଶପଥ ନେଇ ତୁମ ସୀମନ୍ତରେ ସିନ୍ଦୂର ପିନ୍ଧାଇ ଥିଲି । ପରେ ଯାଇ ବୈଦିକ ବିବାହ ହୋଇଥିଲା ଗାଁରେ । ତୁମେ ନୁହେଁ ସେଇ ମୋର ଚିତ୍ରା ? କୁହ... ନୀରବ କାହିଁକି... ?

ହସର ଚଳଚଞ୍ଚଳ ଗତିରେ ମୋ ହାତକୁ ତା ପାପୁଲିରେ ରଖି ମୋତେ ଆଗେଇନେଲା ସେ, ଯେଉଁଠି ଶିଳାଲେଖଗୁଡ଼ିକ ଖୋଦିତ ହୋଇଛି । ଯେଉଁଠି ବୌଦ୍ଧଭିକ୍ଷୁ ଉପଗୁପ୍ତ ଅଶୋକଙ୍କୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରିଥିଲେ ଠିକ୍ ସେଇଠି ।

ଚିତ୍ରା ତାର ଗହମ ଗୋରା ନିରାଭରଣ ହାତରେ ଅଭିଲେଖଟିରେ ଅଙ୍ଗୁଳି ଦେଇ ପଢ଼ିଲା, ତରବାରିର ଜୟ, ଜୟ ନୁହେଁ । ପ୍ରକୃତ ଜୟ ହେଉଛି ହୃଦୟର ଜୟ । କାହିଁକି ହେଲା ତାର ଏ ପରିବର୍ତ୍ତନ ? ଯିଏ ଯୁଦ୍ଧକ୍ଷେତ୍ରରେ ଅସଂଖ୍ୟ ନର

ରକ୍ତରେ ନିଜ 'କର କୃପାଣକୁ ରଞ୍ଜିତ କରିଥିଲା ସେ କଳିଙ୍ଗ ଯୁଦ୍ଧ ଭୂମି ଧଉଳିରେ ବୀଭତ୍ସ ମୃତ୍ୟୁର ବିଭୀଷିକା ଦେଖି କାହିଁକି ବ୍ୟଥିତ ବିଚଳିତ ହୋଇ ଉଠିଥିଲା ? ଏଇ ଯୁଗାନ୍ତକାରୀ ପରିବର୍ତ୍ତନ ପାଇଁ ଯେଉଁମାନଙ୍କର ଆତ୍ମୋତ୍ସର୍ଗ ଓ ବଳିଦାନ, ଧର୍ମାଶୋକରେ ରୂପାନ୍ତରିତ କରିବାରେ ଯେଉଁମାନେ ମୁଖ୍ୟ ଆୟୁଧ ଏବଂ କ୍ଷତିଗ୍ରସ୍ତ; ସେମାନେ ମହୀୟାନ ନା ପରିବର୍ତ୍ତିତ ଅଶୋକ ମହୀୟାନ ? ଜନ୍ମମାଟିର ସ୍ୱାର୍ଥ ପାଇଁ ଯେଉଁମାନେ ନୈବେଦ୍ୟ ପରି ଉତ୍ସର୍ଗ କଲେ ଜୀବନ—ସେମାନଙ୍କୁ ଇତିହାସ କ'ଣ ସମୁଚିତ ସମ୍ମାନ ଦେଇଛି ? କିଏ ତୁମମାନଙ୍କୁ ମନେ ରଖିଛି ସିଦ୍ଧାର୍ଥ ? ଭାବିଲ ଦେଖି... ।

ଅବଶ୍ୟ କଳିଙ୍ଗ ଯୁଦ୍ଧ ଅଶୋକଙ୍କର ଜୀବନର ଶେଷ ଯୁଦ୍ଧ । ରାଜକୀୟ ଆଡ଼ମ୍ବର ତ୍ୟାଗପୂର୍ବକ ଅବଶିଷ୍ଟ ଜୀବନ ନାନା ଜନହିତକର କାର୍ଯ୍ୟ କରି ଜନମାନସରେ ହୋଇଛନ୍ତି ପ୍ରଶଂସାଭାଜନ । ଏ ସମସ୍ତ କିଛି ତୁମମାନଙ୍କର ଜୀବନର ବଳିଦାନ ପାଖରେ କେତେ ଯେ ଗୌଣ, ଥରେ ଚିନ୍ତା କର ତ ସିଦ୍ଧାର୍ଥ !

ଚିତ୍ରଲେଖାର ପ୍ରତିଟି ପ୍ରଶ୍ନରେ ଅତିଟି ଭାବାବେଗ ନିହିତ । ତାର ଆଖି ସଜଳ ହୋଇଉଠିଲା । ମୁକ୍ତାଭଳି କେଇଟି ବିନ୍ଦୁ ତା ଦୁଇ ଗାଲ ଉପରେ ପଡ଼ିଯାଇ ଚନ୍ଦ୍ରାଲୋକରେ ଝଲମଲ କରିଉଠିଲା ।

ମୁଣ୍ଡ ଉପରେ ସେତେବେଳକୁ ପ୍ରଭାତୀ ତାରାଟା ଉଦୟ ହେଉଥାଏ । ଖୁବ୍ ନିବିଡ଼ ଭାବରେ ମୋତେ ଜାବୁଡ଼ି ଧରି ଗୋଟିଏ ନିଷ୍ପ୍ରାଣ ଶୀତଳ ଚୁମ୍ବନ ଆଙ୍କିଦେଇ କହିଲା—ଯଦି କେବେ ତୁମେ ଆଜିର ସ୍ମୃତିକୁ କେଉଁଠି ପ୍ରକାଶ କରିବାକୁ ଚାହଁ, ସିଦ୍ଧାର୍ଥ ! ଗୋଟିଏ ମାତ୍ର ମୋର ଅନୁରୋଧ ରଖିବ ।

କହିବ—ଆମ ଅଧୁରା ଜୀବନର କରୁଣ ମାର୍ମିକ ବିବରଣୀ—ଯେଉଁଥିରେ ଟିକିଏ ନ ଥିବ ଛଳନା, ମିଥ୍ୟାର ସାମାନ୍ୟ ଆଭାସ ।

ଯାଉଛି ବନ୍ଧୁ... ବିଦାୟ !

ଉଦୟମୁଖୀ କଅଁଳ ସୂର୍ଯ୍ୟ କିରଣରେ ମୁଁ ପ୍ରକୃତିସ୍ଥ ହେଲି । ଅଶରୀରୀ ଅତୃପ୍ତ ଆତ୍ମା ସହ ସାରା ରାତି କଟେଇ ଦେଇଥିବାରୁ ମୋ ଦେହ କ୍ଷଣିକ ପାଇଁ ଶୀତେଇ ଉଠିଲା, ଫେରିବା ପାଇଁ ଗାଡ଼ି ଷ୍ଟାର୍ଟ କଲି... ।

○

# ପରାହତ ପ୍ରଜାପତି

ସୁନନ୍ଦାଙ୍କୁ ଖୁବ୍ ବାଧିଲା ।

ଏତେ ବର୍ଷର ବୈବାହିକ ଜୀବନର ଅନେକ ଖୁଟ୍ ଖାଟ୍ ଭିତରେ ଏଇ ଧକ୍କାଟି ସବୁଠୁ ଗୁରୁତର । ସହିବାର ବନ୍ଧବାଡ଼ ଯେମିତି ଭାଙ୍ଗିଗଲା । ଚିନ୍ତାରେ ବିବର୍ଣ୍ଣ, ମଳିନ ଆଉ ବିଷର୍ଣ୍ଣ ତାଙ୍କର ମୁଖମଣ୍ଡଳ । ସୁନାଶିରୀ ଚକ୍‌ଚକ୍ ଦେହ ତାଙ୍କର ଦିନ କେଇଟାରେ ମାଖରା ଶେତା ଦିଶିଲା । ପରିସ୍ଥିତିର ଚାପରେ ସତ୍‌କଥାଟି ଜଣାପଡ଼ିଛି । ଆଗରୁ ଅବା କାହିଁକି ସନ୍ଦେହ କରିଥାଆନ୍ତେ ସେ ।

ଆଜିର ପରିଣତ ବୟସରେ ହୁଏତ ଘଟଣାଟିର ଗୁରୁତ୍ୱ ନ ଥାଇପାରେ । କିନ୍ତୁ ଜୀବନକୁ ନେଇ ଖେଳ ଖେଳିବାର ଭୟଙ୍କର ପରିଣତି କଥା ଚିନ୍ତା କଲାବେଳକୁ ମୁଣ୍ଡ ଘୂରିଗଲା ସୁନନ୍ଦାଙ୍କର ।

ନିଜର ସଂକୀର୍ଣ୍ଣ ସ୍ୱାର୍ଥ ପାଇଁ ଅସମ୍ଭବ ଭାବରେ ସୁନନ୍ଦାଙ୍କୁ ଠକିଛନ୍ତି ସନ୍ଦୀପ । ସୁନନ୍ଦାଙ୍କ ସଫେଦ କାଗଜ ପରି ନରମ ନିର୍ମଳ ହୃଦୟରେ କାଳି ମେଞ୍ଚାଏ କିଏ ହଠାତ୍ ଛିଞ୍ଚାଡ଼ିଦେଲା । ଘୃଣା ଓ ବିରକ୍ତିରେ ସନ୍ଦୀପଙ୍କ ଛାଇ ପଡ଼ିଲେ ସୁନନ୍ଦା ରାଗରେ ଡେଇଁଲେ । ମନ ହେଲେ ଖାଇଲେ, ନ ହେଲେ ବିଛଣାରେ ପଡ଼ି ପଡ଼ି ଗୁମୁରି ଗୁମୁରି ଖାଲି କାନ୍ଦିଲେ । ନିଜକୁ ଧିକ୍କାରିଲେ ଉଦାସରେ, ନୀରବରେ ।

ବନ୍ଧୁ ଶୋଭନର ଛୋଟିଆ ଚିଠିଟି ଏମିତି କାଳ ହେବ, କଥାଟିକୁ ଗଣ୍ଠି ପକେଇଧରି ସୁନନ୍ଦା ଯେ ଅଡ଼ିବସିବେ, ଆଦୌ କିଛି ବୁଝିବେନି; କେମିତି ଜାଣିଥାଆନ୍ତେ ସନ୍ଦୀପ ? ବଡ଼ ଚିନ୍ତାରେ ପଡ଼ିଥିଲେ ସେ । ଯେତେଦିନ ସୁନନ୍ଦା ବଞ୍ଚିଥିଲେ ଖ୍ୟାତନାମା ସାଇକିଅଟ୍ରିଷ୍ଟମାନଙ୍କୁ ଆଣି ଦେଖେଇଥିଲେ । ଫଳ କିଛି ନ ହେବାରୁ ଗୁଣିଗାରେଡ଼ି, ଦିଅଁ ଦେବତାଙ୍କୁ କେତେ ମନାସିଲେ । ତଥାପି ସୁନନ୍ଦାଙ୍କର କିଛି ପରିବର୍ତ୍ତନ ହେଲାନାହିଁ । ବୟସ ଯେଉଁଠି ହାତ ପାପୁଲି ଫାଙ୍କରେ ସରୁବାଲି ଧରିବା ପରି ଖସି ଆସିଲାଣି, ସେଠି ସୁନେଲି ସ୍ୱପ୍ନ ଦେଖିବାକୁ ହାତମୁଠାରେ ରାତି ତ ନାହିଁ, ଅବଶିଷ୍ଟ ଦିନ ପାଇଁ ଜୀବନକୁ ଅଧିକ ଦୁର୍ବିସହ କରିଦେଇ କ'ଣ ଲାଭ ପାଇଲେ ସୁନନ୍ଦା ? ୟାର ଉତ୍ତର ଶୁଣିବାକୁ ଶତ ଚେଷ୍ଟା କରି ମଧ୍ୟ ସନ୍ଦୀପ, ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ ସୁନନ୍ଦାଙ୍କ ମୁହଁରୁ ପଦେକଥା ଶୁଣିଲେ ନାହିଁ । ଉଡ଼ିଯିବା ପାଣି, କହିଦେବା କଥା ଆଉ ଫେରେନା । ଅବଶ୍ୟ ମିଛର ସୁଯୋଗ ନେଇ ନ ଥିଲେ ସୁନନ୍ଦା ତାଙ୍କର ହାତଛଡ଼ା ହୋଇଯାଇଥାଆନ୍ତେ । ହଁ, ତମେ ମୋର, ସନ୍ଦୀପ ଆଉ ସୁନନ୍ଦା ଏକ, ଅଭିନ୍ନ, ପତି ପତ୍ନୀ, ସବୁଦିନ ତମେ ମୋର ହେଇଥିଲ, ତେବେ ତୁମକୁ ପାଇବାରେ ମୋର ଭୁଲ କୋଉଠି ରହିଲା ? ଯଦିବା ଗୋଟିଏ ମିଛ ପାଇଁ ମୁଁ ତୁମକୁ ପାଇବାକୁ

ସକ୍ଷମ ହେଲି, ତାର କ'ଣ କ୍ଷମା ନ ଥିଲା ? ତମେ ପରା ନାରୀ, ସର୍ବଂସହା, ସହିଷ୍ଣୁତା ତମର ଧର୍ମ, ଯାହାକୁ ଅଦ୍ୱିତୀୟ, ଅତି ଏକାନ୍ତ କହି ଏତେ ନିବିଡ଼ ଭାବରେ ଭଲ ପାଉଥିଲ, ସବୁକିଛି ସମର୍ପି ଦେଇଥିଲ, ତା' ପାଇଁ ଥରେ ପଛକୁ ଚାହିଁଦେବାରେ, ଥରଟିଏ କେବଳ କ୍ଷମା କରିଦେବାରେ କ୍ଷତି କ'ଣ ହୋଇଥାନ୍ତା, ବରଂ ବଞ୍ଚିଥିବା ଯାଏଁ ସରଳ ସାବଲୀଳ ଭାବରେ ହସ ଖୁସିରେ ଗଡ଼ି ଯାଇଥାଆନ୍ତା ଆମର ଜୀବନ । ସତରେ କ'ଣ କଲ, ତମେ ?

ସନ୍ଦୀପଙ୍କ ମନ ମୁକୁରରେ ବାରମ୍ବାର ପ୍ରତିଫଳିତ ହେଉଥିଲା ଏ ସମସ୍ତ ପ୍ରଶ୍ନଗୁଡ଼ିକ । ସାମ୍ନାରେ ରଡ଼ ନିଆଁରେ ସୁନନ୍ଦାଙ୍କ ନିର୍ଜୀବ ମରଶରୀର ହୁତ୍ ହୁତ୍ ହୋଇ ଜଳୁଥାଏ । ଜୋର୍‌ରେ ଉଠି ଚାଲିଛି ଧୂଆଁ ଧାସ । ଧୂଆଁଳିଆ ଆକାଶଛୁଆଁ କୁଣ୍ଡଳୀରେ ମଝିରେ ମଝିରେ ଦମ୍‌କା ଶୀତୁଆ ପବନ, ଜଳି ଚାଲିଛି ପ୍ରାଣ ପ୍ରତିମା ତାଙ୍କର ।

ପାଠ ଆରମ୍ଭରୁ ଶେଷ ସ୍ନାତକୋତ୍ତର ପର୍ଯ୍ୟନ୍ତ ଶୋଭନ ଥିଲେ ସନ୍ଦୀପଙ୍କର କ୍ଲାସ୍‌ମେଟ୍ । ଦାରିଦ୍ର୍ୟର କଷାଘାତରେ ମଝିରୁ ପାଠ ଛାଡ଼ିଦେବାକୁ ବସିଲାବେଳେ ସନ୍ଦୀପଙ୍କ ଆର୍ଥିକ ସହଯୋଗ ବନ୍ଧୁ ଶୋଭନକୁ ଜଣେ କୃତିଛାତ୍ର ଏବଂ ପରବର୍ତ୍ତୀ ଅବସ୍ଥାରେ ଜଣେ ଅଧ୍ୟାପକ ଭାବରେ ଗଢ଼ି ତୋଳିବାରେ ଯେଉଁ ଅବଦାନ ରହିଛି ସନ୍ଦୀପଙ୍କର, ତା'ର ଋଣ ପରିଶୋଧ କରିବାରେ ଶୋଭନ ଯେ ଅକ୍ଷମ ତାହା ମନ ଖୋଲି ସେ ସ୍ୱଷ୍ଟ ଭାବରେ ଅନେକ ଥର କହିଛନ୍ତି । ଯେ କୌଣସି ତ୍ୟାଗ, ଶ୍ରମ ଏପରିକି ନିଜ ଜୀବନ ବିନିମୟରେ ସନ୍ଦୀପଙ୍କୁ ସେ ଅନ୍ତର ଦେଇ ଆଦର କରନ୍ତି ।

ସୁନନ୍ଦା ଇଣ୍ଟରମିଡ଼ିଏଟ୍‌ର ଛାତ୍ରୀ ଥିବାବେଳେ ସନ୍ଦୀପ ଆଉ ଶୋଭନ ସ୍ନାତକୋତ୍ତରର ଛାତ୍ର । ସେତେବେଳକୁ କଲେଜର ଲିଟେରାରୀ ଚମ୍ପିଆନ ଭାବରେ ନାଁ କମେଇଲେଣି ସନ୍ଦୀପ । କଲେଜ କୁଇନ୍ ଥିଲେ ସୁନନ୍ଦା ।

ନୃତ୍ୟନିପୁଣା, କଲେଜ ନାଟକର ଅପ୍ରତିଦ୍ୱନ୍ଦ୍ୱୀ ନାୟିକା, ସରକାରୀ କଲେଜରେ ନିଯୁକ୍ତି ମିଳିବା ପରେ ଅଧ୍ୟାପକ ଶୋଭନ ପାଇଁ ସୁନନ୍ଦାଙ୍କର ବିବାହ ପ୍ରସ୍ତାବ ପଡ଼ିଥିଲା । କିନ୍ତୁ ଏ ପ୍ରସ୍ତାବ ଫଳବତୀ ହେବା ପୂର୍ବରୁ ରୋକ୍‌ଠୋକ୍ ଭାବରେ ଅଧ୍ୟାପକ ଶୋଭନଙ୍କୁ ବାହା ହେବେ ନାହିଁ ବୋଲି ସୁନନ୍ଦା ତାଙ୍କ ଘରେ ମନା କରିଦେଲେ । ଯଦିଓ କାରଣ ଥିଲା ସମ୍ପୂର୍ଣ୍ଣ ବ୍ୟକ୍ତିଗତ ଓ ଗୋପନୀୟ, ତଥାପି ଶୋଭନଙ୍କର ସୁନନ୍ଦାଙ୍କୁ ପାଇବାର ଅନୁରକ୍ତି, ପ୍ରବଳ ଇଚ୍ଛା ହିଁ କାରଣ ସମ୍ପର୍କିତ ରହସ୍ୟ ପଦାକୁ ଆଣିବାରେ ସମର୍ଥ ହେଲା । ସୁନନ୍ଦାଙ୍କ ବାପା ଝିଅର ମତାମତ ବିରୁଦ୍ଧରେ ଯାଇପାରିବେ ନାହିଁ ବୋଲି ଜଣେଇ ଦେଇଥିଲେ ଶୋଭନଙ୍କୁ । ସୁନନ୍ଦା ଜଣେ ସ୍ୱାଧୀନଚେତା, ସ୍ୱାଭିମାନୀ ଝିଅ, ତାର ରୁଚି ଭିନ୍ନ । ତାର ଗଭୀର ଅନୁରାଗ ରହିଛି ସୃଜନଶୀଳ ସାହିତ୍ୟ ପ୍ରତି । ସାହିତ୍ୟକଳା ହିଁ ଜୀବନର ସର୍ବଶ୍ରେଷ୍ଠ ଅନବଦ୍ୟ ସୃଷ୍ଟି । ତାହା ସୃଜନଶୀଳତାର ଅମୂଲ ମୂଳ ସମ୍ପତ୍ତି ଏବଂ କାଳଜୟୀ କୃତି । ତେଣୁ ସେ ବିବାହ କଲେ ନିଛକ

ସାହିତ୍ୟିକଟିକୁ ବାହା ହେବେ । ବାପାଙ୍କ ପ୍ରତିବାଦର ଉତ୍ତର ଦେବାକୁ ଯାଇ ସୁନନ୍ଦା ଲାଜ ନକରି କହି ପକେଇଥିଲେ, ଟଙ୍କା ଦେଇ ସବୁ କରିହେବ କିନ୍ତୁ ସାହିତ୍ୟିକଟିଏ ? ନା ଅଧ୍ୟାପକ, ଡାକ୍ତର, ଆଇ.ଏ.ଏସ୍.ଠୁଁ ତା' ପାଇଁ ଜଣେ ସାହିତ୍ୟିକ କବି ହିଁ ବଡ଼ ।

କ୍ଷଣକେ ଶୋଭନଙ୍କର ସୁନନ୍ଦାଙ୍କୁ ପାଇବାର ଅଭିଳାଷର କଂକ୍ରିଟ କାନ୍ଥ ଅଚାନକ ଭୂସ୍ଖଳନରେ ଭୁଷୁଡ଼ି ପଡ଼ିଲା । ନିଜ ତରଫରୁ ଆଗତ କଲେ ପ୍ରସ୍ତାବ ସନ୍ଦୀପଙ୍କର । ସୁନନ୍ଦାଙ୍କର ବିବାହ ହେଲା ସାହିତ୍ୟିକ ସନ୍ଦୀପଙ୍କ ସହ । ବିବାହିତା ସୁନନ୍ଦା ନିଜର ସୁନ୍ଦରପଣକୁ ସମର୍ପି ସାଇତାଥିବା ସନ୍ଦୀପଙ୍କ ପୁରୁଣା ପାଣ୍ଡୁଲିପିକୁ ପଢ଼ି ଚାଲିଛନ୍ତି । ଗ୍ରୀଷ୍ମଛୁଟି ହୋଇଥାଏ । ସନ୍ଦୀପ ନିଜେ ଯାଇ ଶୋଭନଙ୍କୁ ନେଇଆସିଲେ ଚାରି ପାଞ୍ଚ ଦିନର ଅତିଥି ହୋଇ ମଜାରେ ସମୟ କଟେଇ ନେବାକୁ ।

ବନ୍ଧୁପତ୍ନୀ ସୁନନ୍ଦାଙ୍କର ଆତିଥ୍ୟ ଓ ଚର୍ଚ୍ଚା ଦେଖି ଶୋଭନ ଅଭିଭୂତ ହୋଇଛନ୍ତି । ସନ୍ଦୀପଙ୍କର ସ୍ୱାଧୀନ ଭାବରେ ପରିଚାଳିତ ବିଲଡ଼ର୍ସ ବିଜିନେସ୍ ସହ ସାହିତ୍ୟିକ ଜୀବନକୁ ସମତୁଳନ କରି ପତ୍ନୀ ରୂପେ ଯେଉଁ ଦାୟିତ୍ୱର ଆବଶ୍ୟକତା ରହିଛି ତାହା ଗୋଟିଗୋଟି ହେଇ ସୁନନ୍ଦାଙ୍କ ନିକଟରେ ରହିଛି । ପ୍ରକୃତରେ ସନ୍ଦୀପ ଭାଗ୍ୟବାନ । କଥାରେ ଅଛି, ସୁନା ଥିଲେ କାନ ନଥାଏ, ଆଉ କାନ ଥିଲେ ଚେନାଏ ସୁନା ନଥାଏ । କିନ୍ତୁ ଏଇଠି ବ୍ୟତିକ୍ରମ ହେଇଚି । ଆଖି ଆଗରେ ସନ୍ଦୀପର ଦାମ୍ପତ୍ୟ ଜୀବନକୁ ଦେଖି ସେ ଆନନ୍ଦିତ ।

ସୁନନ୍ଦା ତାଙ୍କର ନିଜର ପରିକଳ୍ପନା ପ୍ରସ୍ତୁତ ନବନିର୍ମିତ କୋଠାଟିର କୋଠରୀଗୁଡ଼ିକୁ ଶୋଭନଙ୍କୁ ବୁଲେଇ ଦେଖେଇଛନ୍ତି । ଡ୍ରଇଂ, ଡାଇନିଂ, କିଚିନ୍, ଲାଇବ୍ରେରୀ, ରାଇଟିଂ ଓ ବେଡ଼ରୁମ୍, ଉପର ଟେରାସ୍‌ର ସାଜସଜ୍ଜା ଜଣେ ନିପୁଣା ଗୃହିଣୀର ହାତର କରିସ୍ମା ନ ଦେଖିଲେ ଜାଣିହେବନି । ରେଫରେନସ୍ ବହିର କ୍ୟାଟଲଗ୍, ପୁରୁଣା ପାଣ୍ଡୁଲିପିଗୁଡ଼ିକର ସୁନନ୍ଦାଙ୍କ ନିଜ ହାତର ବନ୍ଧେଇ, ବିଷୟ ନିର୍ବାଚିତ କ୍ରମାନ୍ୱୟରେ ଆଲମିରାରେ ପୁସ୍ତକ ସଜେଇ, ଦେଶର ନାମୀ ବୁକ୍ ଫେୟାରକୁ ଯାଇ ବୁଲି ବୁଲି ବାଛି ବାଛି ବହିସବୁ କିଣିବାର ଦକ୍ଷତା ମଧ୍ୟ କମ୍ ନୁହେଁ ସୁନନ୍ଦାଙ୍କର । ସତେଯେପରି ସନ୍ଦୀପର ସମସ୍ତ ସୃଜନଶୀଳତାର ଅଧିକ ଉନ୍ମେଷ ଘଟିଛି ପତ୍ନୀ ସୁନନ୍ଦାଙ୍କର ପ୍ରତିଟି କର୍ମ ତତ୍ପରତାର ନିବିଡ଼ ସ୍ପର୍ଶରେ । ସୁନନ୍ଦାଙ୍କ ନିଷ୍ଠା, ଭଲପାଇବା, ଯତ୍ନ ସବୁକିଛି ସନ୍ଦୀପଙ୍କ ପାଇଁ ନିହାତି ଆବଶ୍ୟକ । କଥାଛଳରେ ସୁନନ୍ଦା କହି ଦେଇଥିଲେ, "ତାଙ୍କ ଗଳ୍ପ, କବିତା, ଉପନ୍ୟାସ ମୋ ମଥାର ସିନ୍ଦୂର ପରି । ମୋ ଶିଳ୍ପୀ ନର୍ତ୍ତକୀ ଜୀବନର ପ୍ରତିଟି ମୁହୂର୍ତ୍ତ ସ୍ପର୍ଶ ଆପ୍ତ ଆଲେଖ୍ୟ ସେଥିରେ ନିହିତ । ତାଙ୍କର ସାର୍ଥକତାରେ ମୋର ସାଫଲ୍ୟ, ହେଲେ ମୁଁ କିଛି ନ ହେଇପାରିଲେ ବି... ।" ଅସମ୍ପୂର୍ଣ୍ଣ ବାକ୍ୟକୁ ହସି ହସି ପୂରଣ କରିଦେଇଥିଲେ ଶୋଭନ, "ଜୟଦେବଙ୍କ ପତ୍ନୀ

ପଦ୍ମାବତୀ ସାଜି ନିଶ୍ଚିତ ଦିନେ ନା ଦିନେ ଇତିହାସ ପୃଷ୍ଠା ମଣ୍ଡନ କରିବେ କବି ସନ୍ଦୀପଙ୍କ ପତ୍ନୀ ସୁନନ୍ଦା ।''

ହସ ଲହରୀ ଭିତରେ ସନ୍ଦୀପ ମଧ ଉତ୍ତର କରିଥିଲେ; ''ହଁ, ଆଉ କାହିଁକି ଭୁଲିଯାଉଛ, ଜୟଦେବଙ୍କ ବନ୍ଧୁ ପରାଶର ପରି ସତୀର୍ଥ ଶୋଭନ ଯେ ସର୍ବାଗ୍ରେ ହେବେ ଅଧିକ ସ୍ମରଣୀୟ ।''

କାଚ୍ଛ ଆଲମିରାରେ ଝଲମଲ ସୁନ୍ଦର ଦାମୀ ପ୍ରଚ୍ଛଦରେ ଝଲସି ଉଠୁଥିଲା ଏ ଅବଧି ସନ୍ଦୀପଙ୍କ ରଚିତ ଦଶଖଣ୍ଡି ପୁସ୍ତକର ସୁରକ୍ଷିତ ସାମ୍ନାପଟ । ସେଥିରୁ ସାତଟି ବନ୍ଧୁ ଅଧ୍ୟାପକ ଶୋଭନଙ୍କୁ ଉତ୍ସର୍ଗୀକୃତ ଏବଂ ତିନି ଖଣ୍ଡ ଆଦରଣୀୟା ପତ୍ନୀ ସୁନନ୍ଦାଙ୍କୁ ସମର୍ପିତ । ଅଧିକାଂଶ ବହି ପୁରସ୍କୃତ । ଘରଟିର କୋଣ ଅନୁକୋଣରେ ସୁରକ୍ଷିତ ଅନେକ ପ୍ରଶସ୍ତିପତ୍ର । ସାରା ପରିବେଶ ପରିମଣ୍ଡଳରେ ବିରାଜମାନ କରିଛି ଶୁଦ୍ଧ ସାହିତ୍ୟର ବାତାବରଣ । ଝଙ୍କଡ଼େଶ୍ୱରୀ ପୁରସ୍କାର ପାଇବା ବେଳେ ଏଇ ଶୋଭନ ଥିଲେ ସମ୍ବର୍ଦ୍ଧନା ସଭାର ମୁଖ୍ୟ କାର୍ଯ୍ୟକର୍ତ୍ତା । ରତ୍ନମାଳି ପୁରସ୍କାର ଗ୍ରହଣ ବେଳେ ସେ ଥିଲେ ସଭାର ସଭାପତି । ବନ୍ଧୁ ସନ୍ଦୀପର ସ୍ନେହ ଆନ୍ତରିକତାଠୁଁ ସୁନନ୍ଦାଙ୍କ ଆତିଥ୍ୟ କୌଣସି ଗୁଣରେ ନ୍ୟୂନ ନଥିଲା ।

ସୁନନ୍ଦାଙ୍କ ଖୋଲାଖୋଲି ସ୍ପଷ୍ଟବାଦିତା, ନିଚ୍ଛକ ମଣିପପଣିଆକୁ ପ୍ରକୃତରେ ତାରିଫ କରିବା କଥା । ସେ କାହିଁକି ବିବାହ କରୁ ନାହାନ୍ତି ? ଘରସଂସାର ପ୍ରତି କ'ଣ ମୋହ ନାହିଁ ? ଭଲ ପାତ୍ରୀଟିଏ ଯୋଗାଡ଼ କରିଦେବେ କି ? ଅନେକ ପ୍ରଶ୍ନ, ପଚାରୁଥିଲେ ସୁନନ୍ଦା ଶୋଭନଙ୍କୁ । ହେଲେ ଏଡ଼େଇ ଯାଉଥିଲେ ଶୋଭନ ।

ସୁନନ୍ଦାଙ୍କୁ କେତେବେଳେ କେମିତି ମନ ହେଲେ ଦେଖିନେବାକୁ ସନ୍ଦୀପଙ୍କୁ ସାକ୍ଷାତ କରିବା ବାହାନାରେ ଶୋଭନ ଆସନ୍ତି ସେମାନଙ୍କ ଘର ଆଡ଼େ । ଦେହର ଦାହଠାରୁ ହୃଦୟର ସ୍ପନ୍ଦନ ଆବେଗ ଅଧିକ ଚିରନ୍ତନ । ସୁନନ୍ଦାଙ୍କୁ ସାକ୍ଷାତ କରିବାର ଯେଉଁ ଆନନ୍ଦ ଓ ମନର ଶିହରଣ ଆଉ ଅତୀତର ସେଇ ତାଙ୍କୁ ପାଇବାର ସ୍ୱପ୍ନ, ବିବାହ ପ୍ରସ୍ତାବ ଓ ଭାଙ୍ଗିଯିବାର ଦିନଗୁଡ଼ିକର ସ୍ମୃତି ବୋଧହୁଏ ବିରହୀ ପ୍ରେମିକ ଛଡ଼ା ଅନ୍ୟ କେହି ଉପଲବ୍ଧି କରିବା କଷ୍ଟକର ।

ସନ୍ଦୀପଙ୍କ ସାହିତ୍ୟିକ ଜୀବନର ଖ୍ୟାତି ପ୍ରତିଷ୍ଠା ବଳରେ ଶୋଭନଙ୍କ ବଦଳି ତିନି ଥର ବାତିଲ ହୋଇଛି । ଚତୁର୍ଥ ଥର ବଦଳି ହେଇଛି ବଲାଙ୍ଗିରକୁ । କାହାକୁ କିଛି ନକହି ରିଲିଭରର ଆସିବାକୁ ଅପେକ୍ଷା କରିଥାନ୍ତି ଶୋଭନ । ଶୁଣାଶୁଣି ଖବର ପହଞ୍ଚିଲା ସୁନନ୍ଦାଙ୍କ ପାଖରେ । ଜିଦ୍ ଧରିଲେ ସୁନନ୍ଦା; ଏଥର ମଧ କ୍ୟାନସେଲ କରିବାକୁ ପଡ଼ିବ । ବାଧ ହେଇ ମୁଖ୍ୟମନ୍ତ୍ରୀଙ୍କୁ ସନ୍ଦୀପ କହିଲେ ଏବଂ ଶୋଭନ ପୂର୍ବ ସ୍ଥାନରେ ରହିଲେ ।

ମନକୁ ପ୍ରଶ୍ନ ଆସେ ଶୋଭନଙ୍କର. ଯଦି ଏତେ ସ୍ନେହ ମମତ୍ୱ ଆଉ ଦରଦ ତାଙ୍କ ପାଇଁ, ତେବେ ଅଧ୍ୟାପକଙ୍କୁ ବାହା ହେବେନି କହି ପ୍ରସ୍ତାବ ଭାଙ୍ଗିଦେବାର ରହସ୍ୟ କ'ଣ ହୋଇପାରେ ? ସନ୍ଦୀପଙ୍କର ସନ୍ଦେହର ବଳୟ ବାହାରେ ଥିଲେ ଶୋଭନ ।

ସୁନନ୍ଦାଙ୍କ ସୁନ୍ଦର ସୁରଭିତ ରୂପକାନ୍ତି, ଲୋଭନୀୟ ଢଳ ଢଳ ରୂପଯୌବନ ପାଖରେ ବିଭୋର ହୋଇପଡୁଥିଲେ ସନ୍ଦୀପ ।

ସେଥର. କାର୍ ନ ନେଇ ସେମାନେ ସହର ବୁଲୁଥିଲେ ଚାଲି ଚାଲି । ସମସ୍ତଙ୍କ ଲୋଭିଲା ଆଖି ସୁନନ୍ଦାଙ୍କ ଉପରେ ନିବଦ୍ଧ ହୋଇପଡୁଥିଲା । ସାତ ତାଳ ପାଣି, ଆଠ ତାଳ ପଙ୍କ ଆଉ ବୁଢ଼ୀ ଅସୁରୁଣୀର ଫରୁଆ ଭିତରୁ ରୂପ ଉଆସର ରାଜକୁମାରୀ ଯେପରି ସେମାନଙ୍କ ଆଖି ଆଗରେ ଉଭା ହୋଇଛି; କିନ୍ତୁ ଈର୍ଷା ଓ ସଂକୀର୍ଣ୍ଣତାରେ ସନ୍ଦୀପ ନିଜକୁ ନିଜେ ଛୋଟ ହୋଇଯାଉଥିଲେ ସୁନନ୍ଦାଙ୍କ ଝଲସିତ ରୂପଲାବଣ୍ୟ ପାଖରେ । ତାଙ୍କ ଉଦାସ ନୀରସ ସ୍ୱଭାବ ଯେତେବେଳେ ବାରି ହୋଇଗଲା, ସେତେବେଳେ ସହର ବୁଲା ସେଇଠି ରଖି ବାଧ କରି ଫେରେଇ ଆଣିଥିଲେ ଆଉ ଦେହ ଛୁଇଁ ସତକଥାଟି ବି ସନ୍ଦୀପଙ୍କଠୁ କାଢ଼ି ନେଇଥିଲେ । ସନ୍ଦୀପଙ୍କ ସାବନା ତେଙ୍ଗା ଚେହେରା, ନିର୍ଲିପ୍ତ ଠିଆ କେଶ, ମୋଟା ନିଶ ଆଉ ପୋଷାକର ଅଯତ୍ନ ସ୍ୱଭାବ ସୁନନ୍ଦାଙ୍କ ସୁନ୍ଦର ସୁଗଠିତ ଗଢ଼ଣ ନିକଟରେ ନିରସ ନିଷ୍ପ୍ରଭ ହୋଇଯିବାର ଅନୁଭୂତିରେ ସନ୍ଦୀପଙ୍କ ମନରେ ହଠାତ୍ ଈର୍ଷା ଆସିଯାଉଥିଲା ।

ଆହୁରି ସହ୍ୟ କରିବାକୁ ଯାଇ ସୁନନ୍ଦା ଖୋଲା ଖୋଲି ଭାବରେ କହିଥିଲେ—"ଦେଖ ସନ୍ଦୀପ ! କନ୍ଦର୍ପଠାରୁ ସୁନ୍ଦର ହୋଇଥିଲେ ବି ମୁଁ ତୁମକୁ ବାହାହୋଇ ନ ଥାନ୍ତି । ମୁଁ ବିବାହ କରିଛି ତମ ସାହିତ୍ୟକୁ, ତମ ସୃଷ୍ଟିକୁ ।"

ସତେଯେମିତି ପାଦତଳର ମାଟି ଧସେଇଗଲା ଏବଂ ସନ୍ଦୀପ ଖସି ପଡୁଥିଲେ ସେଇ ଅଥଳ ଅତଳକୁ ।

ପୂଜାଛୁଟି ହୋଇଥାଏ । 'ଅନୁରାଧା' ଉପନ୍ୟାସ ଆରମ୍ଭ ପାଇଁ କଳ୍ପନା ଚାଲିଥାଏ । ପନ୍ଦର ଦିନ ରହିବା ପାଇଁ କୋଣାର୍କର ପାନ୍ଥ ନିବାସ ରିଜର୍ଭ କରିଥାଆନ୍ତି ସନ୍ଦୀପ । ସାଥିରେ ଯିବେ ବନ୍ଧୁ ଶୋଭନ ।

ସୁନନ୍ଦା ଜିଦ୍ ଧରିଲେ ।

"ଏଥର ମୁଁ ତମମାନଙ୍କ ସହ ଯିବି, ସବୁଥର ଦି'ଜଣ ଯାକ ମତେ ନ ନେଇ ଚାଲିଯାଉଛ । ତୁମ୍ ଲେଖା ଲେଖିରେ ମୁଁ କିଛି ଡିଷ୍ଟର୍ବ କରିବି ନାହିଁ । ସବୁ ଲେଖାର ଫେୟାର କପି ମୁଁ ତ କରେ, ବରଂ ସୁବିଧା ହେବ ମୁଁ ସେଇଠି ସବୁ ଫେୟାର କପି କରିଦେବି । ଫେରିବ ତ ପ୍ରିଣ୍ଟ୍ ଲାଗି ପ୍ରେସ୍‌କୁ ଦେଇଦେବ ।"

ନାରୀଠୁ ନିର୍ଜନତାର ଆବଶ୍ୟକତା ଆଉ ଘରର ବୋହୂକୁ ସାଥିରେ ନ ନେଇ ବହି ଲେଖିବା, ଯଦିଓ ଯୁକ୍ତି ବଳିଷ୍ଠ ଥିଲା ତଥାପି ସୁନନ୍ଦାଙ୍କୁ ସେମାନେ ସାଥିରେ ନେବାକୁ ମନା କରିପାରିଲେ ନାହିଁ ।

ଦିନ ତମାମ ପାଦରେ ଚାଲି ଚାଲି ବେଳାଭୂମି, ସୂର୍ଯ୍ୟମନ୍ଦିରର ଅପରୂପ ନିଖୁଣ ଜୀବନ୍ତ ପାଷାଣ ଛବି, ହଜାର ହଜାର ଦେବଦାସୀଙ୍କ ହୃଦୟର ଭାଷାକୁ ପଥର ପ୍ରତିମା ଭିତରେ ଲକ୍ଷ୍ୟ କରି ପୃଷ୍ଠା ପରେ ପୃଷ୍ଠା ଲେଖା ଚାଲିଛି । 'ଅନୁରାଧା' ଉପନ୍ୟାସ ଲେଖା କେମିତି ହେଉଛି, କେଉଁଠି ହେଉଛି, ତାର ଟେର୍ ପାଇନାହାନ୍ତି ସୁନନ୍ଦା । କେବଳ ଫେୟାର୍ କପି ଉତାରିବାରେ କଟିଛି ତାଙ୍କର ଅଧିକାଂଶ ସମୟ । ଚଉଦ ଦିନ ଓ ରାତି ଭିତରେ ଏଗାର ଏକରରେ ଅବସ୍ଥାପିତ ସୂର୍ଯ୍ୟମନ୍ଦିରକୁ ସନ୍ଦୀପ ଓ ଶୋଭନ ତନ୍ନ ତନ୍ନ କରି ଖୋଜିଛନ୍ତି, ଅତୀତକୁ, ଇତିହାସକୁ, ଚରିତ୍ରଗୁଡ଼ିକୁ । କେମିତି ହଜାର ହଜାର ଦେବଦାସୀ ଆସିଛନ୍ତି ଅର୍କକ୍ଷେତ୍ରକୁ ଶିଳ୍ପୀର ନମୁନା ହୋଇ । ଶିଳ୍ପୀ ଶ୍ରେଷ୍ଠ ବିଶୁ କିଭଳି ଭଲ ପାଇଛନ୍ତି ଅନୁରାଧାକୁ । ପରିଣତି କିଭଳି ଭୟାବହ ହୋଇଛି ଏଇ ବିଷୟବସ୍ତୁକୁ ନେଇ ରଚିତ ଅନୁରାଧା ଉପନ୍ୟାସ । ଉପନ୍ୟାସ ସରିବା ଖୁସିରେ ସୁନନ୍ଦାଙ୍କୁ ଧରି ସନ୍ଦୀପ ମନ୍ଦିର ବୁଲାଉଥାଆନ୍ତି ଶେଷଦିନ । ମୃଦଙ୍ଗବାଦିକା ଅନୁରାଧା ମୂର୍ତ୍ତି ତଳର ଚଟାଣରେ କ୍ଲାନ୍ତି ମେଣ୍ଟାଉଥାଆନ୍ତି ସେମାନେ; କିନ୍ତୁ ଦୃଷ୍ଟି ଥାଏ ମୂର୍ତ୍ତିଗୁଡ଼ିକ ଉପରେ । ପଥର ଦେହରେ କ୍ଷୟର ଜୀବାଣୁ ପଶିଗଲେଣି ଅନେକ ଦିନରୁ, ତଥାପି କମନୀୟ ମୂର୍ତ୍ତିର ପ୍ରାଣପ୍ରଭା ଏବେ ବି ଝଲକୁଛି । ନୀରବତା ଭାଙ୍ଗି ଡାକିଲେ ସନ୍ଦୀପ ।

ସୁନନ୍ଦା !

ହୁଁ...

ଆଉ କିଛି କହିଲେନି ସୁନନ୍ଦା ।

ଦେଖୁଛି, ତମେ ଖୁବ୍ ଭାବପ୍ରବଣ ହୋଇଗଲଣି ।

ତମେ ବି କମ୍ ନୁହେଁ । ନ ହେଲେ ଉପନ୍ୟାସଟିର ନାୟିକା ଅନୁରାଧାକୁ ଏତେ ଜୀବନ୍ତ ଭାବରେ ବର୍ଣ୍ଣନା କଲ କେମିତି । ଶବ୍ଦ ଛନ୍ଦରେ ତମେ ଯେମିତି ତମ ନାୟିକାକୁ ଧରିଛ, ମୁଁ ସେମିତି ନିବିଷ୍ଟ ଭାବରେ ଦେବଦାସୀକୁ ଦେଖୁଛି ।

କଥାର ଖିଅକୁ ନ ଛିଣ୍ଡେଇ ହସି ହସି କହିଲେ ସନ୍ଦୀପ—ଏଇ ଅସଂଖ୍ୟ ଦେବଦାସୀମାନଙ୍କ ନୃତ୍ୟରତା ଭାବଭଙ୍ଗିମା ଦେଖି ତମ ମନ କ'ଣ ଉଚ୍ଚାଟ ହୋଇଉଠୁନି । ମେଘମେଦୁର ଆକାଶର ରୂପ ଦେଖି ମୟୂର କ'ଣ ଚୁପ୍ ରହିପାରେ—ଅନେକ ଦିନ ହେବ ତମେ ନାଚି ନାହଁ ସୁନନ୍ଦା ! ତମ ନୂପୁରର ଛନ୍ଦମୟ ତାଳର ନିକ୍ୱଣ ଶୁଣିବାକୁ ମନ ମୋର ଅସ୍ଥିର ହେଉଛି; ରଖିବ ମୋ କଥା ?

କବିର ଅର୍ଦ୍ଧାଙ୍ଗିନୀ ହୋଇ ନୃତ୍ୟକୁ ମୁଁ ପ୍ରାୟ ଭୁଲିଗଲିଣି । ପ୍ରିୟତମଙ୍କ କବି ପ୍ରାଣରେ କଳାତ୍ମକ ସୃଜନଶୀଳ ଉତ୍କର୍ଷ ଲାଗି ହସି ହସି ମୁଁ ଉତ୍ସର୍ଗ କରିଛି ମୋର ମନ, ପ୍ରାଣ ଓ କର୍ମ ସବୁକିଛି । ଜାଣ, ସନ୍ଦୀପ ତମର ସାହତ୍ୟକୃତି, ପ୍ରତିଭା ଲାଗି ଯେତେବେଳେ ପୁରସ୍କାରର ପାହାଚ ପରେ ପାହାଚ ଅତିକ୍ରମି ଯାଉଛ, ମୋ ମନର ପାଇବାର ସାର୍ଥକତା, ଆନନ୍ଦ ତମେ କଳନା କରିପାରିବ ନାହିଁ, ଆଉ ସେଇ ପାଇବା ଭିତରେ କିଛି ହଜାଇ ନ ଦେଲେ ମୁଁ ପାଇବି କେମିତି ? ତେଣୁ ମୁଁ ନୃତ୍ୟ ଛାଡ଼ିଛି, ତମ ସାର୍ଥକତାରେ ମୋର ସିଦ୍ଧି । ତମେ ମୋ ପାଇଁ କେତେ ବଡ଼, ମୁଁ ଭାଷାରେ କହିପାରୁନି ।

ନା... ନା... ସୁନନ୍ଦା ! ...ମୁଁ ଜମା ବଡ଼ ନୁହେଁ ।

ତମେ ମୋ ପାଇଁ ଆକାଶ ପରି ନିର୍ମଳ ପରିବ୍ୟାପ୍ତ ଆଉ ବଡ଼; କବି ପରା ସୃଷ୍ଟିର ଶ୍ରେଷ୍ଠ ।

ଭୟ, ଆତଙ୍କରେ ସନ୍ଦୀପଙ୍କର ତାଳୁରୁ ତଳିପା ଯାଏ ଥରି ଯାଇଥିଲା, ସେଦିନ ସୁନନ୍ଦାଙ୍କ ଅଗୋଚରରେ । ଅବଶ୍ୟ ସୁନନ୍ଦାଙ୍କୁ ପତ୍ନୀ ରୂପେ ପାଇ ନ ଥିଲେ ସନ୍ଦୀପଙ୍କ ପାଇଁ ଆକାଶ ଛିଣ୍ଡି ପଡ଼ି ନ ଥାଆନ୍ତା । ସୁନନ୍ଦାଙ୍କ ଏତେ ସବୁ ତ୍ୟାଗ, ସମ୍ମାନ ଓ ନିଷ୍ଠା ପାଖରେ ପତିର ଭୂମିକା ବ୍ୟତୀତ ସାହିତ୍ୟିକ ଜୀବନଟି ଯେ କେତେ ଉଚ୍ଛରେ, ଭାବିଲାବେଳକୁ ସତକଥାଟି ଖୋଲିକି କହିଦେବାକୁ କେଜାଣି କାହିଁକି ଅନେକଥର ତାଙ୍କର ସାହସ ହୋଇନାହିଁ ।

କିନ୍ତୁ ଆଜି ।

ହାରଜିତ୍‌ର ଜୀବନ ଯୁଦ୍ଧରେ ସୁନନ୍ଦା ଆଉ ଶୋଭନ ମୃତ୍ୟୁର ପଥ ବାଛି ନେଇ ହାରିଯିବାର ଅଭିନୟ ସିନା କଲେ, କିନ୍ତୁ ପ୍ରକୃତରେ ସେମାନଙ୍କର ଜିତାପଟ ହୋଇଛି । ପରାହତର କାଳିମା ନେଇ ସନ୍ଦୀପ ବଞ୍ଚିଥାଇ ବି ତିଳ ତିଳ ହୋଇ ପ୍ରତ୍ୟେକ ମୁହୂର୍ତ୍ତରେ ଆଜି ମରିବାର ଯନ୍ତ୍ରଣା ପାଉଛନ୍ତି ।

ଗଣମାଧ୍ୟମରେ ପ୍ରଚାରିତ ହୋଇଗଲା, ଦେଶର ସର୍ବଶ୍ରେଷ୍ଠ ପ୍ରଜ୍ଞାପୀଠ ପୁରସ୍କାର ସନ୍ଦୀପଙ୍କ ସଦ୍ୟ ପ୍ରକାଶିତ ପୁସ୍ତକ ଅନୁରାଧା ପାଇଛି, ସୁନନ୍ଦାଙ୍କ ଖୁସି ସରଗ ଛୁଉଁଥାଏ । ସବୁଥର ପରି ଏଥର ବି ସନ୍ଦୀପ, ଶୋଭନର ଆସିବାକୁ ଅପେକ୍ଷା କରିଥାଆନ୍ତି । କିନ୍ତୁ ସେ ନ ଆସିବାରୁ ନିଜେ ସନ୍ଦୀପ ତାଙ୍କ ନିକଟକୁ ଯାଇଛନ୍ତି । ପହଁଚୁ ପହଁଚୁ ନ ଆସିବାର ଆକ୍ଷେପ କରିଦେଲେ ସନ୍ଦୀପ । ଶୋଭନଙ୍କର ଅନେକ ଦିନର ପୁଞ୍ଜୀଭୂତ ଅସନ୍ତୋଷ ଖୋଲି ହେଇଗଲା । ହଁ, ମୁଁ ଜାଣିଶୁଣି ଯାଇନାହିଁ । ଆଉ ମୋ ପାଖରେ କ'ଣ ଅଛି ଯେ, ନେଇଯିବାକୁ ଦୌଡ଼ିଆସିଛୁ ?

ମାନେ ? ଆରେ ମୋ ବହି ପ୍ରଜ୍ଞାପୀଠ ପାଇଛି ।

ଜାଣେ, ମୁଁ ଯଦି କହେ ତାହା ମୋ ଲେଖା...

ପ୍ରଜ୍ଞାପୀଠ ପରେ, ଏ ବୋକାମୀ ଅନ୍ତତଃ ଅଧ୍ୟାପକ ଶୋଭନ ପାଖରେ ଶୋଭା ପାଏନା ।

ଅନେକ ଯୁକ୍ତିତର୍କ ପରେ ଏକା ଫେରି ଆସିଥିଲେ ସନ୍ଦୀପ ।

ସମ୍ବର୍ଦ୍ଧନା ସଭାରେ ବ୍ୟସ୍ତ ଥିବାରୁ ଚିଠିଟି ଖୋଲିଛନ୍ତି ସୁନନ୍ଦା, ସନ୍ଦୀପଙ୍କୁ ଲେଖିଛନ୍ତି ଶୋଭନ, ଲେଖାଥିଲା—

ଜୀବନରେ ଅଧ୍ୟାପକ ହେବାର ସ୍ୱପ୍ନ ମୋର ନଥିଲା କି ସାହିତ୍ୟିକ ମଧ୍ୟ ନୁହେଁ । ତୋରି ସାହାଯ୍ୟ ସହାନୁଭୂତିରେ ମୁଁ ଆଜି ମଣିଷ । ସେଦିନ ମୋ ଡାଇରି ଖୋଲି ତୁ ଯଦି କଲେଜ ଜୀବନରେ ମୋ ପ୍ରତିଭାକୁ ଆବିଷ୍କାର କରି ନ ଥାଆନ୍ତୁ ତେବେ ସବୁ ଲେଖା ସେମିତି ଡୋରି ବନ୍ଧା ହୋଇ ଲୋକଲୋଚନର ଆଢୁଆଳରେ ରହିଯାଇ ଥାଆନ୍ତା । ରକ୍ତ-ମାଂସ-ଶରୀର ନେଇ ମଣିଷ ଶରୀର । ରାଗ, ଦ୍ୱେଷ, ଇର୍ଷା ରହିବା ତ ସ୍ୱାଭାବିକ । ମୋର ଜ୍ଞାନ, ଗାରିମା, ସାହିତ୍ୟ ଆଉ ମଣିଷ ପରି ମଣିଷଟିଏ ଗଢ଼ିବାରେ ଯେଉଁ ଦାନ ତୋର ରହିଛି, ମୋର କିଞ୍ଚିତ୍ କଷ୍ଟସାଧନା, ସାହିତ୍ୟକୃତି ତା'ଠାରୁ ବହୁତ ନ୍ୟୂନ ଆଉ ଛୋଟ । ମୋ ଜୀବନ ଏକ ଖୋଲା ବହି । କିନ୍ତୁ ତତେ ପରୀକ୍ଷା କରିବାକୁ ଯାଇ ଯେଉଁ ବିତର୍କ ତୋ ସହ କରିବସିଲି ମୁଁ ପ୍ରକୃତରେ ଅନୁତପ୍ତ । ସତରେ ମୁଁ କ'ଣ ସାହିତ୍ୟିକ ? ସବୁ ସମ୍ମାନ ତୋର, ପ୍ରଜ୍ଞାପୀଠର ହକ୍ ତୋର । ତୁ ଯେଉଁ ଶୀର୍ଷରେ ଆଜି ଉପନୀତ ମୁଁ ଧୃଷ୍ଟତା କରି ଯଦି କୁହେ, କିଏ ବିଶ୍ୱାସ କରିବ ? ତୁ ସେଇ ଶୀର୍ଷରେ ରହ । ତୋ ପାଇଁ କଣ୍ଟା ହେଇ ରହିବାକୁ ଏ ଚିଠି ତୁ ପାଇବା ବେଳକୁ ହୁଏତ ମୁଁ ନଥିବି । ବିଦାୟ... ଏ ଜନ୍ମ ପାଇଁ ବିଦାୟ ।

ଚିଠିଟି ସୁନନ୍ଦାଙ୍କ ହାତରେ ପଡ଼ି ନଥିଲେ ଜୀବନର ମୋଡ଼ ଅନ୍ୟ ରକମ ହୋଇଥାନ୍ତା । ଛାତି ପକେଟରୁ ଛୋଟିଆ ଚିଠିଟି କାଢ଼ି ଦେଖିନେଲେ ସନ୍ଦୀପ । ସେତେବେଳକୁ ନିଆଁର ଧାସ ନଥାଏ । ଶିଖା ପ୍ରାୟ ଲିଭି ଲିଭି ଆସୁଥାଏ । କୁହୁଳି ଆସୁଥିବା ସୁନନ୍ଦାଙ୍କ ଯୂଇରେ ଦୀପଶିଖା ପ୍ରାୟ ଚିଠିଟି ନିଆଁ ଧରି କ୍ଷଣକେ ଦପ୍ କରି ଲିଭିଗଲା; ସେ ଲିଭିବା ଭିତରେ ସତେଯେମିତି ଆହୁରି ସ୍ପଷ୍ଟ ହୋଇଯାଉଥାଏ ଅନ୍ତର୍ଦାହ, ସନ୍ଦୀପଙ୍କ ନିଛକ ଛଳନାର ଅନ୍ତର୍ଭେଦୀ ଦାଗ ।

O

# ମୋହଭଙ୍ଗ

ସମୟ କାହାକୁ ବୁଝେନି । ଦୁଃଖ ବି ବୁଝେନି । ବୁଝୁଥିଲେ ମନ ଭିତରେ ଏତେ ନୈରାଶ୍ୟ, ଗ୍ଲାନି ଆଉ ହତାଶାର ରାଶି ରାଶି ଶିଳାମୟ ପାହାଡ଼, ଧୂମାଳ ଆସ୍ତରଣ ଓ ସ୍ତର ସ୍ତର ପ୍ରତିବନ୍ଧକ ହୁଏତ ନ ଥାଆନ୍ତା ।

ଗାଣିତିକ ସୂତ୍ରରେ ଅହରହ ଛନ୍ଦି ହୋଇ ମଣିଷ ହିସାବ କରନ୍ତା ନାହିଁ, କେତେ ଦେଲି, କେତେ ପାଇଲି । ଅଣନିଶ୍ୱାସୀ ହୋଇ ଦୌଡ଼ନ୍ତା ନାହିଁ ଏକରୁ ଦଶ, ଦଶରୁ ଶହେ, ଶହେରୁ ହଜାର, ହଜାରରୁ ଲକ୍ଷେ ଆଉ ଲକ୍ଷେରୁ କୋଟିଏ ରୋଜଗାର ପର୍ଯ୍ୟନ୍ତ । ପାଇବା ନ ପାଇବାର ଦ୍ୱନ୍ଦ୍ୱ ଭିତରେ ଜୀବନକୁ ଥରେ ବି ପରଖି ନେବାର ଶକ୍ତି ବି ନ ଥାଏ । ମଣିଷ ସେଇ ମହତ୍ୱ ନିର୍ବିକଳ୍ପ ଚିରନ୍ତନ ଚିନ୍ତାଧାରାର ଖୁବ୍ ପାଖରେ ଥାଇ ବି କେତେ ଦୂରରେ ସତେ । ସଂକୀର୍ଣ୍ଣ ପରିଧିରେ ବନ୍ଦୀ ନିଜ ନିଜର ସ୍ୱାର୍ଥ ପାଖରେ ।

ପଇଁଚାଳିଶି ବର୍ଷ ବୟସରେ ସୁମନ୍ତ ନିଜ ଝିଅ ପିଙ୍କିଠୁ ଆଜି ଯେତିକି ଶିଖିଲେ ପିତାମାତା, ଗୁରୁ, ଗୁରୁଜନ, ବନ୍ଧୁବାନ୍ଧବମାନଙ୍କଠାରୁ ସେତିକି ତ ଶିଖି ନଥିଲେ ଆଗରୁ ।

ଶୁଣିଥିଲେ କଥାରେ, ଚେହେରାରେ ଓ ଆହୁରି କେତେ କ୍ଷେତ୍ରରେ ଝିଅମାନେ ପୁଅଙ୍କଠୁ ଆଗୁଆ ।

ତାହାହିଁ ସାବ୍ୟସ୍ତ ହୋଇଛି ଆଜି ।

ଚଳାପଥର ଘୋଡ଼ା ଦୌଡ଼ରେ ଖାଲି କାମ ଆଉ କାମ ।

ଜୀବନଦର୍ଶନକୁ ବୁଝିବାର ମଣିଷପଣିଆର ମୋହ, ମାନବୀୟ ମୂଲ୍ୟବୋଧର ମମତ୍ୱ ସୁମନ୍ତଙ୍କ ହାତପାଆନ୍ତାରେ ଥାଇ ବି ସେ ସେମିତି ଅପହଞ୍ଚ ଦୂରତ୍ୱରେ ରହି ସ୍ଥିତିହୀନ ସେଇ ଅନୁପମ ଶୂନ୍ୟ ଗୋଲକକୁ ନିର୍ନିମେଷ ନୟନରେ ବେଳେବେଳେ ଚାହିଁଛନ୍ତି କେବଳ ।

ବଞ୍ଚିବାର ଦୌଡ଼ରେ କର୍ତ୍ତବ୍ୟରେ ଅବହେଳା ନାହିଁ; କିନ୍ତୁ ସେ କର୍ତ୍ତବ୍ୟରେ ଆଦୌ ଆବେଗ ନାହିଁ ।

ଅଫିସରେ ଗଦା ଗଦା ଫାଇଲ ଚାଷ । ଏଣେ ଘରେ ତେଲ ଲୁଣର ସଂସାର । ସ୍ତ୍ରୀ ସୁନୀତାଙ୍କର ପଡ଼ୋଶୀଙ୍କ ଆଧୁନିକ ପରିପାଟୀ ଦେଖି ଦିନକୁ ଦିନ ବରାଦି ଜିଦ୍ ଓ ଜୁଲମ୍ । ପୁଅ ନିଲୁର ଇଞ୍ଜିନିୟରିଂ ପାଠ ପଢ଼ା । ଠିକ୍ ସମୟରେ ପିଲାଙ୍କୁ ନେଇ ସ୍କୁଲରେ ଛାଡ଼ିବା ଓ ଆଣିବା । ଏସବୁ ଛଡ଼ା ନିଜର ସାହିତ୍ୟ

ସାଧନା, ଗଳ୍ପ, କବିତା, ସୃଷ୍ଟି ସୃଜନ ତାଙ୍କର । ସମୟ ଏତେ ଶୀଘ୍ର ସରିଯାଉଛି; ଫୁରୁସତ୍ ନାହିଁ । କର୍ତ୍ତବ୍ୟର ଆହ୍ୱାନରେ ସବୁ ପିଠେଇ ନେଇଛନ୍ତି ସୁମନ୍ତ । ଆଜି ଦ୍ୱିତୀୟ ଶନିବାର ଅଫିସ ଛୁଟି ।

ପାରିଜାତ ସାହିତ୍ୟ ଅନୁଷ୍ଠାନର ସମ୍ପାଦକ ନିଜେ ଆସି ଅନୁରୋଧ କରିଛନ୍ତି ଗଳ୍ପ ପଢ଼ିବେ ସୁମନ୍ତ । ଲେଖା ଟେବୁଲ ପାଖରେ ବସି ଗଳ୍ପର ଥିମ୍ କ'ଣ ହେବ ଭାବୁଛନ୍ତି ପଛରୁ ହଠାତ୍ ଝିଅ ପିଙ୍କି ଆସି କଲମଟି ଧରିନେଲା । ତା'ର ସରଳ ଚପଳ ଚଞ୍ଚଳ ଖିଲି ଖିଲି ହସରେ ସୁମନ୍ତଙ୍କୁ ପ୍ରଶ୍ନ କଲା ।

ଉତ୍ତର ନ ଦେଲେ ସେ ରୁଷିବ, ଖାଇବନି, ସେ ଯେ ବଡ଼ ଅଝଟ—ତାହା ତ ତାଙ୍କୁ ଜଣା ।

ତା'ର ପ୍ରଶ୍ନ ଥିଲା ।

ମା' କହୁଥିଲା ମାସରେ ତମେ ଦରମା ପାଉଛ ପନ୍ଦର ହଜାର, ଦିନରେ ଆଠ ଘଣ୍ଟା ଅଫିସ୍‌ରେ ଖଟୁଛ ।

ଅଷ୍ଟମ ଶ୍ରେଣୀରେ ପାଠ ପଢୁଥିବା ଝିଅ ଅଙ୍କରେ କ୍ଲାସ୍‌ରେ ପ୍ରଥମ ହୁଏ । ଶେଷ ପରୀକ୍ଷାର ଫଳ ପ୍ରକାଶବେଳେ ବାପାଙ୍କର ଅନୁପସ୍ଥିତି । ଗତବର୍ଷ ଜନ୍ମଦିନ ଅବସରରେ ବାପାଙ୍କର ଅତି ବିଳମ୍ବରେ ଅଫିସ୍‌ରୁ ପ୍ରତ୍ୟାବର୍ତ୍ତନ । ବେଶ୍ ମନକୁ ଛୁଇଁଛି ତା'ର । ଯେତେ ଚେଷ୍ଟା କଲେ ବି ତା'ର କୋମଳ ମନରୁ ଘଟଣା ଦୁଇଟିକୁ ପାଶୋରି ପାରିନି ପିଙ୍କି ।

ସୁମନ୍ତଙ୍କ ଲେଖା ଟେବୁଲରୁ କାଗଜ ଟାଣି ଆଣି ହିସାବ କରିଦେଲା ପିଙ୍କି ।

"ତେବେ ବାପା ତମର ରୋଜଗାର ଘଣ୍ଟାକୁ ଷାଠିଏ ।" ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ସୁମନ୍ତ ।

"ଦେଇ ପାରିବ ମୋତେ ସେତିକି ଟଙ୍କା—ତମ ଘଣ୍ଟାଟିର ରୋଜଗାର" ପିଙ୍କିର କଣ୍ଠ ସ୍ପଷ୍ଟ ।

କ'ଣ କରିବୁ ଏତେ ଟଙ୍କା—ଦାମୀ ଚକଲେଟ୍ କିଣି ଖାଇବୁ, ଦାନ୍ତ ସବୁ ପୋକ ଖାଇଯିବ ଯେ ?

ନା—ପିଙ୍କିର ଦୃଢ଼ ସ୍ୱର ।

ତେବେ ସାଙ୍ଗମାନଙ୍କୁ ଚକ୍‌ଲେଟ ବାଣ୍ଟିବୁ ?

ନା ବାପା ନା, ଖର୍ଚ୍ଚ ତ କରିବି; କିନ୍ତୁ ତମ ପରାମର୍ଶରେ ପ୍ରୋମିଜ୍... ପ୍ରୋମିଜ୍... ପ୍ରୋମିଜ୍ ।

ତଥାପି ବିଶ୍ୱାସ ହେଲାନି ସୁମନ୍ତଙ୍କର । ଟଙ୍କା ଦେଲେ ନାହିଁ । ପିଙ୍କି ତା' ସ୍କୁଲବ୍ୟାଗର ସାମ୍ନା ଛୋଟ ପକେଟରୁ ତା ଦୈନନ୍ଦିନ ଖର୍ଚ୍ଚ ପାଇଁ ନେଇଥିବା ଖୁଚୁରା ପଇସାକୁ କାଢ଼ି ଗଣିବସିଲା । ପଇଁତିରିଶ ଟଙ୍କା ।

ବେଡ଼ତଳୁ ତା ସାଙ୍ଗ ସୋନିର ଜନ୍ମ ଦିନରେ ଉପହାର ଦେବ କହି ମା'ଙ୍କଠାରୁ ଆଣିଥିବା ପଚିଶ ଟଙ୍କାକୁ ଏକାଠି କରି ସୁମନ୍ତଙ୍କ ଟେବୁଲ ଉପରେ ରଖିଦେଲା ପିଙ୍କି । ଆଖି ଛଳ ଛଳ ଭଙ୍ଗା ଭଙ୍ଗା କଣ୍ଠରେ କହିଚାଲିଲା—

ବାପା... ବାପା ! ତମର ବହୁମୂଲ୍ୟ ସମୟରୁ ଘଣ୍ଟାଏ ମାତ୍ର ତମର ଘଣ୍ଟାଏ ସମୟର ମୂଲ୍ୟ ପାଇଁ ମୁଁ ତମ ପାରିଶ୍ରମିକ ତ ଦେଉଛି । ତମେ ମୋ ପାଖରେ ବସ—ଭାଇ, ମା' କେହି ଆସିବେ ନାହିଁ ।

ମୁଁ କବାଟ ଆଉଜେଇ ଦେଉଛି । ଅନେକ ଦିନ ହେବ ତମେ ମତେ ଗପ ଶୁଣେଇ ନାହିଁ । ଛୁଆବେଳେ ମତେ ଯେପରି ଗପ କହୁଥିଲ ସେମିତି କୁହ ।

ସେଇ ରଜାଘର କଥା, ବୁଢ଼ୀ ଅସୁରୁଣୀ କଥା, ପରି ରାଇଜର କଥା, ମାଳି ମାଲୁଣିର କଥା, ବାଘ ଠେକୁଆ କଥା, ଅଗନା ଅଗନି ବନସ୍ତର କଥା, ଅସହାୟ ହରିଣୀର କଥା । କୁହ ବାପା, କୁହ !

ସ୍ତବ୍ଧ ହୋଇଯାଇଥିଲେ ସୁମନ୍ତ । ତାଙ୍କ ଅନ୍ତର ଭିତରର ନିବୁଜ ଦରଜା କ୍ଷଣକେ ଖୋଲି ଯାଉଥାଏ । ଏତେ ଦିନର ନିଜ ସ୍ୱାର୍ଥସର୍ବସ୍ୱ ବସ୍ତୁବାଦୀ ଚିନ୍ତାଧାରା, ବ୍ୟସ୍ତତା ଭିତରେ ଏଇ ମହତ୍ତର ମହତ୍ତ୍ୱ ସମ୍ପର୍କରେ ସେ ସଚେତନ ହୋଇଗଲେ ।

ଭାବୁଥିଲେ ତାଙ୍କର ମୋହଭଙ୍ଗ ହୋଇଛି ଯେମିତି ।

O

# ସବୁଜ ପାହାଡ଼ ତଳର ଘନ ବନାନୀ

ଷ୍ଟିଲ ପ୍ଲାଣ୍ଟର ପର୍ସନେଲ ଅଫିସର ଚାକିରିର ନିଯୁକ୍ତିପତ୍ର ପାଇଛି ରମୁ, କିନ୍ତୁ ମନରେ ଆନନ୍ଦ ନଥାଏ ।

ପ୍ରଥମରୁ ଏଭଳି ପଦସ୍ଥ ଚାକିରି ମିଳିବା ତ ଭାଗ୍ୟ । ଆଉ ପୁଣି ଭବିଷ୍ୟତ ଯେ ଏଥିର ଉଜ୍ଜଳମୟ ଟିକିଏ ତାର ସନ୍ଦେହ ନଥାଏ ।

ତଥାପି ଚାକିରି କରି ପରାଧୀନତା ଆଡ଼କୁ ଗୋଡ଼ ବଢ଼ାଇ ଦେବା ତା'ପକ୍ଷେ ଠିକ୍ ହେବନି, ଭାବିଚାଲିଛି ରମୁ ।

ପାଠପଢ଼ା ଜୀବନ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସେ ଘୃଣା କରିଆସିଛି ପର ପାଖରେ ଚାକିରି କରି ପରାଧୀନର ଜୀବନ ଅତିବାହିତ କରିବା ପାଇଁ ।

ସୁର ଭାଇଙ୍କ ଦିଗ୍‌ଦର୍ଶନ ଓ ତାଙ୍କର ଲମ୍ବା ଅନୁଭୂତିର ବିଚକ୍ଷଣ ବ୍ୟବସାୟୀ ପ୍ରତିଭାର ନିଜ ଉପରେ ତାର ପ୍ରଭାବ ଓ ନିଜର ସ୍ୱାଧୀନ ସ୍ୱଭାବ ହେତୁ ପାଞ୍ଚ ଛଅମାସ ଭିତରେ ବ୍ୟବସାୟରେ କ୍ଷତି ନହୋଇ ପୂର୍ବାପେକ୍ଷା ଲାଭ ହୋଇଛି ଦୁଇଗୁଣ ।

ସ୍ୱଳ୍ପ ସମୟ ମଧ୍ୟରେ କିଛିଟା ଉତ୍ସାହଜନକ ପଦକ୍ଷେପ ନେଇ ବାପାଙ୍କ ପ୍ରତିଷ୍ଠିତ ବ୍ୟବସାୟକୁ ଆହୁରି ଉନ୍ନତ କରିଥିବାରୁ ସ୍ୱର୍ଗତଃ ବାପାଙ୍କ ପ୍ରତି କୃତଜ୍ଞତାରେ ନଇଁଯିବା ବେଳେ ସାମ୍ନା ସୋକେଶ ଉପର ବିରାଟ କାଚବନ୍ଧାଇ ତାଙ୍କ ଫଟୋ ପାଖରେ ନୀରବରେ ଦି'ଥର ପ୍ରାୟ ବାପାଙ୍କୁ ଚାହିଁ ରହିଛି ।

ନିଯୁକ୍ତିପତ୍ର ଆଉ ପୈତୃକ ବ୍ୟବସାୟ କେନ୍ଦ୍ରର ଆକର୍ଷଣ । କେଉଁଟା ସେ ଗ୍ରହଣ କରିନେବା ଉଚିତ, ଦ୍ୱନ୍ଦ୍ୱ ଓ ଚିନ୍ତାରେ ପଡ଼ିଯାଇଛି ।

ଇଚ୍ଛା ବିରୁଦ୍ଧରେ ଯାଇ ସରକାରୀ ଉଚ୍ଚ ପଦବୀ ଗ୍ରହଣ କରିବା ସପକ୍ଷରେ ଯିବାକୁ ତାର ମନ କହୁନି । ଯେକୌଣସି ଉଚ୍ଚ ପଦବୀଠାରୁ ଅର୍ଥ କମେଇବାରେ ବ୍ୟବସାୟ ହିଁ ଆଜିକାଲି ଉତ୍କୃଷ୍ଟ ପନ୍ଥା, ତାର ଏଥିରେ ଦ୍ୱିମତ ପ୍ରକାଶିବା ଠିକ୍ ହେବନି ।

ନା... ସୁରଭାଇ ଯେତେ ବିରକ୍ତ ହୁଅନ୍ତୁ ପଛେ ତାକୁ ନିଜର ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ କରିବାକୁ ହେବନି ।

ହୁଅନ୍ତୁ ପଛେ ସେ ଗୁରୁଜନ ଆଉ ବଡ଼ଭାଇ ।

ଏଗୁଡ଼ିକ ସବୁ ଚିନ୍ତାକରି ମନଟା ଜମାରୁ ଭଲଲାଗୁ ନଥାଏ ।

କିନ୍ତୁ ହଠାତ୍ ସୁରଭାଇଙ୍କ କଣ୍ଠସ୍ୱର ଶୁଣି ପ୍ରକୃତିସ୍ଥ ହେଲା ରମୁ ।

''ଆମ ମ୍ୟାନେଜର କାଲି ଆସି ତୋ ଦୋକାନରେ ଦେଖାଶୁଣା କରିବେ । ଏନକୁ ମିନୁ ଆସିଛି । କହୁଛି ନନ୍ଦନକାନନ ଯାଇନି । ମୋତେ ତ ଟିକିଏ ଫୁରୁସତ୍ ନାହିଁ । ସକାଳୁ କାରନେଇ ଚାଲିଗଲେ ତୁ ଅପରାହ୍ନ ସୁଧା ଫେରିଆସିବୁ । ସନ୍ଧ୍ୟାରେ ପୁଣି ତୋ ଦୋକାନରେ ତୁ ରହିପାରିବୁ, କ'ଣ କହୁଛୁ ? ଯିବୁ ତ ?''

ବାପାଙ୍କ ତିରୋଧାନ ପରେ ସୁରଭାଇ ତାର ମୁରବୀ ସବୁକିଛି ।

ଭରସି କରି ମନା କରିବାକୁ ତାର ସାହସ ହେଲାନି, ସରୁ 'ହଁ' ଟିଏ ମାରି ବିଳମ୍ବିତ ରାତ୍ରିରେ ଫେରିଆସିଛି ଘରକୁ ।

ବେଡ୍‌ରୁମର କାନ୍ଥ ଘଣ୍ଟାରେ ସେତେବେଳକୁ ରାତି ବାରଟା ବାଜିଲାଣି । ନିଦ ହେଉନି, ଆବୁରୁ ଜାବୁରୁ ହୋଇ ଅନେକ କଥା ମନକୁ ମନ ଆସିଯାଉଛି । ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ନେବା ତା' ପକ୍ଷେ ଯେମିତି ଆଜି କଷ୍ଟକର ମନେ ହେଉଛି ।

କାଲି କେତେବେଳେ ବାହାରିବ ?

କାର୍ ନେଇ ଯିବ କି ତା' ପାଇଁ ସଦ୍ୟକିଣା ହୋଇଥିବା ସ୍କୁଟର ନେବ ? ଇତ୍ୟାଦି ବିଭିନ୍ନ ଭାବନା ।

ଫେରିବାବେଳେ ଡ୍ରାଇଭରକୁ କହିଦେଇଛି ଯେ ଗାଡ଼ି ପୋଛାପୋଛି କରି ଚିକ୍‌କଣ କରି ଦୋକାନ ପାଖରେ ଦିନ ଦଶଟା ଭିତରେ ଥୋଇଦେବୁ ।

ସମୟ ଗଡ଼ି ଯାଉଥାଏ, ନିଦ ଯେ ଆସୁନି, ଡେରି ରାତିରେ ଶୋଇଲେ ସକାଳୁ ଉଠିବା ତା' ପକ୍ଷେ କଷ୍ଟକର । ଯେତେ ଆଖିକୁ ଜୋରରେ ଚାପି ଧରିଲେ ବି ନିଦ ଆସୁନି । ଛିଣ୍ଡା ଅଛିଣ୍ଡା ହୋଇ ଅନେକ କଥା ତା' ମୁଣ୍ଡରେ ଧସେଇ ପଶିଯାଉଥାଏ । କାଲି ରାତିରୁ ଉଚ୍ଚଶିକ୍ଷା ସମାପ୍ତି ପରେ ନିକଟରେ ସୁର ଭାଇଙ୍କ କଡ଼ା ତାଗିଦ୍ ପାଇ ସେ ପାଇଥିବା ଚାକିରି ପାଇଁ ଦରଖାସ୍ତ କରିଥିଲା । କିନ୍ତୁ ବାପାଙ୍କ ଇଚ୍ଛାକୁ ନ ଏଡ଼ାଇ ମନ ଧ୍ୟାନ ଦେଇ ସେ ଏଇ ଚାରି ପାଞ୍ଚ ମାସ ହେଲା ବ୍ୟବସାୟରେ ମନ ଦେଇଛି । ଆଗରୁ ବାଣିଜ୍ୟରେ ସ୍ନାତକ ହୋଇଥିବାରୁ ତାକୁ ସ୍ୱାଧୀନ ଭାବେ ବ୍ୟବସାୟ ଚଳାଇବାକୁ ଅସୁବିଧା ସେମିତି ହୋଇନି ।

ସରକାରୀ ଚାକିରି କରି ଦାସତ୍ୱକୁ ସ୍ୱୀକାର କରି ଗୁଜୁରାଣ ମେଣ୍ଟାଇବାକୁ ବାପା ଆଦୌ ଚାହୁଁ ନ ଥିଲେ । ଏଇଥିପାଇଁ ଦୂରଦୃଷ୍ଟି ଦେଇ ସେ ନିଜ ପସନ୍ଦ ମୁତାବକ ଦୁଇ ଭାଇଙ୍କ ରୁଚିକୁ ଦେଖି ସହରର ମୁଖ୍ୟ ସ୍ଥାନରେ ଗଢ଼ିଥିଲେ ଦୁଇଟି ବ୍ୟବସାୟ କେନ୍ଦ୍ର ।

ଅଗ୍ରଗତିର ଶୀର୍ଷରେ ପହଞ୍ଚିବା ପାଇଁ ସୁରଭାଇଙ୍କ ବିଚକ୍ଷଣ ବିଦ୍‌ବତ୍ତା, ଧୈର୍ଯ୍ୟ ଭାବପ୍ରବଣ ହୀନ ସରଳ ରାଗବିହୀନ ସ୍ୱଭାବ ଓ ବଳିଷ୍ଠ ବ୍ୟକ୍ତିତ୍ୱ ବାପାଙ୍କ ବେଳର ବ୍ୟବସାୟର ଅବସ୍ଥାକୁ ଯଥେଷ୍ଟ ବଦଳାଇ ଦେଇଛି ।

ଦୋକାନର ସୁସଜ୍ଜିତ ଓ ଆଧୁନିକ ପରିବେଶରେ ଶୀତତାପ ନିୟନ୍ତ୍ରିତ ବ୍ୟବସ୍ଥା ଥାଇ ନିକଟରେ ବ୍ୟକ୍ତିଗତ କୋଠରୀ । ଏସବୁ ସମ୍ଭବ ହୋଇଛି ସୁରଭାଇଙ୍କ ଉଦ୍ୟମରେ । ସ୍ୱାଧୀନ ଭାବେ ବ୍ୟବସାୟ କରି ସେମାନେ ସହରର ଧନୀ ଗୋଷ୍ଠୀଙ୍କ ମଧ୍ୟରେ ଅଗ୍ରଗଣ୍ୟ । କଣ ମିଳିବ ନିଜର ସ୍ୱାଭିମାନକୁ ଜଳାଞ୍ଜଳି ଦେଇ ପରାଧୀନ ପରି ସାମାନ୍ୟ ସରକାରୀ ଚାକିରିରୁ ?

ରମୁ ସୁରଭାଇଙ୍କ ବ୍ୟକ୍ତିତ୍ୱ ପାଖରେ ସବୁବେଳେ ମଥା ନଇଁ ସ୍ୱତନ୍ତ୍ର ସମ୍ମାନ ଦେଇ ଆସିଛି । ତେଣୁ କିପରି ଅବା ମନାକରି ଥାଆନ୍ତା ନ ଯିବାକୁ । ରାତି ଢେର ବେଶୀ ହୋଇଗଲାଣି, ବାଧ ହୋଇ କବାଟ ଖୋଲି ଛାତ ଉପରକୁ ଯାଇ ଆଖିମଳି ସେ ଚାହିଁଲା ଖୋଲା ଆକାଶକୁ ।

ଛାତ ଉପରେ ସଫାଜହ୍ନର କିରଣ ନିର୍ଦ୍ଦିଷ୍ଟ ଏକ ଗୋଲାପ କୁଣ୍ଡରେ ପଡ଼ିଛି । ପ୍ରସ୍ଫୁଟିତ ଗୋଲାପ ଫୁଲଟିଏ, ଶୀତ ରାତିରେ ଧୂଆଁଳିଆ ଧୂସର ନରମ କାକର ତାର ରକ୍ତାଭ ଅଙ୍ଗରାଜିକୁ ଧୀରେ ସ୍ପର୍ଶ କରି ଟିକିଏ ନଇଁ ପଡ଼ିଛି । ଆକାଶର ତାରା ସବୁ ଗୋଟିକ ପରେ ଗୋଟିଏ ବାଦଲର ଗତି ସହ ତାଳ ମିଳାଇ ତା' ଆଖିରେ ଦ୍ରୁତ ଗତିରେ ରେସ୍ ଜିତିବାର ଅଭିନୟ କରୁଥାନ୍ତି ।

ଅନେକ ଦିନ ତଳେ ମିନୁ ତାଙ୍କ ଘରକୁ ଆସିଥିଲା । ପ୍ରାୟ ସୁର ଭାଇଙ୍କ ବାହାଘର ପରେ ପରେ । ଭାଉଜ ଆଉ ମିନୁ ଦୁର ଭଉଣୀ ହେଲେ ମଧ ମିନୁ ଭାଉଜଙ୍କଠାରୁ ଶତ ଗୁଣରେ ସୁନ୍ଦର ଆଉ ସୁଶ୍ରୀ ।

ଡିନର୍ ଟେବୁଲ୍‌ରେ ହଠାତ୍ କିଛି ବର୍ଷ ବ୍ୟବଧାନରେ ମିନୁକୁ ଶାଢ଼ୀ ପିନ୍ଧିଥିବା ଦେଖି ରମୁର ଆଖି ଲାଖି ରହିଗଲା ପରି ଲାଗିଥିଲା । ତା ଉପରେ ମିନୁକୁ କାଲି ବୁଲାଇନେବା ଦାୟିତ୍ୱ ନ୍ୟସ୍ତ ଥିବାରୁ ଖୁବ୍ ଖୁସି ହୋଇଗଲା ମନେ ମନେ ।

ମିନୁର ପିଲାଳିଆ ନରମ ହସ, ଚିବୁକର ଚିକ୍‌କଣ, ଲିପ୍‌ଷ୍ଟିକର ଅବିକଳ ଓଠର ରଙ୍ଗ ଆଉ ତୋଫା ଗୋରା ମୁହଁକୁ ଅନାଇ ତା' ସହ ନିରୋଳାରେ ଘଣ୍ଟା ଘଣ୍ଟା ଗପ କରିବାକୁ ତାର ମନ ।

ଯାହାହେଉ ସୁଯୋଗ ଯେତେବେଳେ ଆସିଚି ନନ୍ଦନକାନନ ମିନୁକୁ ବୁଲାଇ ନେବାକୁ, ରମୁ ଭାବିଚାଲିଛି ଗସ୍ତ କାର୍ଯ୍ୟକ୍ରମର ବିବରଣୀ ସମ୍ପର୍କରେ

ପୁତୁରା ଝିଆରୀ ଲିଲି ଓ ବୁଲୁକୁ ନ ନେଇ କୌଣସି ଆଳରେ ସେମାନଙ୍କୁ ଭୁଲାଇ ମିନୁ ସହ ସ୍କୁଟରରେ ସେ ଯିବ ନନ୍ଦନକାନନ । ନେଲେ ସିନା ହଇରାଣ ହରକତ ।

ବାଟଯାକ ମିନୁ ସହ ମନଭରି କଥା ହେବ । ସ୍କୁଟରରେ ଇଚ୍ଛା ମୁତାବକ ବ୍ରେକ ଦେଇ ମିନୁର ଦେହ ସହିତ ନିକଟେଇ ଯିବ । ତାର ମନ ନେଇ ଲନ୍‌ର

ସବୁଜ ଘାସ ଉପରେ ବସି ପାଖରେ ଥିବା ଫୁଲଗଛରୁ ଫୁଲ ଛିଣ୍ଡାଇ ତା' ହାତକୁ ବଢ଼ାଇଦେବ । ତା' ନରମ ପାପୁଲିରେ ନିଜ ହାତ ଛୁଆଁଇ ଉଷ୍ଣତା ଅନୁଭବ କରିବ ।

ଲିଲି ଆଉ ବୁଲୁକୁ ନେଇ କାର୍‌ରେ ଯିବାକୁ ଯଦି ସୁରଭାଇ କହନ୍ତି—

ତେବେ

ଅବଶ୍ୟ ସେତେ ନ ଜମିଲେ ବି ଲିଲି, ବୁଲୁଙ୍କୁ ପଛ ସିଟ୍‌ରେ ବସାଇ ମିନୁକୁ ଡ୍ରାଇଭିଂ ସିଟ୍ ପାଖରେ ବସାଇବ । ଏକ୍ସିଲେଟର ଦେଇ ଗତି ବଢ଼େଇ ଟର୍ଣ୍ଣିଂ କାଟିଲେ ମିନୁ ତା' ଆଡ଼କୁ ଢଳି ପଡ଼ିବ । ଡରିଯାଇ ତା' ହାତକୁ ଧରିନେଇ ଅନୁନୟ କରିବ—"ରମୁଭାଇ, ମୋତେ ଡର ଲାଗୁଛି, ଗାଡ଼ି ଧୀରେ ଚଳାଅ ।"

ସେତେବେଳକୁ ଆକାଶରେ ପାହାନ୍ତି ତାରା ବୁଡ଼ିଗଲାଣି । ଚାରିଦିଗ ଫର୍ଚ୍ଚା ଦେଖାଗଲାଣି । କାନରେ ତାର କୁନି କୁନି ପକ୍ଷୀଙ୍କ କାକଳି ଶୁଣିଲାଣି । ପିଲାଦିନୁ ଭାରି ଭଲ ଲାଗେ ତାକୁ ଏଇ ଛୋଟ ଛୋଟ ଚଢ଼େଇଙ୍କ କିଚିରି ମିଚିରି ଶବ୍ଦ ଶୁଣିବାକୁ । ମନରେ ଅସମ୍ଭବ ଦୁର୍ବଳତା ଯାକୁ ଶୁଣି ଶୁଣି ଗୁଣୁଗୁଣୁ ହୋଇ ନୂଆ ଗୀତର ସ୍ୱର କରିବାକୁ । କୁଆଡ଼େ କୁନି କୁନି ପକ୍ଷୀଙ୍କ କୂଜନ ବଡ଼ଙ୍କଠାରୁ ଖୁବ୍ ସୁନ୍ଦର ଆଉ ଶ୍ରୁତି ମଧୁର ।

ନିତ୍ୟକର୍ମ ସାରି ଭାଉଜଙ୍କଠାରୁ ଚା' କପେ ପିଇ ଦେଇ ବାହାରକୁ ପାଦ ରଖୁ ରଖୁ ରମୁର ହାତ ଘଣ୍ଟାରେ ହେଲାଣି ଆଠଟା ।

ବେଶ ପ୍ରସାଧନ ପ୍ରତି ସେ ଯଥେଷ୍ଟ ସଚେତନ । ସେଦିନ ସେ ଅତର ବୋଳା ଡ୍ରେସ୍ ପିନ୍ଧି ଦୋକାନରେ ପହଞ୍ଚି ବାପାଙ୍କ ଫଟୋରେ ସବୁଦିନ ପରି ଫୁଲମାଳ ଚଢ଼ାଇ ଗତଦିନର ଆକାଉଣ୍ଟସ ଦେଖି ଦେଇ ମ୍ୟାନେଜରଙ୍କୁ ଦାୟିତ୍ୱ ଦେଇ ବାହାରିଯିବ ନନ୍ଦନକାନନ—

କିନ୍ତୁ;

ମିନୁ ତାର ନୀଳ ଆଖି ନଚାଇ ଓଠରେ ଡାହାଣିଆ ହସ ଖେଳାଇ ତା' ଆଗକୁ ଆସି କହିଲା, ଆଜି ନନ୍ଦନକାନନ ଯିବା ପ୍ରୋଗ୍ରାମ କ୍ୟାନସଲ୍ । ନାନୀ ଠିକ୍ କରିଛି, ଆମେ ଆଜି ଟ୍ରେନ୍‌ରେ ମାଉସୀଙ୍କ ଘରକୁ ବୁଲିଯିବୁ ପାଞ୍ଚଦିନ ପାଇଁ । ଆଉ ତୁମେ ରମୁଭାଇ । ଲଞ୍ଚ୍ ଖାଇବା ପରେ ଆମକୁ ଷ୍ଟେସନ୍‌କୁ ଛାଡ଼ିବାକୁ ଯିବ । ହଁ ଆମେ ଯିବୁ ଟ୍ରେନ୍‌ରେ ହେଲା—ଭୁଲିବନି ।

ଆରେ ରମୁଭାଇ ତମେ ଯିବନା ନାହିଁ !

ତା ଅଜାଣାରେ କାର୍ଯ୍ୟକ୍ରମ ବଦଳି ଯାଇଥିବାରୁ ନିରାଶାରେ ତା' ଓଠରେ ଭାଷା ଫୁଟିଲାନି । ଆଉ କିଛି କହିଲା ନାହିଁ ।

ତମେ ରାଗିଛ ରମୁଭାଇ । କିଛି କହୁନ ଯେ ! ନିଶ୍ଚେ ମୁଁ ନନ୍ଦନକାନନ ଯିବି... କିନ୍ତୁ... ? ଆଜି ନୁହେଁ ? ହୁଏତ ଆମେ ଫେରିବା ପରେ । ଏଥିରେ ଏମିତି ରାଗିଗଲେ ଚଳିବ ରମୁଭାଇ—ମିନୁର କଣ୍ଠରେ ଗେହ୍ଲେଇ ହୋଇ କହୁଥିବାର ସ୍ୱର । ମିଛିମିଛିକା ମୁରୁକି ହସିଦେଇ ସେ ଚାଲିଯାଇଛି ଦୋକାନକୁ । ସେତେବେଳକୁ ଦୋକାନର ଅନ୍ୟାନ୍ୟ କର୍ମଚାରୀମାନେ ଆସି ନ ଥାନ୍ତି ।

କିରଣବିହୀନ ସୂର୍ଯ୍ୟମୁଖୀ ପରି ସମଗ୍ର ଚେହେରା ରାତି ଅନିଦ୍ରା ହେତୁ ଏବଂ ଅଭିମାନରେ ଘରୁ ବାହାରି ଆସିଥିବାରୁ କୋମଳ ସରାଗହୀନ ମୁହଁଟି ତାର ସାମନାରେ ଥିବା ଆଇନାରେ ବେଶ୍ ଜାଣି ପାରୁଥାଏ ସେ ।

ସେଲ୍‌ଟାକ୍ସ ସମ୍ବନ୍ଧୀୟ ଫାଇଲଟିକୁ ଓଲଟାଉ ଓଲଟାଉ ହଠାତ୍ ଏକ ମାଛି ଆସି ତା' ନାକର ଅଗ୍ରଭାଗରେ ବସିପଡ଼ିଲା । ସ୍ୱତଃ ତା ବାମହାତ ଚାଲିଗଲା ତାକୁ ଘଉଡାଇ ଦେବାକୁ । କ୍ଷଣକ ପରେ ପୁଣି ମାଛିଟା ଆସି ତାକୁ ବିବ୍ରତ କରିଛି ।

ଶଳା ଆଉ କୋଉଠି ତୋତେ ଜାଗା ମିଳୁନି ଠିକ୍ ମୋ ନାକଟାରେ ବସୁଛୁ । ବିରକ୍ତିଭରା କଣ୍ଠରେ ରମୁ ଗର୍ଜି ଉଠିଛି ।

ପକେଟରୁ ରୁମାଲଟା କାଢ଼ି ନାକଟାକୁ ଭଲରୂପେ ପୋଛିଦେଇଛି ।

ରମୁ ଏଥର ସମ୍ପୂର୍ଣ୍ଣ ଭାବରେ ଆକାଉଣ୍ଟସ୍ ଫାଇଲଟିକୁ ଯଥା ସ୍ଥାନରେ ଥୋଇଦେଇ ତା'ର ଏକାଗ୍ରତା ମିଳିମିଶି ଯାଇ ମାଛିଟା ଉପରେ ଏକନିଷ୍ଠ । ଆଶା ଏଥର ମାଛିଟି ନ ଆସିପାରେ । କିନ୍ତୁ କିଛି ସମୟ ପରେ ପୁନରାୟ ମାଛିଟା ତା' ମୁହଁ ପାଖରେ ଭଣ ଭଣ ହୋଇ ପୂର୍ବ ସ୍ଥାନରେ ବସିବା ପାଇଁ ଚେଷ୍ଟା କରିଛି । ଘରୁ ମନ ଖରାପରେ ଆସିଥିବାରୁ ସବୁଯାକ ବିରକ୍ତି ଠୁଳ ହୋଇଛି ମାଛିଟି ଉପରେ ।

ରମୁ ଏଥର ବାଧହୋଇ ବାକ୍‌ଶକ୍ତି ନଥିବା ଲୋକଟି ପରି ଠାରି ଠାରି ଯେପରି କାହାକୁ ଜୋରରେ ମନା କରୁଥିବା ଢଙ୍ଗରେ ମୁଣ୍ଡଟାକୁ ଖାଲି ହଲାଉଛି । ତଥାପି ମାଛିଟି ଭୃକ୍ଷେପ ନକରି ନାକର ଶେଷ ଭାଗରେ ବସିଯାଇ ଯେପରି ଅମୃତ ପାନ କଲାଭଳି ଆସନ ଜମେଇଦେଲା । ରମୁର ରାଗ ପୂରା ଦମ୍‌ରେ ମୁଣ୍ଡକୁ ଉଠି ତା' ଗୋରା ମୁହଁଟାକୁ ବିବର୍ଣ୍ଣ କରିଦେଲାଣି । ଫଁ କରି ଦୀର୍ଘ ନିଶ୍ୱାସଟିଏ ମାରି ଡାହାଣ ହାତ ପାପୁଲି ସାହାଯ୍ୟରେ ମାଛିଟିକୁ ଶେଷ କରିଦେବାକୁ ଉଦ୍ୟମ କରି ବ୍ୟର୍ଥ ହୋଇ ନିଜେ ନାକ ଉପରେ ଶକ୍ତ ଏକ ଚାପୁଡ଼ା ଖାଇ ଯନ୍ତ୍ରଣାରେ ମୁହଁଟାକୁ ଟାଣ କରିଦେଇଛି । ପରେ ଯନ୍ତ୍ରଣାକୁ ସହି ଦୃଷ୍ଟି ଦେଲା ମାଛିଟିର ଗତିଆଡ଼େ ।

କେତେବେଳେ ତା ଦୃଷ୍ଟିର ସୀମା ଭିତରେ ଓ କେତେବେଳେ ଦୃଷ୍ଟିର ବାହାରେ ମାଛିଟି ଉଡ଼ିଯାଉଥାଏ । ଯାହା ହେଲେ ବି ମାଛିଟିକୁ ଏଥର ଯେ କୌଣସି ଉପାୟରେ ମାରିବାକୁ ହେବ ।

ପାପୁଲିରେ ଗାଲ ଥୋଇ ତୁନୀ ହୋଇ ତାର ଗତିବିଧିକୁ ଲକ୍ଷ୍ୟ କରିଛି । ମାଛିର ଦିନକୁ ତାର ଦିନେ ହେବ । ମାଛି ମରିବ, ନଚେତ୍ ସେ ମରିବ । ଯାହା ହେଲେ ବି ସେ ଗୋଟେ କିଛି ଆଜି କରିବ, ଅଟଳ ପ୍ରତିଜ୍ଞା ।

ଏକଥା ସବୁ ଭାବୁ ଭାବୁ ମାଛିଟି ପୁଣି ତା ନାକରେ ବସିଯାଇ ପ୍ରାଣ ଭୟରେ ଉଡ଼ିଯାଇ ବସି ପଡ଼ିଛି ଫୁଲଦାନୀ ଉପରେ ।

ଠିକ୍ ସମୟ ଏବେ ଉପନୀତ । ମଉକା ନ ଛାଡ଼ି ହାତ ପାଖରେ ଥୁଆ ହୋଇଥିବା ଫୁଲଦାନୀ ଉପରେ ଖବର କାଗଜଟି ଗୁଡ଼ାଇ ଲଗାଇ ଦେଲା ପାହାର । ମାଛିଟି ଖସିଯାଇ ଉଡ଼ି ଉଡ଼ି ଯାଇ ବସିଗଲା ବାପାଙ୍କ ଫଟୋ ଉପରେ । ତାହା ପୁଣି ଠିକ୍ ତାଙ୍କ ନାକ ଉପରେ ।

ଆବେଗ ଓ ମାଛିଟିକୁ ନ ମାରି ପାରିଥିବାରୁ ନିରାଶର କୋହରେ ତା' ଦେହରୁ ଝାଳ ବାହାରି ସାର୍ଟ ପ୍ୟାଣ୍ଟ ଓଦା ପ୍ରାୟ ହୋଇଯାଇଥାଏ । ସାମାନ୍ୟ ଗୋଟେ ମାଛିକୁ ସେ ମାରିପାରିନି । ଗ୍ଲାନି ଓ ଲାଜରେ ଅନ୍ୟମାନଙ୍କୁ ଡାକି କହିବାକୁ ସେ ଉଚିତ ମନେ କଲାନି । ଯା ହେଉନା କାହିଁକି ଯେକୌଣସି ଉପାୟରେ ସୁଯୋଗ ଉଣ୍ଡି ମାଛିର ପୁନରାଗମନକୁ ଅପେକ୍ଷା କଲା ରମୁ ।

ଦେଖୁ ଦେଖୁ ଆଗ ସୋକେଶ୍‌ଟା ଉପରେ ଆକ୍ରମଣରେ ଘାଇଲା ହୋଇ ମାଛିଟି ବସିଯାଇ କ୍ଲାନ୍ତି ମେଣ୍ଟାଉଛି । ଏଇଟା ହିଁ ସୁଯୋଗ ।

ମୁଣ୍ଡରେ ଏକ ଶକ୍ତ ଝୁଙ୍କ । ରୁମ୍‌ର କଣରେ ଥିବା ବାଉଁଶ ବାଡ଼ି ଦ୍ୱାରା ନାଲି ନୀଳ ପର ଲଗା ଅଳନ୍ଧୁ ସଫା କରିବା ପାଇଁ ବ୍ୟବହୃତ ଷ୍ଟିକ୍ ଆଡ଼େ ତାର ଦୃଷ୍ଟି ପଡ଼ିଗଲା । ସତର୍କତାର ସହ ଷ୍ଟିକ୍ ଧରି ସ୍ପେଶାଲ ଡିଜାଇନ୍ ସୋକେଶ ଉପରେ ବସିଥିବା ମାଛିଟିକୁ ଯେମିତି ପାହାର ପିଟିଛି, ସଙ୍ଗେ ସଙ୍ଗେ ଝଣ୍ ଝଣ୍ ଶବ୍ଦ କରି ଚୂନା ହୋଇଗଲା ସୋକେଶ୍‌ଟି । ଭାଙ୍ଗିଯିବା ଶବ୍ଦ ତରଙ୍ଗରେ ତରଙ୍ଗାୟିତ ହୋଇଗଲା । ସେହି ମୁହୂର୍ତ୍ତରେ ତାର ସମସ୍ତ ଆତ୍ମଜ୍ଞାନ, ଫେରିପାଇଲା ତାର ବିବେକ ବୁଦ୍ଧି । ତା' ଆଖିରେ ନାଚିଗଲା ଭାଙ୍ଗିଥିବା ସୋ କେଶ୍ । ଯେଉଁଟିକୁ ସୁରଭାଇ ବେଲଜିୟମ୍‌ରୁ ଫ୍ଲାଇଟ୍ ବୁକ୍ କରି ଅଭିଜ୍ଞ ମିସ୍ତ୍ରୀ ଦ୍ୱାରା ଫିଟ୍ କରିଥିଲେ ଏଇ ସୋକେଶ୍‌ଟିରେ । ନିଜକୁ ଲଜ୍ଜିତ ମନେ କରି ସ୍ଥାଣୁ ହୋଇ ବସିପଡ଼ି ଚିନ୍ତା କଲା । ସୁରଭାଇ ଯଦି ଏବେ ଆସିବେ କ'ଣ କହିବେ ତାକୁ ? ସତକୁ ସତ କିଛି ସମୟ ପରେ ସୁରଭାଇ ଆସି ପହଞ୍ଚିଗଲେ । ଦାମୀ ସୋକେଶ୍‌ର ଅବସ୍ଥା ଦେଖି ହତଚକିତ ହୋଇଗଲେ ସେ । କାରଣଟି ଜାଣିବାକୁ ଚାହିଁବାରୁ ଦୁନିଆ ଯାକର ସବୁ ଲଜ୍ଜା, ସଙ୍କୋଚ, ଆଶଙ୍କା ରମୁକୁ ଆବୋରି ବସିଲା ଯେମିତି । କ'ଣ ବା କହିବ ସେ ? ସାମାନ୍ୟ ଗୋଟିଏ ମାଛି ପାଇଁ ଯେ ଏ ଅଘଟଣ ! ଏ କଥା କ'ଣ ଖୋଲି କୁହାଯାଇପାରେ ?

ତୁହାଇ ତୁହାଇ ଭାଇଙ୍କର ସେହି ଗୋଟିଏ ପ୍ରଶ୍ନର ପୁନରାବୃତ୍ତି । ପାରିଲାନି ରମୁ ।

ବାଧ୍ୟ ହୋଇ ସବୁ ସତକଥା କହିଦେଲାପରେ... ଖୁବ୍ ଆଶଙ୍କିତ ମନରେ ସେ ଅପେକ୍ଷା କଲା ଭାଇଙ୍କର ଗାଳିକୁ । ହଠାତ୍ ହସ ଶୁଣି ମୁଣ୍ଡ ଟେକି ଚାହିଁଲା ରମୁ । ତାର ଏଇ ଅପକର୍ମ ପାଇଁ ରାଗିବା ପରିବର୍ତ୍ତେ ହୋ ହୋ ହୋଇ ହସିଲେ ସୁରଭାଇ ।

ପୁଣି ଗମ୍ଭୀର ହୋଇଉଠିଲେ ସେ ।

ହୃଦସ୍ପନ୍ଦନ ବଢ଼ିଗଲା ରମୁର ।

କିନ୍ତୁ ନା....

ଏଥର ଗାଳି ନୁହେଁ ଆକଟ ।

ଭର୍ତ୍ସନା ନୁହେଁ ଆଦେଶ ଦେବାକୁ ଆରମ୍ଭ କରିଥିଲେ ସୁରଭାଇ ।

ନିଯୁକ୍ତିପତ୍ର ଆସିଥିବା ନୂଆ ଚାକିରିରେ ଯୋଗଦେବା ପାଇଁ । ଆସନ୍ତା କାଲି ସକାଳେ ଘର ଛାଡ଼ିବ ରମୁ । ତାର ମନୋବୃତ୍ତି ଆଚାର ବ୍ୟବହାର ଉପରେ ଟିପ୍ପଣୀ ଦେଉଥିଲେ ସୁରଭାଇ ।

''ଜୀବନରେ ଉନ୍ନତି କରିବାକୁ ହେଲେ ଧୈର୍ଯ୍ୟ ସହନଶୀଳତା ଆଉ ଏକାଗ୍ରତା ଏକାନ୍ତ ଅପରିହାର୍ଯ୍ୟ । ବିଶେଷତଃ ପ୍ରତିମୁହୂର୍ତ୍ତରେ ସର୍ବସାଧାରଣ ସଂସ୍ପର୍ଶରେ ଆସୁଥିବା ଜଣେ ବ୍ୟବସାୟୀ ପକ୍ଷରେ ଏହା ଅତି ଜରୁରୀ ଆବଶ୍ୟକ । ଚାକିରି ଜୀବନର ଶୃଙ୍ଖଳା ଭିତରେ ସେହି ଗୁଣତକ ତାକୁ ଆଗ ଆୟତ୍ତ କରିବାକୁ ହେବ । ତାପରେ ପୁଣି ବ୍ୟବସାୟ ।

ମୌନ ରହି ସମ୍ମତିର ଲକ୍ଷଣ ପ୍ରକାଶ କରିବା ବ୍ୟତୀତ ରମୁର ଗତ୍ୟନ୍ତର ନ ଥିଲା ।

O

# ମୂର୍ତ୍ତି ଆଖିରେ ଲୁହ

ଅହରହ ନିଜ ସ୍ୱାର୍ଥ । ଅର୍ଥ ପଛରେ ଦୌଡ଼ୁଛି ଜୀବନ ବିକାଶ ଦାସ । ଏଠିକା ସବକଲେକ୍ଟର । ସ୍ତ୍ରୀ ମଧୁମିତାର କମ୍ ସହଯୋଗ ନୁହେଁ ଏଥିରେ । ବଜାରରେ ନୂଆ ଜିନିଷ ଦେଖିଲେ ସେ ବରାଦ କରିଦିଅନ୍ତି ସଙ୍ଗେ ସଙ୍ଗେ ।

ଏଇଟା ଦରକାର ସେଇଟା ଜରୁରୀ, କେତେ କାମରେ ଆସିବ, ଏମିତି କେତେ ଫେରାଦ । ଆହୁରି ପୁଣି କେବୁଲ୍ ଟିଭି ଆସିବା ପରେ ସିରିଏଲ୍‌ଗୁଡ଼ିକରେ ତାଙ୍କ ଘରେ ନଥିବା ଜିନିଷ ଯଦି ପସନ୍ଦ କରିଦେଲେ, ଯୋଉଠୁ ହେଲେ ମଗାହୋଇ ଆସିଯିବ ସେଗୁଡ଼ିକ । ନ ମିଳୁ ଥିବା ଜିନିଷସବୁ ଏବେ ମିଳିଲାଣି ବଜାରରେ । ମଧୁମିତାଙ୍କ ଚାହିଦା ଜାଣି ଦୋକାନିମାନେ ମନଇଚ୍ଛା ମୂଲ୍ୟ ବି ବଢ଼ାନ୍ତି ।

ଅତ୍ୟାଧୁନିକ ଢଙ୍ଗରେ ମଧୁମିତା ଘରଟି ସଜେଇଛନ୍ତି । କ୍ୱାଟର୍ସ ମିଳିଥିଲେ ବି ସେଠି ରହୁନାହାନ୍ତି ସେମାନେ । ନିଜ ଘରେ ରହିବାର ସଉକି ଅନ୍ୟଠି ମିଳନ୍ତା କିପରି ! ଏ ସହରର ଯେତେସବୁ ବଢ଼ିଆ ବଢ଼ିଆ ଘର ତୋଳା ହୋଇଛି ଏବେକୁ ସବୁଠୁ ଜୀବନ ବିକାଶର ଘରଟି ବେଶୀ ପସନ୍ଦଯୋଗ୍ୟ ।

ମୁଁ ମର୍ଣ୍ଣିଂୱାକ୍‌ରେ ବାହାରିଗଲେ ଫେରିବାବେଳେ ଜୀବନ ବିକାଶର ଘରଆଡ଼େ ବୁଲିଆସେ । ମଧୁମିତା ଘରଯାକ ବୁଲାନ୍ତି । ଚା' ଦିଅନ୍ତି । ସେତେବେଳକୁ ଜୀବନ ବିକାଶ ଉଠି ନଥାଏ ।

ପଚାରିଲେ ମଧୁମିତା କହନ୍ତି, ''ରାତିରେ ବିଳମ୍ବରେ କ୍ଲବରୁ ଫେରିଲେ । ଉଠିବା ଡେରି ହେବ...''

ଅତୀତ ଦିନଗୁଡ଼ିକୁ ମୁଁ ମନେ ପକାଏ । ହାଇସ୍କୁଲରେ ଆମେ ପଢୁଥିଲୁ । ଜୀବନ ଭଲ ପଢ଼େ । କ୍ଲାସ୍‌ରେ ଫାଷ୍ଟ ହୁଏ । ଭୋରରୁ ଉଠିବାର ଅଭ୍ୟାସ ଥିଲା ତା'ର । ପଢ଼ା ଛଡ଼ା ଅନ୍ୟ କଥା କହିଲେ ଚିଡୁଥିଲା ସେ । ସ୍କୁଲ ପରିଦର୍ଶକ ପଚାରିଲେ ଜୀବନର ସ୍ପଷ୍ଟ ଉତ୍ତର ଥିଲା, ସେ ଶିକ୍ଷକ ହେବ । ଆଇ.ଏସ୍‌ସି. ପଢ଼ିଲା ଯାଏଁ ଏ ଲକ୍ଷ୍ୟ ନେଇ ସେ ପଢୁଥିଲା । କିନ୍ତୁ ପରେ ବଦଳିଗଲା ଏବଂ ସିଭିଲ୍ ସର୍ଭିସ୍‌ରେ ପଶିଗଲା । ଆମେ କେତେକ କିଛି ନ ବୁଝି ଶିକ୍ଷକ ବୃତ୍ତିକୁ ଖୁବ୍ ଉଚ୍ଚ ଭାବୁଥିଲୁ । ଆମ ସମ୍ମୁଖରେ ଶିକ୍ଷକମାନଙ୍କୁ ଛାଡ଼ିଦେଲେ ଅନ୍ୟ ମଣିଷ ପ୍ରାୟ ଆମ ସଂସ୍ପର୍ଶରେ ସେମିତି ଆସୁ ନ ଥିଲେ । ତେଣୁ ଆମେମାନେ ଅଜ୍ଞ ଥିଲୁ ବାହାର ଦୁନିଆର ରଙ୍ଗ ଢ଼ଙ୍ଗ ସହ । ଆମ ଆଗରେ ଆଦର୍ଶ ଥିଲେ କେବଳ ଆମର ଶିକ୍ଷକମାନେ । ଏଣୁ ଆମେ ଅଧିକାଂଶ ଭାବୁଥିଲୁ ଆମେ ଶିକ୍ଷକ ଅଧ୍ୟାପକ ହିଁ ହେବୁ । ପୂର୍ବରୁ

ଯେତେବେଳେ ଟ୍ରେନିଂ ପରେ ଧରା ଧରି କରି ଏଠି ରେଭିନ୍ୟୁ ଅଫିସର ଭାବେ ପୋଷ୍ଟିଂ ହେଇଥିଲା ଥରେ ପଚାରିଥିଲି ଜୀବନକୁ, "ଆରେ ଜୀବନ ! ଶିକ୍ଷକ କି ଅଧ୍ୟାପକ ନିଶା ତୋର କେବେଠୁଁ ଚାଲିଗଲା । ପ୍ରଶାସନ ଚାକିରିରେ କ'ଣ ଶାନ୍ତି ଅଛି ?"

ନୀରବ ରହିଥିଲା ଜୀବନ ବିକାଶ । ଘର ତିଆରି କାମ ଆରମ୍ଭ ହୋଇଯାଇଥିଲା ତା'ର । ସେ ବହୁତ ବ୍ୟସ୍ତ ରହୁଥିଲା । ଦେଖାହେଲେ ଦୁଇ ତିନି ମିନିଟ୍ କଥା ହେଲେ ଢେର । କେତେ ଆଳ ଦେଖାଇ ସେ ଚାଲିଯାଉଥିଲା ।

ହଁ, ଶିକ୍ଷକ ହୋଇଥିଲେ ଏତେ ଥାଟବାଟ କ୍ଷମତା କୁଆଡ଼େ ଥାଆନ୍ତା—ଘରତିଆରି ସିନା ସେ କରୁଛି, କାମଯାକ ତା'ର ଅଧସ୍ତନମାନେ କରିଦେଉଛନ୍ତି ।

ଅବଶ୍ୟ ମାଷ୍ଟ୍ରମାନେ ୟୁଜିସି ଦରମା ନେଇ ଅଭାବ ମେଣ୍ଟୁନାହିଁ ଯେ, ଜଣେ ଜଣେ ଗୋଟେ ଗୋଟେ ଟ୍ୟୁଟରିଆଲ କୋଚିଂ ସେଣ୍ଟର ଖୋଲି ପ୍ରଶାସନିକ ଅଫିସରଙ୍କଠୁଁ ଟପିଗଲେଣି । ମଣିଷ ଗଢ଼ିବା ନାଁରେ ଶିକ୍ଷା ସଂସ୍କାର କରୁ କରୁ ଗୁଡ଼ାଏ ଅସୁର ସୃଷ୍ଟିକରି ସର୍ବୋଚ୍ଚ ଦରମା ନେଇ କେବଳ ଦେଶର ଅର୍ଥନୀତିକୁ ଖୋଳ କରିଦେଲେଣି ।

ଆଗର ଆଦର୍ଶ ନୀତି ଆଚରଣ ବିଚାର ବ୍ୟକ୍ତିତ୍ୱ ତୁଲିକି ଗଲାଣି । ନୀତିନିଷ୍ଠ ଶିକ୍ଷକଟିଏ ଖୋଜିଲେ ମିଳିବେ ନାହିଁ । ଯେତେବେଳେ ସମଗ୍ର ସମାଜ ଖାଲି ପ୍ରତିଯୋଗିତା ସର୍ବସ୍ୱ ହୋଇଉଠୁଛି, ସେଠି ଶିକ୍ଷକମାନେ ପ୍ରକାର ପ୍ରକାର ପ୍ରତିଯୋଗୀତା ଲାଗି ଛାତ୍ରଙ୍କୁ ଘୋରିବାଟି ପାଠ ପିଆଉଛନ୍ତି; ଯୋଉମାନେ ଏ ଘୋଡ଼ା ଦୌଡ଼ରେ ହାରିଯାଉଛନ୍ତି ପ୍ରାୟତଃ ସେମାନେ ହତାଦାରୀ ଭିତରେ ଜିଇଁ ନେବାକୁ ବାଧ ହେଉଛନ୍ତି ।

ଯାହାହେଉ ପ୍ରତିଯୋଗିତାରେ ଉତ୍ତୀର୍ଣ୍ଣ, ମନୋନୀତ କମିଟି ଦ୍ୱାରା ଯୋଗ୍ୟ ବିବେଚିତ ଜୀବନ ବିକାଶ ଆଜି ସବ୍‌କଲେକ୍ଟର, ଆଉ ଆମେ ଅନେକ ଆଜି ପରାଜିତ ସୈନିକ । ପରାହତର କାଳିମାକୁ ମଥାରୁ ଓହ୍ଲେଇ ନିଜ ନିଜ ଗୁଜୁରାଣରେ ନିମଜ୍ଜିତ । ଜୀବନବିକାଶର ପଦୋନ୍ନତି ପୁଣି ପୂର୍ବସ୍ଥାନରେ ଶୁଣି ଖୁସି ହେଇଥିଲି । ତାକୁ ଅଭିନନ୍ଦନ ଜଣେଇଥିଲି ।

କିନ୍ତୁ ...

ଯାହା ଯେତିକି ଦେଖୁଛି, ସେ ଦିନ ଆଉ ନାହିଁ । ଏଇ ମାଟି ପାଣି ପବନରେ ବଢ଼ିଥିବା ଦେଶୀଲୋକଗୁଡ଼ା ଯେ ଏତେ ଶୀଘ୍ର ବିଦେଶୀ ହେଇପଡ଼ନ୍ତି; ଅତୀତକୁ ଚତୁରପଣରେ ଉଝେଇ ଦିଅନ୍ତି; ସତେଯେମିତି ଆସନଗାଦୀ ଭିତର ଦେଇ ତାଙ୍କ ଦେହରୁ ଦେଶୀ ରକ୍ତ ସବୁ ନିଗାଡ଼ି ହେଇପଡୁଛି ଆଉ ପୁରୁଷ ପୁରୁଷ ଧରି ପରାଧୀନତାର ଦୂଷିତ ବିଦେଶୀ ଲହୁ ପଶିଆସି ଦେଶୀ ଲୋକଙ୍କୁ ଖେଦି ଖିଙ୍କାରି ଉଠୁଛି କ୍ଷମତାର ଅହମିକାରେ । ଏସବୁ ଭାବିଲେ ମୋ ଛାତି ଭିତରେ କିଏ ଯେମିତି କୋରି ପକାଉଛି ।

ଗୋଟାଏ ଭାବପ୍ରବଣତା ମଧ୍ୟରେ ସ୍ୱାଧୀନୋତ୍ତର ଏତେଗୁଡ଼ାଏ ବର୍ଷ ଯେ ବିତିଗଲାଣି । ଯେଉଁମାନଙ୍କ ତ୍ୟାଗ, ଆତ୍ମୋତ୍ସର୍ଗ ଓ ବଳିଦାନରେ ଆମ ପୂର୍ବଜ ବିଦେଶୀଙ୍କୁ ତଡ଼ି ଆମ ଲୋକଙ୍କୁ ଶାସନ ଡୋର ଧରାଇଦେଲେ, ସେଇ ଶାସକ ଆମକୁ ଠିକ୍ ଦିକ୍‌ଦର୍ଶନ ଦେଉଛନ୍ତି ତ ? ଏ ସ୍ୱାଧୀନତା ପୁଣି ହାତଛଡ଼ା ହେଇଯିବ କି ? ଅନେକ ପ୍ରଶ୍ନ...

ଯତ୍‌ସାମାନ୍ୟ ପରିଶ୍ରମ କରି ଦିନରେ ତଳିଆଙ୍କୁ ନାଲି ଆଖି ଦେଖାଇ ଦି' ତିନିଟା ନଥିରେ ସନ୍ତକ ଦେଇଦେଲେ ଯୋଉଠି ଦେଶ ସେବା କଲୁ କହି ଡିଣ୍ଡିମ ପିଟୁଛନ୍ତି, ସ୍ତରକୁ ସ୍ତର ହାତଗୁଣ୍ଡା; ନ ହେଲେ, କୋର୍ଟ କଚେରିବାଲାଙ୍କୁ ଘୁଷ୍ ଦେଇ ନିଜ ଦରମା ବଢ଼େଇବାରେ ବ୍ୟସ୍ତ ସେଠି ଅନ୍ୟମାନଙ୍କ କଥା ପଚାରେ କିଏ ? ଯେତେ ଶୁଷ୍କ ପଥର ହେଉ ପଛେ ରାଜନୀତିଆଙ୍କ ହାତବାରିସି ସାଜି ଚିପୁଡ଼ି ଚିପୁଡ଼ି ପଥରରୁ ପାଣି ବାଲଟିଟିଏ ବାହାର କରିଦେବେ ନିଶ୍ଚୟ । ଯା'ର ପ୍ରତିକାର ନାହିଁ । ପ୍ରଶାସକ ଓ ନେତାଙ୍କ ହାତରେ ପ୍ରଶାସନ ଓ ଶୃଙ୍ଖଳା ପାଇଁ ବେଠି କରୁଥିବା ଜୀବନଯାକ କିଛି କାମ ନ କରି ଟହଲୁଥିବା ନିଶ ଫୁଲେଇ ସେମାନଙ୍କ ନିର୍ଦ୍ଦେଶ ଅନୁସାରେ ଦାରୋଗାଗୁଡ଼ା ମାଡ଼ି ଆସିବେ, ଏମିତି ଠେଙ୍ଗେଇବେ ଯେ ବାପାକୁ ମଉସା ଡାକିବେ ଲୋକେ । ନିଜ ଆଖିରେ ଦେଖୁଥିବା ଘଟଣା ଇଏ ।

କଣ୍ଡୁରିଚରଣ ଥିଲେ ସ୍ୱାଧୀନତା ସଂଗ୍ରାମୀ, ଜନସେବକ ଓ ଆଦର୍ଶ ଶିକ୍ଷକ । ଜମିଦାରୀ ଅମଳରେ ତାଙ୍କୁ ଦୁଇ ଏକର ଜମି ରାୟବାହାଦୁର ହରିବଲ୍ଲଭ ରାୟ ଦେଇଥିଲେ । ଜମିଦାରୀ ଯିବାବେଳକୁ ମୂଳ ଦଲିଲ ଖାତା ଖତିଆନ ସବୁ ସରକାରଙ୍କୁ ହସ୍ତାନ୍ତର ହେଇଥିଲା । ପଟ୍ଟା ମଧ୍ୟ ମିଳିଥିଲା ।

କଣ୍ଡୁରିଚରଣ ସାତ ବର୍ଷ ହେଲାଣି ସେ ପୁରକୁ ଚାଲିଗଲେଣି । ସେ ଦି' ଏକର ଜମି ଉପରେ କଣ୍ଡୁରିଚରଣଙ୍କ ଏକମାତ୍ର ପୁଅ ଦୀନମଣି ମାଛ, କଦଳୀ ଓ ନଡ଼ିଆ ଚାଷ କରି ନିଜ ପରିବାର ଚଳାନ୍ତି । ବାପାଙ୍କ ଆଦର୍ଶରେ ଅନୁପ୍ରାଣିତ ଦୀନମଣି ଚାକିରି କରିନାହାନ୍ତି । ସ୍ୱାଧୀନ ଓ ବଡ଼ ନିର୍ଭୀକ । ଦେଶର ଏ ଅବସ୍ଥା ଲାଗି ଦୁଃଖିତ । ଆଜିକାଲି ଅନ୍ୟମାନଙ୍କ ପରି ଧନ ଆଉ ଅର୍ଥ ପଛରେ ଦୌଡ଼ନ୍ତି ନାହିଁ । ନିଛକ ନିସର୍ଗ ଓ ନିଃସ୍ୱାର୍ଥୀ ମଣିଷଟିଏ ନିଜ ଜୀବନଚର୍ଯ୍ୟାକୁ ସେ ସରଳଭାବରେ ଗଢ଼େଇ ନେବାକୁ ଯେତେ ପ୍ରତିବନ୍ଧକ ଆସିଲେ ବି ସେ ସବୁକୁ ନିଜ ନିଷ୍ଠା ଓ ପିଢ଼ି ପିଢ଼ି ଧରି ଆଦର୍ଶକୁ ମନେପକାଇ ଟାଳି ଦେଇଛନ୍ତି । ହେଲେ ସେ ଏଇ କେତେ ଦିନ ଧରି ବଡ଼ ବିବ୍ରତ ।

ତାଙ୍କ ସହ ମୋର ବନ୍ଧୁତା ଅନେକ ଦିନର ।

ସେଦିନ ସେ ମନମାରି ବସିଥିଲେ ତାଙ୍କ ଘରେ । ଘର ପଛର ସାମ୍ନାରେ

ତାଙ୍କର ପୋଖରୀ । ହୁଡ଼ାରେ କଦଳୀ ବୁଦାରେ କାନ୍ଦି କାନ୍ଦି କଦଳୀ । ଗଛରେ ଉପରେ ଥାକ ଥାକ ନଡ଼ିଆ । ମୁଁ ପହଞ୍ଚିଲି । ତଥାପି ସେ କ'ଣ ଭାବୁଥିଲେ । ମୋ ଉପସ୍ଥିତି ସେ ବାରିପାରୁ ନ ଥିଲେ । ତାଙ୍କ ଭରା ଆଖିରେ ବିଷାଦ ଜର୍ଜରିତ ଉତ୍କୀର୍ଣ୍ଣ ମେଘ । ସତେଯେପରି ଏଇ ବରଷିଯିବ । ମତେ ଦେଖି ଲୁଚେଇ ଆଖି ପୋଛିଲେ ଦୀନମଣି । ସକାଳର ଆଲୁଅ ପରି ଚିର ଉତ୍‌ଫୁଲ୍ଲିତ ନିପଟବାଏ ମଣିଷଟିର ପୁଣି ଦୁଃଖ କ'ଣ ? ଜୀବନପ୍ରବାହର ଅନେକ ପ୍ରତିକୂଳ ସ୍ରୋତରେ ସରଳ ସଂଗିତ ଭାବରେ ଚାଲୁଥିବା ଏକୁଟିଆ ଏଇ ଲୋକଟିର ପ୍ରତିବନ୍ଧକ କ'ଣ ଥାଇପାରେ ? ପଚାରିଦେଲି । ଉତ୍ତର ଛଳରେ ନିଜ ଦୁଃଖ ଓ ନିର୍ଯ୍ୟାତନାର ଆବେଗକୁ ସେ ଚେଷ୍ଟାକରି ଚାପି ରଖିପାରିଲେ ନାହିଁ ।

ତାଙ୍କ ପରିବାରର ଭାତହାଣ୍ଡି ଆଜି ବିପନ୍ନ । ଏଇ ସମ୍ମୁଖରେ ଥିବା ବଗିଚାରେ ଗଢ଼ିଉଠିବ ଇଂରାଜୀ ମିଡ଼ିଅମ୍ ବିଦ୍ୟାଳୟ । ସବ୍‌କଲେକ୍ଟରଙ୍କର ନୋଟିସ୍ ଉପରେ ନୋଟିସ୍ । ସେ କିଛି ଶୁଣିବାକୁ ନାରାଜ । ଶିକ୍ଷାମନ୍ତ୍ରୀ ଓ ରାଜସ୍ୱମନ୍ତ୍ରୀ ଏଥିପାଇଁ ଆଗ୍ରହୀ । ସ୍ୱୟଂ ମୁଖ୍ୟମନ୍ତ୍ରୀ ମଧ୍ୟ ଅନୁମୋଦନ କରିଦେଲେଣି ।

ମୁଁ ପଚାରିଦେଲି, ''ଆପଣଙ୍କ ଦଲିଲ୍ କାଗଜପତ୍ର ସବୁ ଠିକ୍ ଅଛି କି ନାହିଁ ?''

ସେ ମୁଣ୍ଡରେ ହାତ ଦେଇଥାଆନ୍ତି । କହିଲେ, ''କାଗଜପତ୍ର ଠିକ୍ ଅଛି ହେଲେ ବାପାଙ୍କ ଦେଇଥିବା ପେଡ଼ିଟା ଭିତରେ ବନ୍ଧାବନ୍ଧି ହେଇ ସେଇଟି ଥିଲା । ଗତ ମହାବାତ୍ୟାରେ ସେଇଟା କୋଉଠି ପଡ଼ିଲା—ଯେତେ ଖୋଜାଖୋଜି କଲେ ବି ମିଳୁନି ।''

—ତେବେ ନକଲଟା ତହସିଲରୁ ଆଣିବା—ଜୀବନ ବିକାଶ ଯେ ଏଇଠି ସବକଲେକ୍ଟର ।

—ହଁ, ମୁଁ ତହସିଲଦାରଙ୍କୁ କେତେ ଥର ଯେ ଦେଖାକଲିଣି ଫି ଲଗେଇ ଦରଖାସ୍ତ ଦେଲିଣି ତା'ର ହିସାବ ନାହିଁ । ଶେଷରେ କହିଲେ, ସବକଲେକ୍ଟରଙ୍କୁ ଦେଖା କର ।

ଶୁଣୁଛି ସେଠି ବି ମୋ ନଥି ମିଳୁନି, ନକଲ ଆଉ କୋଉଠି ମିଳିବ... । ତାଙ୍କର ହତାଶ ସ୍ୱର ।

ଆଶ୍ୱାସନା ଦେବାକୁ ଯାଇ କହିଲି, ''ଜୀବନ ବିକାଶ ମୋର ସହପାଠୀ ବନ୍ଧୁ । ସେ ନିଶ୍ଚୟ ସାହାଯ୍ୟ କରିବ ।''

ଜୀବନ ବିକାଶର ଘରେ ଆମେ ପହଞ୍ଚିଲୁ । ସେ ଗୋଟାଏ ନଥି ଉପରୁ ନଜର ଉଠେଇ ଆମକୁ ଦେଖିଲା ।

ମୁଁ ତାକୁ ବୁଝାଇବାକୁ ଯାଇ କହିଲି—ଦୀନମଣି ବାବୁ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ କଣ୍ଟୁରିଚରଣ ଦାସଙ୍କ ଏକମାତ୍ର ପୁତ୍ର । ସେଇ ଦୁଇ ଏକର ଜମି ହିଁ ତାଙ୍କ ପରିବାରର ସମ୍ବଳ । ମହାବାତ୍ୟାରେ ଦଲିଲଟି କେଉଁଠି ନଷ୍ଟ ହୋଇଯାଇଛି । ଶୁଣୁଛୁ, ମୂଳ ଦଲିଲ ସହ ନଥିଟି ତୋ କାର୍ଯ୍ୟାଳୟକୁ ଆସିଛି । ସେ ଦଲିଲରେ ଜମିଦାର ରାୟ ବାହାଦୁର ହରିବଲ୍ଲଭଙ୍କ ଦସ୍ତଖତ ରହିଛି । ଏଣୁ ସରକାର ଜମିରୁ ଦୀନମଣିଙ୍କୁ ବେଦଖଲ କରିବା ସମ୍ଭବ ନୁହେଁ ।

ଅଫିସରି ଆଦବ କାଇଦାରେ ଜୀବନ ବିକାଶ ଦାସ ସିଧା ମନା କରିଦେଲା ଏ କ୍ଷେତ୍ରରେ ସାହାଯ୍ୟ କରିପାରିବ ନାହିଁ । ଫୋର୍ସ ନେଇ ସେ ଜମିକୁ ଦଖଲ କରାଯିବ ଓ ଶିକ୍ଷାନୁଷ୍ଠାନ ହେବ ହିଁ ହେବ ।

ଜୀବନ ବିକାଶ ବୋଧହୁଏ ଭୁଲିଗଲା ମୁଁ ତା'ର ବାଲ୍ୟବନ୍ଧୁ । ଆମେ ଉଠି ଆସିଲୁ । ମଧୁମିତା ଚା' ନେଇ ଥୋଇଲେ ।

ଏଇମାନେ ଦେଶସେବକର ଭୂମିକା ନେଇଛନ୍ତି । ଦେଶସେବାର ସମସ୍ୟାକୁ ସଦା ସନ୍ତୁଳି ନିଜ ବପୁ ବଢ଼ଉଛନ୍ତି । ଦରିଦ୍ର ଜନତାଙ୍କୁ ଦୟା ଦେଖାଇବାକୁ ଯାଇ ଟିଭିରେ ଫଟୋ ଉଠାଉଛନ୍ତି—ଭୋଜି ଭାତରେ ଦିନ କଟୁଛି—ମଦ ପିଇ କ୍ଲବରେ ଗଡୁଛନ୍ତି—କୋଠା ଉପରେ କୋଠା ତୋଳୁଛନ୍ତି—ଏମାନଙ୍କଠୁ ନ୍ୟାୟ ଆଶା କରିବା ବୃଥା ।

ଜୀବନ ବିକାଶର ମନୁଷ୍ୟତ୍ୱରେ କଳଙ୍କ ଲେପି ହେଇଛି । ତା'ର ମଣିଷପଣିଆ ନାହିଁ । ଏ ବଞ୍ଚିବାରେ କି ଲାଭ ? ଯଦି ଜନ୍ମଜନ୍ମାନ୍ତର ଥାଏ, ତା'ହେଲେ ନେ ଜୀବନ ବିକାଶ ! ଏଭଳି ପଦବୀ ମଣ୍ଡନ କରି ମଣିଷ ତଳକୁ ଖସିଛୁ । ତୋତେ ଆଉ ମଣିଷ ଜନ୍ମ ମିଳିବନି । ଖସିଯିବୁ କେତେ ତଳକୁ...

ଆଉ ତତେ ଯିଏ ମନୋନୟନ କରିଛି, ଏ ପଦବୀରେ ଅଧିଷ୍ଠିତ କରିଛି, ସେ କମିଟିର ସଭ୍ୟମାନେ ତୋଠୁ ଆହୁରି ଅପରାଧୀ, ପାପୀ ଓ ଦୁରାଚାରୀ... । ସେମାନେ ନରକର କୀଟ ହେବେ କାଳ କାଳ । ହୃଦୟକୁ ନ ପରଖି ଏକ ବିଦେଶୀ ଭାଷାକୁ ଯିଏ ଘୋଷା ଘୋଷି କରି ପ୍ରାଞ୍ଜଳ ଭାବରେ ବଖାଣିଦେଲା—ମାତୃଭାଷା କହି ଜାଣୁଥିବା ଲୋକଙ୍କୁ ସେଇ ବିଦେଶୀ ଭାଷାରେ ଯେତେ ପ୍ରତାରିତ କରିପାରିଲା ସିଏ ସେତେ ପାରଙ୍ଗମ । ଧନ୍ୟ ଧନ୍ୟ କହିବ ତମର ଏ ପ୍ରଶାସନକୁ ।

କୋଉ ଜନ୍ମରେ ତପସ୍ୟା ବଳରେ ମଣିଷ ଜନ୍ମ ପାଇଛ; କିନ୍ତୁ ତା'ର ମହତ୍ୱ ନ ବୁଝି ନିଜ ସ୍ୱାର୍ଥ ଲାଗି ନୀତିର ଦୁରୁପଯୋଗ କରୁଛ ତ୍ୟାଗ ବଦଳରେ ଭୋଗ, ମତ ବଦଳରେ ମତାନ୍ଧତା, ସେବା ନାଁରେ ଆତ୍ମସେବା କରୁଛ, ଜନତାଙ୍କ ରକ୍ତ ଶୋଷୁଛ, ଶହେରୁ ଅନେଶତ ବେଇମାନଙ୍କୁ ନେଇ କେମିତି ଚଳିବ ଏ ଦେଶ ? କାହିଁଗଲା ଦେଶାତ୍ମବୋଧ କଣ୍ଟୁରିଚରଣଙ୍କ ପରି ଅନେକଙ୍କ ତ୍ୟାଗ ଓ ସ୍ୱାଭିମାନ ?

ମୁଁ ପ୍ରକୃତିସ୍ଥ ହୋଇଗଲି । ଜୀବନ ବିକାଶ ନିରୁତ୍ତର ଥିଲା । ଆମେ ଫେରିଆସିଲୁ । ମଧୁମିତା ଥୋଇଥିବା ଚା' ସେମିତି ଥଣ୍ଡା ହେଉଥାଏ । କିଏ ଶୁଣିବ ଏତେ କଥା ? ମନ ଆନ୍ଦୋଳିତ ହେଲା ।

ମନ ତଳର ନିଆଁ ହୁତ୍ କି ଜଳି ଲିଭିଗଲା ସିନା ହେଲେ ଅବିଚାରର ଭୁକ୍ତଭୋଗୀ ଦୀନମଣିଙ୍କର ଅନ୍ତର୍ବେଦନା ଯେ ସୀମା ଟପି କେତେ କୁଆଡ଼େ ମାଡ଼ି ଯାଉଥିବ ମୁଁ କଳନା କରିପାରୁ ନ ଥାଏ ।

ଲକ୍ଷ୍ୟ କଲି ତାଙ୍କ ମୁଖମଣ୍ଡଳକୁ । ଫେରିବା ବାଟଯାକ ସେ ନୀରବ । କିନ୍ତୁ ସେ ନୀରବ ଭାଷା ମୁଁ ପଢ଼ିପାରୁଥାଏ ।

ନିଜ ରକ୍ତଦେଇ ବ୍ରିଟିଶର କୋରଡ଼ାମାଡ଼ ଖାଇ ବର୍ଷ ବର୍ଷ କାରାବରଣ କରି ଦେଶୀ ଲୋକଙ୍କୁ ଶାସକ ଆସନ ଦେଇଦେବା ବୋଧହୁଏ ମସ୍ତବଡ଼ ଭୁଲ୍ ହୋଇଗଲା ଆମ ପୂର୍ବସୂରୀଙ୍କର ।

ଏ ବାକ୍ୟଟି ଯେତେ ଅପ୍ରିୟ ହେଲେ ବି ୟା'ର ପ୍ରାସଙ୍ଗିକତା ରହିଛି ଏବଂ ମର୍ମେ ମର୍ମେ ଭିତରେ ଭିତରେ ଉଚ୍ଚାରିତ ବାରମ୍ବାର ହେଉଥିଲେ ବି କହିହେଉନି ପ୍ରକାଶ୍ୟ ଭାବରେ । ତଥାପି ନିଆଁ ତ କୁହୁଳି କୁହୁଳି ଜଳିବ...

ନିରୁପାୟ ଦୀନମଣି ପଇସାପତ୍ର ନେଇ ଓକିଲ ପରାମର୍ଶ କରି କେଶ କରିବେ ପର୍ଯ୍ୟାପ୍ତ ଜଞ୍ଜାଳ ଓ ଦାୟିତ୍ୱକୁ ମୁଣ୍ଡରେ ବୋହି । ପିଲାମାନେ ପାଠ ପଢୁଛନ୍ତି । ବ୍ୟବସାୟୀକରଣ ଶିକ୍ଷାରେ ଅଧୁନା ଅମାପ ଖର୍ଚ୍ଚ । ପେଟ ପାଇଁ ସବୁ ନାଟ । ସେ ବି ନେତା ହୋଇପାରିଥାଆନ୍ତେ ତାଙ୍କ ବାପାଙ୍କ ଆଦର୍ଶକୁ ଭିତ୍ତିଭୂମି କରି ଯେପରି ଅନ୍ୟମାନେ କରିଛନ୍ତି । ସ୍ୱାଧୀନ ଭାବେ ଚଳିବେ ବୋଲି ସରକାରୀ ନୌକରି କରିଥିଲେ ଜୀବନ ବିକାଶଠୁଁ ଆହୁରି ବଡ଼ ହାକିମ ବି ହୋଇପାରିଥାଆନ୍ତେ ।

ବସିପଡ଼ିଲେ ଦୋକାନଟିର ବାହାର ଖଟ ଉପରେ । ପାଣି ମଗେଇ ଢ଼କ୍ ଢ଼କ୍ କରି ତିନି ଗ୍ଲାସ୍ ପିଇଦେଲେ । ରାସ୍ତା ସେପଟେ ପାର୍କ । ପାର୍କ ମଝିରେ ମାର୍ବଲର ବିରାଟ ମୂର୍ତ୍ତି । ହରିବଲ୍ଲଭ ରାୟଙ୍କର । ଯିଏ କି ଥିଲେ ପୂର୍ବତନ କେନ୍ଦ୍ରମନ୍ତ୍ରୀ, ଜମିଦାର ଓ ସ୍ୱାଧୀନତା ସଂଗ୍ରାମୀ । ତାଙ୍କରି ଦୟାରୁ ବାପା ତାଙ୍କର ପାଇଥିଲେ ଏ ଜମିଖଣ୍ଡିକ । ମନଟା ଉଚ୍ଚାଟ ହେଇପଡ଼ିଲା ତାଙ୍କର । ପାଦ ସେଇ ଷ୍ଟାଚ୍ୟୁଟି ଆଡ଼େ ମାଡ଼ିଗଲା । ବସିଗଲେ ସେଇ ଷ୍ଟାଚ୍ୟୁର ଛାତ ତଳେ । କ୍ଳାନ୍ତିବଶତଃ କେତେବେଳେ ଆଖିକୁ ନିଦ ଆସିଯାଇଛି ତାଙ୍କୁ ଜଣାନାହିଁ ।

ହଠାତ୍ ଟପ୍ ଟପ୍ ହେଇ ଦି ଠୋପା ପାଣି ତାଙ୍କ ଉପରେ ପଡ଼ିଗଲା । ସେତେ ଥଣ୍ଡା ନୁହେଁ, ସାମାନ୍ୟ ଉତ୍ତପ୍ତ । ନିଦ ଚାଉଁକରି ଭାଙ୍ଗିଗଲା । ସେତେବେଳକୁ ଶୁକ୍ର ତାରାଟା ଆକାଶରେ ଦିକ୍ ଦିକ୍ କରୁଥାଏ ।

ରାତି ପାହିବା ପାହିବା ପରି ଲାଗୁଛି । ଉପରୁ ପୋକ ଚୁଡ଼ିଆଣୀ ମୂତି ଦେଲା କି ! କିନ୍ତୁ ନିଅନ ଆଲୁଅ ତଳେ କେହିନାହିଁ । ସ୍ୱଚ୍ଛ ଚୂନ ଧୂଳେଇ ।

ମୂର୍ତ୍ତିଟିର ମୁହଁ ଆଖିଧାରରୁ ଦୁଇ ମୋଟା ଧାର ଲୁହ ନିଗିଡ଼ି ଓଠ ତଳକୁ ଛୁଟିଛି । ଦୂର ଝାପ୍‌ସା ଅନ୍ଧାର କୃଷ୍ଣଚୂଡ଼ା ଗଛମୂଳରୁ ପ୍ରତିଧ୍ୱନିତ ହୋଇଗଲା ଏକ ଗମ୍ଭୀର ସ୍ୱର ।

''ଦୀନମଣି ତମେ ଚିନ୍ତା କରନାହିଁ । ଗ୍ରୀଷ୍ମ ତେଜରେ ଏଠି ସକାଳୁଆ ଅଫିସ । ତମେ ଦପ୍ତରରେ ପହଞ୍ଚିଲା ବେଳକୁ ତମ ନଥି ଦଲିଲ ଯେଉଁଥିରେ ମୋ ହସ୍ତାକ୍ଷର ରହିଛି ତାହା ମାଜିଷ୍ଟ୍ରେଟଙ୍କ ଟେବୁଲ୍‌ରେ ଥିବ । କେହି ଜମିରୁ ତମକୁ ଉଠେଇଦେବେ ନାହିଁ । ମୁଁ କହିଦେଇଛି । ଯାଅ ।'' ସତେ କ'ଣ ସେ ସ୍ୱପ୍ନ ଦେଖୁଛନ୍ତି... ନା...

ଘରକୁ ନ ଯାଇ ଦୀନମଣି ଫେରିଲେ ମାଜିଷ୍ଟ୍ରେଟ ଜୀବନ ବିକାଶଙ୍କ ଦପ୍ତର ।

ସେଠି ପହଞ୍ଚିବା ପୂର୍ବରୁ ବହିଯାଇଛି ଘୂର୍ଣ୍ଣିଝଡ଼ । ଦରଜା ଖୋଲିଯାଇଛି, ଅଫିସଯାକ ଥାକ ଥାକ ନଥି ଉଡ଼ିଯାଇଛି । ଏଣେ ତେଣେ ଉଡୁଛି କାଗଜପତ୍ର । ହେଲେ ଗୋଟିଏ ନଥି ଥୁଆହୋଇଛି ଜୀବନ ବିକାଶ ଦାସଙ୍କ ଟେବୁଲ୍ ଉପରେ । ଉଡୁନାହିଁ... ସ୍ଥିର... ନିଶ୍ଚଳ... ।

ଦୀନମଣି ଦେଖିଲେ କେହି ଅଫିସ୍ ଆସିବା ପୂର୍ବରୁ ଜୀବନ ବିକାଶ ଦ୍ରୁତଗତିରେ ପଶିଆସୁଛନ୍ତି । ଯିଏ ଆଗରୁ ତାଙ୍କୁ ଦେଖିଲେ ଫିଡ଼ିକି ଯାଉଥିଲେ ଚେୟାର ନିଜେ ଟାଣି ବସେଇ ଦେଇ ନଥିଟି ଦେଖି କହିଲେ, ''ଆଉ ବ୍ୟସ୍ତହେବାର ନାହିଁ । କେହି ଆପଣଙ୍କୁ ସେଠୁ ଉଠେଇପାରିବେ ନାହିଁ । ମତେ କ୍ଷମା କରନ୍ତୁ । ଉପରୁ ପ୍ରେସର ଓ କ୍ଷମତା ଲୋଭରେ ମୁଁ ବଡ଼ ଅନ୍ୟାୟ କରିପକେଇଥାଆନ୍ତି ।'' ଖୁସିରେ ଦୀନମଣି କିଛି କହୁ ନ ଥାନ୍ତି ।

ଅଦୃଷ୍ଟର ଏ ଅପୂର୍ବ କରାମତିରେ ଜୀବନ ବିକାଶର ଏ ପରିବର୍ତ୍ତନ ।

ମୁଁ ଭାବୁଥାଏ—ଏମିତି ଉପରବାଲାର ଶୁଭଦୃଷ୍ଟି ନ ପଡ଼ିଲେ ଆଜି ଆମେ ଯେଉଁଠି ପହଞ୍ଚିଲେଣି କେହି କ'ଣ ବଦଳିବେ ଜୀବନ ବିକାଶ ପରି ।

○

# ପରିଣୀତା

ସବୁ ଗଛରେ ଫୁଲ ଫୁଟେନା, ସବୁ ଫୁଲ ଫଳ ଧରେ ନା, ସବୁ ସ୍ୱପ୍ନ ସତ୍ୟରେ ରୂପାୟିତ ହୁଏନା...

କିନ୍ତୁ ।

ତା' ବୋଲି କ'ଣ ସେଇ ଗଛ, ସେଇ ଫୁଲ, ସେଇ ସ୍ୱପ୍ନବାଦୀ ମଣିଷ ବଞ୍ଚିବାର ନିମ୍ନତମ ଅଧିକାରରୁ ବଞ୍ଚିତ ହେବ ?

ସତେ ବଡ଼ ବିଚିତ୍ର ଏବଂ ରହସ୍ୟମୟ ଏଇ ମଣିଷର ମନ, ଅହରହ ଭବିଷ୍ୟତର ଅସୁମାରୀ ସ୍ୱର୍ଣ୍ଣାଭ ସ୍ୱପ୍ନରେ ଭରପୂର ତାହା । ପରିସ୍ଥିତି ଏବଂ ବାସ୍ତବ ଉପରେ ଗୁରୁତ୍ୱ ଆରୋପ ନ କରି ମନ ଅଙ୍ଗନ ଉପରେ ଅସୁମାରୀ ସୁନା ସ୍ୱପ୍ନର ସୁଉଚ୍ଚ ମିନାର ଗଢ଼ି ଚାଲିଥାଏ ସେ । କଳ୍ପନାର ରଙ୍ଗତୂଳୀରେ ସେ ମିନାରକୁ ବିଚିତ୍ରବର୍ଣ୍ଣା କରି ରୋମାଞ୍ଚିତ ହେଉଥାଏ ପ୍ରତି ମୁହୂର୍ତ୍ତରେ । ନ ଥାଉ ପଛକେ ସେ କଳ୍ପନା ସେ ସ୍ୱପ୍ନ ପଛରେ ଲେଶ ମାତ୍ର ବାସ୍ତବର ସ୍ପର୍ଶ ।

କିନ୍ତୁ ! ଏମିତି କେତେକ ଭାବପ୍ରବଣ ଖିଆଲି ମଣିଷ ଥାଆନ୍ତି, ଯେଉଁମାନଙ୍କର ମନ କ୍ଷଣଭଙ୍ଗୁର କାଚଖଣ୍ଡ ସଦୃଶ ।

ସ୍ୱପ୍ନ ତାଙ୍କର ବାସ୍ତବରେ ରୂପାୟିତ ହୋଇପାରିଲେ ମନର କାଚଘର ଅଧିକ ସ୍ୱଚ୍ଛବର୍ଣ୍ଣମୟୀ ହୋଇଉଠେ । ଅଥଚ ସେତକ ନ ହୋଇପାରିଲେ ମନର କାଚଘର ଅତି ଅସହାୟ ଭାବରେ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯାଏ । ହୁଏତ ସେମାନେ ପାଲଟି ଯାଆନ୍ତି ବିକୃତ ମସ୍ତିଷ୍କ ।

ସେମିତି ଏକ ଖିଆଲି ମନର ଅଧିକାରିଣୀ ମାନସୀ । ହାତରେ ତାର ବିଶ୍ୱବିଦ୍ୟାଳୟର ଡିଗ୍ରୀ, ଦେହରେ ରୂପଯୌବନର ଉଦାମ ତରଙ୍ଗ । ପିତାଙ୍କର ଅସରନ୍ତି ସ୍ଥାବର ଅସ୍ଥାବର ସମ୍ପତ୍ତିର ଏକମାତ୍ର ଉତ୍ତରାଧିକାରିଣୀ, ଅଥଚ ସେ ଆଜି ପାଗଳିଣୀ । ବାଲ୍ୟବୟସରୁ ସ୍ନେହମୟୀ ମା'କୁ ହରାଇଥିଲେ ବି ପିତା ଏବଂ ପିତୃପ୍ରତିମ ବୃଦ୍ଧ ଚାକର ବୁଧିଆର ସ୍ନେହଯତ୍ନରେ ବେଶ୍ ସ୍ୱାଭାବିକ ଭାବରେ ପାଦ ଦେଇଥିଲା ଯୌବନର ମଧ୍ୟସ୍ଥଳୀରେ । କିନ୍ତୁ ଗୋଟାଏ ଦୁର୍ବିସହ ପରିସ୍ଥିତିରେ ହଠାତ୍ ପିତାଙ୍କୁ ହରାଇଲା ପରେ ସେ ଆଜି ପାଲଟିଯାଇଛି ବିକୃତ-ମସ୍ତିଷ୍କା ।

ଅସ୍ୱାଭାବିକତା ତାର ମଧ୍ୟ ଅତି ଅଦ୍ଭୁତ ଧରଣର । ସଦାସର୍ବଦା ହାତରେ ପାନିଆ, ସିନ୍ଦୂର ଡିବା ଧରି କେତେବେଳେ ଅତି ସରାଗରେ ମୁଣ୍ଡ କୁଣ୍ଡାଉଥାଏ ତ

କେତେବେଳେ ବନାରସୀ ପାଟ ପିନ୍ଧି କନ୍ୟା ବେଶରେ ହସୁଥାଏ, ତ ପୁଣି କେତେବେଳେ ପିଲାଙ୍କ ପରି କାନ୍ଦି ଚାଲିଥାଏ ।

ମାନସୀର ଏ ପ୍ରକାର ଅସ୍ୱାଭାବିକତା ବୃଦ୍ଧ ଚାକର ବୁଧିଆକୁ ବଡ଼ ଅସ୍ତବ୍ୟସ୍ତ କରିପକାଉଥାଏ । ଯେଉଁ ଅଲିଅଳୀ ଦୁଲାଳୀଟିକୁ ବାଲ୍ୟବୟସରୁ କାଖେଇ କୋଳେଇ ଏତେ ବଡ଼ କରିଛି । ତାର ଏ ଦୁର୍ଦ୍ଦିନରେ ସେ କ'ଣ ତାକୁ ଛାଡ଼ି ଚାଲିଯାଇ ପାରିବ ? ନା ସେ ପାରିନି, ବରଂ ବହୁ ଚେଷ୍ଟା କରି ଅନେକ ଡାକ୍ତରଙ୍କୁ ଡାକି ତାର ପାଗଳାମି ଭଲ କରିବାକୁ ଅକ୍ଳାନ୍ତ ଉଦ୍ୟମ କରିଛି । କିନ୍ତୁ ଦୁଃଖ ଓ ବିସ୍ମୟର କଥା, ମାନସୀର ପାଗଳାମି ଏଥିରେ ସୁଧାରିବା ପରିବର୍ତ୍ତେ ବରଂ ବହୁଗୁଣିତ ହୋଇଛି । କୌଣସି ଡାକ୍ତରଙ୍କ ଉପସ୍ଥିତି ତା ପକ୍ଷେ ଅସହ୍ୟ ହୋଇଛି, ମସ୍ତିଷ୍କ ତା'ର ଅଧିକ ବିକୃତ ହୋଇଛି ।

କିନ୍ତୁ ଏଥିରେ ଭାଙ୍ଗି ନ ପଡ଼ି ବୁଧିଆ ଶେଷରେ ଯୋଗାଯୋଗ କରିଛି ରାଞ୍ଚିର ପାଗଳଖାନାର ଜନୈକ ଖ୍ୟାତନାମା ମନସ୍ତତ୍ତ୍ୱବିତ୍ ଡାକ୍ତର ରଞ୍ଜନଙ୍କ ସହ । ରଞ୍ଜନ ନିଜ ପରିଚୟକୁ ଗୋପନ ରଖି ଜମିଦାର ପରିବାରର ନୂତନ ମ୍ୟାନେଜର ଭାବେ ସ୍ଥାନ ପାଇଛନ୍ତି । ମାନସୀର ଘରେ ଏବଂ ବହୁ ସତର୍କତା ସହ ଧୀରେ ଧୀରେ ଆରମ୍ଭ କରିଛନ୍ତି ଚିକିତ୍ସା ।

କ୍ରମେ ରଞ୍ଜନ ଜାଣିପାରିଛନ୍ତି, ମାନସୀର ଏ ପାଗଳାମୀ ପଛରେ ତା' ବାଲ୍ୟବୟସର ଏକ ସୂକ୍ଷ୍ମାତିସୂକ୍ଷ୍ମ ଘଟଣା ନିହିତ । ବାଲ୍ୟବୟସର ଧୂଳିଖେଳ ବେଳେ ଏକଦା ମାନସୀ ତାଙ୍କର ପଡ଼ୋଶୀ ଏବଂ ତା' ପିତାଙ୍କର ବନ୍ଧୁପୁତ୍ର ସମବୟସୀ ବିକାଶଙ୍କର ପତ୍ନୀର ଭୂମିକା ନେଇ ମା'ଙ୍କ ସିନ୍ଦୂର ଫରୁଆରୁ ସିନ୍ଦୂର ଚୋରି କରି ସୀମନ୍ତରେ ସିନ୍ଦୂର ପିନ୍ଧି ଧୂଳିଘର ଗଢ଼ିଥିଲା ଏବଂ ସେ ଘଟଣା ତାକୁ ଏତେ ରୋମାଞ୍ଚିତ ଏବଂ ଉଚ୍ଚକିତ କରିଥିଲା ଯେ ତା'ପର କେତେଦିନ ଧରି ସେ ସେମିତି ସିନ୍ଦୂର ପିନ୍ଧି ଚାଲିଥିଲା । ଏ ଘଟଣା ଦେଖି ଉଭୟଙ୍କ ପିତାମାତା ବିସ୍ମିତ ହୋଇଥିଲେ । ହିନ୍ଦୁପ୍ରଥା ଅନୁଯାୟୀ ନାରୀ ସୀମନ୍ତରେ ସିନ୍ଦୂର ଭରେ କେବଳ ଜଣଙ୍କ ପାଇଁ ଏବଂ ସେଇ ହିଁ ସାଜେ ତାର ଇହ ଏବଂ ପରକାଳର ଦେବତା, ସ୍ୱାମୀ, ପରମେଶ୍ୱର ସବୁକିଛି । ଶେଷରେ ଦୁହିଁଙ୍କ ମା' ଗୋପୀନାଥଙ୍କ ପ୍ରସାଦ ଛୁଇଁ ଶପଥ ନେଇଥିଲେ ପରିଣତ ବୟସରେ ଦୁହିଁଙ୍କୁ ବିବାହ ବନ୍ଧନରେ ଆବଦ୍ଧ କରାଇ ନେଇ ମାନସୀର ସିନ୍ଦୂର ପିନ୍ଧାକୁ ବାସ୍ତବରେ ରୂପାୟିତ କରିବାକୁ । ଏ ଘଟଣାର ସାକ୍ଷୀ ଥିଲା ବୃଦ୍ଧ ଚାକର ବୁଧିଆ । ସେ ମଧ ବହୁ ଆଶା ଏବଂ ବିଶ୍ୱାସ ରଖି ପ୍ରତୀକ୍ଷା କରି ରହିଥିଲା ଏଇ ଶୁଭ ଅବସରକୁ ।

କିନ୍ତୁ ସମୟର ରଥ ଚକତଳେ ଏହା ମଧ୍ୟରେ ଅନେକ ପରିବର୍ତ୍ତନ ଘଟିଛି । ଉଭୟ ମାନସୀ ଏବଂ ବିକାଶର ମା'ଙ୍କର ଅକାଳ ମୃତ୍ୟୁ ସାଙ୍ଗକୁ ବିକାଶର ପିତାଙ୍କର ଅନ୍ୟତ୍ର ବଦଳି ଦୁଇ ପରିବାର ମଧ୍ୟରେ ଅନେକ ବ୍ୟବଧାନ ସୃଷ୍ଟି କରିଛି । କିନ୍ତୁ

ମାନସୀ ଏକାନ୍ତ ଅତୀତର ସେଇ ମଧୁମୟ ଘଟଣା ଓ ମା'ଙ୍କର ଶପଥକୁ ମୁହୂର୍ତ୍ତକ ପାଇଁ ଭୁଲିନି । ବିକାଶକୁ ପତି ରୂପେ ନେଇ ପ୍ରତିମୁହୂର୍ତ୍ତରେ ସେ ଦେଖିଆସିଛି ସେଇ ବର୍ଣ୍ଣବିଭୋର ସ୍ୱପ୍ନ । ତାଙ୍କୁ ମନ ମନ୍ଦିରରେ ପରମେଶ୍ୱର ରୂପେ ଅଧିଷ୍ଠିତ କରି ନିରନ୍ତର କରି ଆସିଛି ଅର୍ଚ୍ଚନା ।

ସମୟକ୍ରମେ ବିକାଶ ମେଡ଼ିକାଲ କଲେଜର ଶ୍ରେଷ୍ଠ ସ୍ନାତକ ଉପାଧି ପାଇଛନ୍ତି । ମନରେ ଅନେକ ଆଶା ନେଇ ବିକାଶକୁ ନିଜ ଘରକୁ ନିମନ୍ତ୍ରଣ କରିଛନ୍ତି ମାନସୀର ବାପା ଏବଂ ତା ନିକଟରେ ଉତ୍‌ଥାପିତ କରିଛନ୍ତି ମାନସୀର ବିବାହ ପ୍ରସ୍ତାବ; କିନ୍ତୁ ଏ ମଧ୍ୟରେ ବିକାଶ ତାଙ୍କର ଜଣେ ଡାକ୍ତର ସାଥୀଙ୍କର ପ୍ରଣୟପାଶରେ ଆବଦ୍ଧ ହୋଇଯାଇଥିବାରୁ ସିଧାସଳଖ ପ୍ରତ୍ୟାଖ୍ୟାନ କରିଛନ୍ତି ତାଙ୍କର ପ୍ରସ୍ତାବ । ଫଳରେ ଦାରୁଣ ଆଘାତରେ ଜର୍ଜରିତ ହୋଇ ଶଯ୍ୟାଶାୟୀ ହୋଇ ପଡ଼ିଛନ୍ତି ମାନସୀର ବାପା ।

କେବଳ ନିଜର ଅତୀତ ସ୍ୱପ୍ନର ବାସ୍ତବୀକରଣ ପାଇଁ ନୁହେଁ ପିତାଙ୍କର ଆରୋଗ୍ୟ ପାଇଁ ଅନୁରୋଧ କରିଛି ମାନସୀ ଲଜ୍ଜାସମ୍ଭ୍ରମ ତେଜି ତାର ପିଲାବେଳର ସାଥୀ ବିକାଶକୁ ତାକୁ ଗ୍ରହଣ କରିବାକୁ । ମାତ୍ର ଏକ ବାଲ୍ୟବୟସର ଧୂଳିଖେଳର ଘଟଣାକୁ ନେଇ ବିକାଶ ତାଙ୍କର ସାମ୍ପ୍ରତିକ ପ୍ରୀତିପ୍ରବାହକୁ ବନ୍ଦ କରିଦେବାକୁ ରାଜି ହୋଇନାହାନ୍ତି । ଫଳରେ ମାନସୀର ବାପା କ୍ରମେ ଅଧିକରୁ ଅଧିକ ରୋଗାକ୍ରାନ୍ତ ହୋଇଛନ୍ତି ।

ଦିନେ ମାନସୀ ତାର ପିତାଙ୍କର ସୁସ୍ଥତା ପାଇଁ ଅଯାଚିତ ଭାବେ ପହଞ୍ଚିଯାଇଛି ବିକାଶର କ୍ଲିନିକ୍‌ରେ । ମିନତି କରିଛି ବାସ୍ତବରେ ନ ହେଲେ ବି ଅନ୍ତତଃ ଜଣେ ଡାକ୍ତର ଭାବେ ତା' ପିତାଙ୍କର ଆରୋଗ୍ୟ ପାଇଁ ତାଙ୍କ ଘରକୁ ଆସି ସ୍ୱାମୀ ଭୂମିକାରେ ଅଭିନୟ କରିବାକୁ । ରାଜି ହୋଇଛନ୍ତି ବିକାଶ ଓ ଏ ଅଭିନୟକୁ ସତ୍ୟ ମଣି ମାନସୀର ପିତା ଆରୋଗ୍ୟ ଲାଭ କରିଛନ୍ତି ଏବଂ ଦୁହିଁଙ୍କର ବିବାହପର୍ବ ପାଇଁ ଆୟୋଜନ ଆରମ୍ଭ କରିଦେଇଛନ୍ତି । ଏସବୁ ଦେଖି ସର୍ତ୍ତ ଅନୁସାରେ ବିକାଶ ଫେରିଯିବାକୁ ଚାହିଁଛନ୍ତି ତାଙ୍କ ପ୍ରତୀୟମାଣା ପ୍ରଣୟିନୀ ପାଖକୁ କିଂକର୍ତ୍ତବ୍ୟବିମୂଢ଼ ହୋଇ । ସାଶ୍ରୁଳ ନେତ୍ରରେ ବିରହିଣୀ ମାନସୀ ବିନମ୍ର ଅନୁରୋଧ କରିଛି ଅନ୍ତତଃ ପରିସ୍ଥିତି ଦୃଷ୍ଟିରୁ ତାକୁ ଗ୍ରହଣ କରିନେବାକୁ ।

ମାନେ ? ମୁଁ ବୁଝିପାରୁନି, ଆମର ପୂର୍ବ ସର୍ତ୍ତ ଅନୁଯାୟୀ ମୁଁ ତ ମୋ କର୍ତ୍ତବ୍ୟରେ ତ୍ରୁଟି କରିନି—ମୋ ଅଭିନୟର ପାଉଣା ତ ମୁଁ ଦାବି କରିନି ତମଠୁ ? ଆଜି ମୋତେ ତମେ ଫେରିଯିବାକୁ ଅନୁମତି ଦିଅ । ଏଠି ଯେତେ ବିଳମ୍ବ ହେବ ଅବସ୍ଥା ସେତେ ଗୁରୁତର ହୋଇପଡ଼ିବ । ତା' ପୂର୍ବରୁ ମୁଁ ଏଠୁ ଚାଲିଯିବି । ତମେ ମୋତେ ଭୁଲ ବୁଝନା ମାନସୀ !

ଆପଣଙ୍କୁ ଭୁଲ ବୁଝିବା ଅଧିକାର ଆପଣ ତ ମାନସୀକୁ ଦେଇନାହାନ୍ତି । ହେଲେ, ସତକଥାଟା ଜାଣିବା ପରେ ବାପାଙ୍କ ଦେହ ଅବସ୍ଥା ଯଦି... ।

ହଁ, ମୋର ଅନୁପସ୍ଥିତିରେ ବି ତମ ବାପାଙ୍କର ସାମନାରେ ତମେ ଠିକ୍ ଏଇଭଳି ଅଭିନୟ କରିଯିବା ଉଚିତ ହବ ମାନସୀ !

ଆପଣ କ'ଣ ଭାବୁଛନ୍ତି ଆଜି ପର୍ଯ୍ୟନ୍ତ ଆପଣ କେବଳ ଅଭିନୟ କରି ଆସିଛନ୍ତି । ଆପଣଙ୍କ ସ୍ତ୍ରୀ ଭୂମିକାରେ ମୁଁ କ'ଣ ଅଭିନୟ କରିବାକୁ ଅସମର୍ଥ ହେଉଛି ? ତା' ହେଲେ ?

ତମ ବାପାଙ୍କ ଆଗରେ ସତ କହିବାରେ ଆବଶ୍ୟକତା ନାହିଁ । ତମେ ତାଙ୍କୁ କହିଦେବ ଗୋଟାଏ ଜରୁରୀ କାମରେ ମୁଁ ବାହାରକୁ ଯାଉଛି ।

କ୍ରୋଧଜର୍ଜରିତ କଣ୍ଠରେ କହି ଦ୍ରୁତଗତିରେ ବିକାଶ ଚାଲିଯାଇଛନ୍ତି ।

ଠିକ୍ ଅଛି, ଆପଣଙ୍କ କଥା ମାନି ଆଉ ଗୋଟାଏ ମିଛ କହିବାକୁ ମାନସୀ କୁଣ୍ଠାବୋଧ କରିବନି—ହେଲେ କେତେଦିନ ? କେତେଦିନ ବାପାଙ୍କ ମନରେ ମିଛର ଇନ୍ଦ୍ରଜାଲ ସୃଷ୍ଟି କରି ତାଙ୍କୁ ବିଭ୍ରାନ୍ତ କରିବ ? ଯାହାହେଲେ ବି ସୀମନ୍ତରେ ସିନ୍ଦୂର ଲଗାଇବାର ସୌଭାଗ୍ୟ ନ ଥାଇ ବି ସେ ସୀମନ୍ତିନୀର ଭୂମିକାରେ ଅବତୀର୍ଣ୍ଣ ହେବ । ହା ହତାଶ ଭିତରେ ନିଜେ ଜଳି ଜଳି ବାପାଙ୍କର ଜୀବନ ପ୍ରଦୀପକୁ ଜଳେଇ ରଖିବାକୁ ପଡ଼ିବ ।

ଦୁଇଜଣଙ୍କର ଯୁକ୍ତିତର୍କ ଦୂରରୁ ମାନସୀର ବାପାଙ୍କ କାନରେ ପଡ଼ିଛି ଏବଂ ସବୁକଥା ବୁଝିବା ପରେ ଏ ଦାରୁଣ ଆଘାତକୁ ସହି ନ ପାରି ହାର୍ଟଷ୍ଟ୍ରୋକ୍‌ରେ ତାଙ୍କର ଅପମୃତ୍ୟୁ ଘଟିଛି ।

ଏକ ପକ୍ଷରେ ପ୍ରଣୟୀର ପ୍ରତ୍ୟକ୍ଷ ପ୍ରତ୍ୟାଖ୍ୟାନ, ଅନ୍ୟ ପକ୍ଷରେ ପିତାଙ୍କର ଅପମୃତ୍ୟୁ—ଏ ଭୟଙ୍କର ବଜ୍ରାଘାତକୁ କୌଣସିମତେ ସହ୍ୟ କରିପାରିନି ମାନସୀ । ତାର ମସ୍ତିଷ୍କ ବିକୃତି ଘଟିଛି ଏବଂ ସେହି ଦିନଠାରୁ ସିନ୍ଦୂର ପାନିଆ ଧରି ନିଜକୁ ସଜାଇ ହେଉଛି । ସୀମନ୍ତରେ ସିନ୍ଦୂର ଭରି କେତେବେଳେ କାନ୍ଦୁଛି ଓ କେତେବେଳେ ହସୁଛି ।

ଘଟଣାବହୁଳ ଅତୀତଟାକୁ ଗୋଟି ଗୋଟି କରି ବଖାଣିଲା ପରେ ବୁଧିଆର ବାକ୍‌ଶକ୍ତି କ୍ରମେ ଅସ୍ଥିର ଭାବାବେଗରେ ଥରିବା ସଙ୍ଗେ ସଙ୍ଗେ ତା ଲୁଗାକାନି ଲୁହରେ ଓଦା ହୋଇଯାଇଥିଲା ।

ମନସ୍ତତ୍ତ୍ୱବିତ୍ ଡାକ୍ତର ରଞ୍ଜନଙ୍କ 'ଡାକ୍ତରୀ ଜୀବନ ମଧ୍ୟରେ ଏଭଳି ରୋଗୀର ଚିକିତ୍ସା ଯଦିଓ ପୂର୍ବରୁ କରିଛନ୍ତି ତଥାପି ମାନସୀର ମାନସିକ ସୁସ୍ଥତା ପାଇଁ ବୁଧିଆକୁ ଏକ ଅଦ୍ଭୁତ ଉପାୟ ଅବଲମ୍ବନ କରିବାକୁ ପ୍ରସ୍ତାବ ଦେଇଛନ୍ତି । ଯାହାର ପ୍ରତିକ୍ରିୟାରେ ଏଭଳି ଏକ ଅନିଶ୍ଚିତ ସମୟ ହଠାତ୍ ଉପନୀତ ହେବା ଫଳରେ ସେ ସୁସ୍ଥ

ହୋଇଯାଇପାରେ କିମ୍ବା ଅଧିକ ପାଗଳିନୀ ହୋଇଯାଇପାରେ ଅବା ମୃତ୍ୟୁ ମଧ ବରଣ କରିପାରେ ।

ଡାକ୍ତର ରଞ୍ଜନ ଏକ ମିଥ୍ୟା ଟେଲିଗ୍ରାମ କରିଛନ୍ତି—''ବିକାଶ ଦୁର୍ଘଟଣାରେ ମୃତ୍ୟୁବରଣ କରିଛନ୍ତି ।'' ଠିକ୍ ମାନସୀ ପୂର୍ବପରି ମଥାରେ ସିନ୍ଦୂର ପିନ୍ଧୁଥିବା ବେଳେ ବୁଧିଆ ଟେଲିଗ୍ରାମ ଦେଇଛି । ହାତରୁ ତାର ଖସିପଡ଼ିଛି ସିନ୍ଦୂର ଫରୁଆ । ସେ ଚେତାଶୂନ୍ୟ ହୋଇ ପଡ଼ିଯାଇଛି ତଳେ । ଦ୍ୱନ୍ଦ୍ୱର ଦୋଳନ ମଧରେ ରହି ସ୍ତମ୍ଭୀଭୂତ ହୋଇ ପରିଣତିକୁ ଚାହିଁ ରହିଛନ୍ତି ବୁଧିଆ ଓ ଡଃ ରଞ୍ଜନ ।

କିଛି ସମୟ ପରେ ମାନସୀର ଚେତା ଫେରିଛି ଏବଂ ସେ ଯେପରି ନୂଆ କରି ଚାହିଁରହିଛି ପରିବେଶକୁ । ଏଥର ସେ ସମ୍ପୂର୍ଣ୍ଣ ସୁସ୍ଥ ମସ୍ତିଷ୍କ, ଜୀବନର ତୀକ୍ଷ୍ଣ ବନ୍ଧୁର ରାସ୍ତାରେ ଚାଲୁ ଚାଲୁ ଏମିତି କେତେ ଘଟଣା ଅଘଟଣା ସବୁ ମଣିଷର ଜୀବନରେ ଉଣା ଅଧିକେ ଆସିଥାଏ । ସବୁରି ଜୀବନରେ ଆସିଥାଏ କିଛି ନା କିଛି ବ୍ୟର୍ଥତାର ଝଡ଼ ।

ସେସବୁକୁ ଧରିବସି ଜୀବନକୁ ହନ୍ତସନ୍ତ କରିବାରେ କି ଲାଭ ପାଏ ଏ ମଣିଷ ।

ସତରେ ଏ ଭଙ୍ଗାଗଢ଼ା ଦୁନିଆରେ କିଛି ନ ଭାଙ୍ଗିଲେ କିଛି ଗଢ଼ାଯାଇ ପାରିବ ବା କେମିତି ?

ସାଗରର ଉଜାଣି ନିନାଦିତ ଲହଡ଼ି ବାରମ୍ବାର ଯେପରି କ'ଣ ଗୋଟାଏ ପ୍ରଶ୍ନର ଉତ୍ତର ଖୋଜି ଖୋଜି ଦୋହରାଇ ଦୋହରାଇ କୂଳରେ ମଥା ପିଟିଲା ପରି ମାନସୀର ହୃଦକନ୍ଦରରୁ ଅନେକ ପ୍ରଶ୍ନରାଜି କଣ୍ଠପାଖରୁ ଫେରିଯାଉଥିଲା; କିନ୍ତୁ ମନର ସାହସ ଓ ଦମ୍ଭ ନିଜକୁ ନିଜେ ଉତ୍ତର ଦେଉଥିଲା । ଯାହାହେଲେ ବି ଅତୀତକୁ ସ୍ୱପ୍ନଭଙ୍ଗର କାହାଣୀ ଭାବି ନେଇ ବର୍ତ୍ତମାନ ଓ ଅନାଗତକୁ ତାପରି ଜଣେ ପ୍ରବଞ୍ଚିତା ବୟସୀ ଝିଅ ପକ୍ଷେ ଏକା ଏକା ଅବଶିଷ୍ଟ ଜୀବନ ବିତାଇଦେବାରେ ଅସୁବିଧା ଅବା କ'ଣ ଅଛି ?

# ହାତୀ ପଥର

ଶେଯରୁ ଉଠି ଦିଗନ୍ତବିସ୍ତାରୀ ଅନ୍ଧାର ଛାଇ ରହିଥିବା ରାତିକୁ ଝରକା ଖୋଲି ଦେଖିଲି । ହାତ ଘଣ୍ଟାରେ ସେତେବେଳକୁ ରାତି ଚାରି । ସାରା ରାତି ଭଲ ନିଦ ହୋଇନି । ଦିନ ଭରି ଅବିଶ୍ରାନ୍ତ ଭାବରେ ବସ୍‌ରେ ବସି ଆସିଥିବାରୁ ପ୍ରାୟ ଦେହ ଉଚ୍ଚାଟ ହୋଇଯାଇଛି ।

ନିତ୍ୟକର୍ମ ସାରି ନେଇ ତରବର ହୋଇ ଆମେ ପୋଷାକ ପିନ୍ଧିନେଲୁ । ପ୍ରଶାନ୍ତର ପୁରୁଣା ରାଜଦୂତ ମଟରସାଇକେଲରେ ମୁଁ ଷ୍ଟାର୍ଟ ଦେଲି । ନଭେମ୍ବର ମାସର କନ୍‌କନିଆ ହେମାଳ ପବନ ଆଉ ଶୀତରେ, ନିରାଭରଣ ଆଖି ଓ ନାକରୁ ଠୋପା ଠୋପା ଶ୍ରାବଣ ଥୋପା ଥୋପା କାକରରେ ହାତୀପଥରରେ ପହଞ୍ଚିବା ପୂର୍ବରୁ ବୁଡ଼ିଯାଇଥାଏ ସମଗ୍ର ପରିଚ୍ଛଦ । ପଛରେ ଛାଡ଼ିଆସିଲୁ ରାୟଗଡ଼ାର ଛୋଟ ସହର, ପ୍ରାଚୀର ପରି ଘେରି ରହିଛି ତାର ଚାରିପାଖ ଏଇ ଅପହଞ୍ଚ ପାହାଡ଼ ଓ ପର୍ବତ । ବନ୍ଧୁ ପ୍ରଶାନ୍ତର ଅନୁରୋଧରେ ମୁଁ ହୋଇଛି ତାର ଅତିଥି ଗତକାଲିର । ଏଠା ପରିବେଶ ଓ ପ୍ରକୃତି ସମ୍ପର୍କରେ ମୁଁ ସମ୍ପୂର୍ଣ୍ଣ ନୂତନ । ପାଖ ଦେବୀ ମନ୍ଦିରରୁ ପ୍ରଥମ ଆଳତୀର ଶବ୍ଦ । ଗାଡ଼ିଟିକୁ ପୂଜାରୀ ହେପାଜତ୍‌ରେ ରଖି ପୋଷାକ ବଦଳାଇ ପିଚ୍ଛଳ ପିଚୁ ରାସ୍ତାକୁ ପଛରେ ପକାଇ ଆମେ ପାଦ ଦେଲୁ ସରୁ ଗାଉଁଲି ପାଦଚଲା ରାସ୍ତାରେ । ପାଖରେ କୁଳୁ କୁଳୁ ହୋଇ ଝରଣାଟିଏ ବହିଯାଉଛି । ଉଚ୍ଚା ଖାଲ ପାହାଡ଼ରୁ ଝୁଲି ଝୁଲି ମାଟିକୁ ଛୁଇଁ ଛୁଇଁ ଝରିଯାଉଛି ତାର ଜଳ । ଦୁଇ ପାଖରେ ତାର ବୁଦୁବୁଦୁକିଆ ଜଙ୍ଗଲ । ମଝିରେ ଅଙ୍କାବଙ୍କା ପାଦଚଲା ରାସ୍ତା ।

ରାତି ଢ଼ଳିଲାଣି ପ୍ରଭାତ ଆଡ଼କୁ । ସକାଳ ଆସନ୍ନ । ରାତିର ନିଶ୍ଚଳ ନିସ୍ତବ୍ଧତା ଭାଙ୍ଗି କାନରେ କେବଳ ନାନା ଜାତି ଛୋଟ ଛୋଟ ଚଢ଼େଇଙ୍କ କିଚିରି-ମିରିଚି ସ୍ୱର ।

ପୂର୍ବ ନିର୍ଦ୍ଧାରିତ ସମୟରେ ବାହାରିଥିବାରୁ ହାତୀପଥର ପ୍ରପାତର ନିମ୍ନ ଭାଗରେ ପହଞ୍ଚିଲା ବେଳକୁ ପାହାଡ଼ର ଗୋଟିଏ କଣରୁ ସୂର୍ଯ୍ୟର କିରଣ ଆମ ଦେହ ଉପରେ ପଡୁଥିଲା । କଳା ମସୃଣପଥର ଶିଳାରୁ ପୂର୍ବାକାଶର ସୂର୍ଯ୍ୟୋଦୟର ଚମତ୍କାର ଶୋଭା ମୋ ମନରେ ଚିରଦିନ ଆଲୋଡ଼ନ ଆଣିଚି । ଯଦିଓ ପୂର୍ବରୁ ମୁଁ ଅନେକଥର ଅନ୍ୟଠି ସୂର୍ଯ୍ୟୋଦୟର ପୂର୍ବାଭାସ ଓ ପ୍ରଥମ କଅଁଳ ଖରାର ପରଶ ଉପଭୋଗ କରିଛି ତଥାପି ହାତୀପଥରର ଅନୁଭୂତି ପ୍ରକୃତରେ ସ୍ୱତନ୍ତ୍ର ଆଉ ନିଆରା । ପୂର୍ବରୁ ଏ ଅନୁଭବ କେବେ ମୁଁ ପାଇନି । ଏତେ ବାଟରୁ ପ୍ରଶାନ୍ତ ମୋତେ ଡାକିଆଣି ହାତୀପଥରର

ପ୍ରକୃତିର ଶୋଭା ଦେଖାଇଥିବାରୁ ମୁଁ ତା' ପାଖରେ ଉପକୃତ । ତାର ଉପଯୁକ୍ତ ସ୍ଥଳ ନିର୍ବାଚନକୁ ତାରିଫ ନ କରି ମୁଁ ରହିପାରିଲି ନାହିଁ ।

ପ୍ରଭାତର ପ୍ରସ୍ଫୁଟିତ ଅରୁଣିମା ମୋ ରକ୍ତରେ ଅଣୁରେ ଆଣିଲା ଚଞ୍ଚଳତା । ପ୍ରଶାନ୍ତକୁ ଧରି ପାହାଡ଼ର ଟୀଖକୁ ଉଠିବାକୁ ଭାରି ମନ ହେଲା । ସେତେବେଳକୁ ସ୍ୱପ୍ନ ପରି ଘନକୁହୁଡ଼ି ପାହାଡ଼ ଉପରକୁ ଆବୃତ କରିଥିବାରୁ ବନ୍ଧୁ ବୋଧେ ସାହସ କଲେ ନାହିଁ ମୋ କଥାରେ ସହମତ ହେବାକୁ ।

ଦୁହେଁ ବସିଗଲୁ ଗୋଟିଏ କଳା ମଚମଚ ମୁଗୁନି ପଥର ଉପରେ ।

"ଭୋକ ଶୋଷ ପାଇଁ ଟିକିଏ ଚିନ୍ତା ନ କରି ସାରାଦିନ ଆମେ ଏଇଠି କଟେଇ ଦେଲେ କେମିତି ହୁଅନ୍ତା ପ୍ରଶାନ୍ତ ।" ମୋ କହିବାର ଗଭୀର ଭାବାବେଗ ଆଉ ଭାବପ୍ରବଣତା ସ୍ୱଭାବ ଲାଗି ପ୍ରଶାନ୍ତ ଆଖିରେ ଧରା ପଡ଼ିଯାଇଥିବାରୁ ମୁଁ ପରମୁହୂର୍ତ୍ତରେ ଲାଜେଇ ଗଲି ।

'ହଁ ।'

ଇଚ୍ଛା ନ ହେବା ପର୍ଯ୍ୟନ୍ତ ସେ ଅବଧି ଆମେ ଏଠି ରହିବା; ମୋର ଆପତ୍ତି ନାହିଁ । ପ୍ରଶାନ୍ତର ପ୍ରତିଶ୍ରୁତିରେ ମୋ ଓଠରେ ଶାଶ୍ୱତ ହସନ୍ତ ପାଟଳିମା ନିକଟ ପାହାଡ଼ରେ ବାଜିବାକ୍ଷଣେ ପ୍ରତିଧ୍ୱନି ସୃଷ୍ଟି କରିଦେଲା ।

ଧୀର ସ୍ଥିର ଚିତ୍ତରେ ସାରା ପରିବେଶର ସତ୍ତାକୁ ମୋ ହୃଦୟର ନିବୃତ୍ତ ଏକ ନିବୁଜ କୋଠରୀରେ ବାନ୍ଧି ରଖିବାକୁ ଚେଷ୍ଟା କଲାବେଳେ ହଠାତ୍ ନୀରବତା ଭାଙ୍ଗି ପ୍ରଶାନ୍ତ କହିଲା, ଗୁମ୍ଫାଟିଏ ଆଡ଼େ ଚାହିଁବାକୁ ।

ଦେଖିଲି, ଦୁଇଟି ଯାଆଁଳା ବିରାଟ ପଥରର ସମ୍ମେଳନରେ ଅଗ୍ରଭାଗର ତଳକୁ ଢାଲୁହୋଇ ସୃଷ୍ଟି ହୋଇଛି ମସ୍ତ ଗୁମ୍ଫାଟିଏ । ଭୁବନେଶ୍ୱରର ଉଦୟଗିରିର ଗୁମ୍ଫାଠାରୁ ଏହା କୌଣସି ଗୁଣରେ କମ୍ ନୁହେଁ । ଦୁଇଜଣଯାକ ହାତ ଧରାଧରି ହୋଇ ଗୁମ୍ଫା ଭିତରକୁ ଗଲୁ ।

ଭିତରେ ଛୋଟ ବଡ଼ ହୋଇ ଦଶ କି ବାର ପଥର ।

ସେଥିରୁ ଖଣ୍ଡିଏ ସମସ୍ତଙ୍କଠାରୁ ବଡ଼ । ଛୋଟ ବଡ଼ର ଆକାର ଅନୁଯାୟୀ ଏ ଗୁମ୍ଫାଟିର ନାମକରଣ କରାଯାଇଛି "ଗୁରୁଶିଷ୍ୟ ଗୁମ୍ଫା" । କାହିଁ ଆବାହମାନ କାଳରୁ ଲୋକେ ଏହାର ନାମକରଣ କରିଛନ୍ତି ତା'ର ଇୟତା ନାହିଁ । ଯେପରି ଯୁଗ ଯୁଗ ଧରି ଗୁରୁ ତାଙ୍କର ଶିଷ୍ୟମାନଙ୍କୁ ଶୁଣାଉଛନ୍ତି ଶ୍ଳୀଳ, ସଂଯମ ଆଉ ଶିଷ୍ଟାଚାର ।

ପ୍ରଶାନ୍ତ ସବାଶେଷ ଛୋଟ ପଥରଟି ଉପରେ ବସିପଡ଼ି ତାର ବିମୋହିତ ଦୃଷ୍ଟି ନିକ୍ଷେପିଛି । ମୁଁ ତାର ସେଇ ସମ୍ମୋହିତ ଭାବରାଜିକୁ ବେଶ୍ ଉପଭୋଗ କରିବାକୁ ଚେଷ୍ଟା କଲି । ତା'ର ନିବିଷ୍ଟ ଘନିଷ୍ଠ ଓ ଏକାନ୍ତ ଆଖିରେ ମୋ ଆଖିକୁ ମିଳେଇଲି ।

ଆମ ବାଁପଟେ ପ୍ରପାତ ପାଣିର ବେଗ, ପଥରରେ ମାଡ଼ଖାଇ ଘୂରି ଘୂରି ଜଳ ଭଉଁରୀରେ ଲୁଚକାଳି ଖେଳ, ପାହାଡ଼କଣରୁ ସୂର୍ଯ୍ୟକିରଣର ପ୍ରତିଫଳନ ସର୍ବୋପରି ପାହାଡ଼ର ଗଡ଼ାଣିଆ ମାଟିରେ ଉଠିଥିବା ଘନନୀଳ ଅପହଞ୍ଚ ଜଙ୍ଗଲ... ଏମିତି ଅନେକ କିଛି ।

ତା' କାନ୍ଧରେ ହାତ ରଖି ତାକୁ କିଛି କହିବାକୁ ମୁଁ ଚେଷ୍ଟା କଲି । ନ ଶୁଣିଲା ପରି ସେ ତା' କଥା କହିଚାଲିଲା ଏଇ ଗୁମ୍ଫାଟିର ଇତିହାସ ସମ୍ପର୍କରେ । ସେତେବେଳେ ପ୍ରଶାନ୍ତ ରାୟଗଡ଼ା ହାଇସ୍କୁଲର ଛାତ୍ର । ସହରଟି ନୂଆ ହୋଇ ଗଢ଼ି ଉଠିଥାଏ । ସ୍କୁଲକୁ ଲାଗି ସବ୍‌ପୋଷ୍ଟାଫିସ୍ ଖୋଲାଯାଇଥାଏ । ଗୁରୁଦାସପୁରରୁ ପ୍ରମୋଶନ ପାଇ ବଦଳି ହୋଇ ବିଶ୍ୱମୋହନ ପ୍ରଥମ ପୋଷ୍ଟମାଷ୍ଟର ଭାବରେ ଯୋଗ ଦେଇଥାଆନ୍ତି । ତାଙ୍କ ପୁଅ ନିଲୁ, ଝିଅ ରୁନୁ ପ୍ରଶାନ୍ତର ସହପାଠୀ । ପୁଅ ଝିଅ ଆଉ ସ୍ତ୍ରୀଙ୍କୁ ନେଇ ସେ ରହୁଥାଆନ୍ତି ଭଡ଼ାଘରେ । ଗୋରା ତକ୍ ତକ୍ ଚେହେରା ସଙ୍ଗେ ସୁଗଠିତ ଅଙ୍ଗରାଜି ପାଇଁ ସେମାନେ ବେଶ୍ ବାରି ହୋଇପଡୁଥିଲେ ଯେ ସେମାନେ ଏଠାରେ ସ୍ଥାୟୀ ବାସିନ୍ଦା ନୁହଁନ୍ତି । କାରଣ ଏଠା ଲୋକଙ୍କର ଗଢ଼ଣ ସେମାନଙ୍କଠାରୁ ଅଲଗା । ଏଠି ସମସ୍ତେ ପ୍ରାୟ କଳା ଅଥବା ଶ୍ୟାମଳ । ପ୍ରକୃତିର ସୌନ୍ଦର୍ଯ୍ୟ ରୂପ ପାଖରେ ଏମାନେ ସବୁଦିନେ ଏମିତି ଦେଖିବାକୁ । ଗଣି ହୋଇଗଲା ପରି ସେମାନେ ବାରି ହୋଇଯାଉଥିଲେ ଏଇ ଛୋଟ ଜାଗାଟିରେ । ବିଶ୍ୱମୋହନଙ୍କ ନିର୍ଦ୍ଧାରିତ ଅଫିସ୍ ସମୟ ପରେ ସେ କିଛି ସମୟ ଓଭରଟାଇମ୍ କରିଥାଆନ୍ତି । କାମରେ ନିଷ୍ଠାପର କର୍ମଚାରୀ ଭାବରେ ତାଙ୍କର ସୁନାମ ଥିଲା । ପରିବାରର କଳେବର ସୀମିତ ଥିବାରୁ ଦୁଃଖ ଦୈନ୍ୟର ଲେଶମାତ୍ର ସ୍ପର୍ଶ ନ ଥିଲା । ସବୁବେଳେ କେତେ ଉତ୍‌ଫୁଲ୍ଲ ରହୁଥିଲେ ସେ ! ଭିତରେ କର୍ମଜଞ୍ଜାଳରେ ଯେତେ କଷ୍ଟ ହେଲା ପଛେ ସେ ସବୁକୁ ଚାପିରଖି ସେ ହସଖୁସିରେ ସମସ୍ତଙ୍କୁ ମଜାଇ ରଖୁଥିଲେ ।

କିନ୍ତୁ ଏମିତି ଦିନ ଆସିଲା—

କିଏ ଜାଣିଥିଲା ଦିନେ ରାତ୍ରିର ପ୍ରଥମ ପ୍ରହରରେ ଚୋର ପରି ଆସି ମୃତ୍ୟୁ ତାଙ୍କୁ ଏକେଲା ଛାଡ଼ି ଦେଇ ତାଙ୍କ ପରିବାରର ସମସ୍ତଙ୍କୁ ତା' କୋଳକୁ ନେଇଯିବ ।

ସେଦିନ ଥିଲା ଅମାବାସ୍ୟାର ରାତ୍ରି । ବିଶ୍ୱମୋହନ ବସାକୁ ଫେରି ନ ଥିଲେ । ଘର ଅଗଣାର ଲୁଗାଶୁଖା ତାରରେ ବିଦ୍ୟୁତ୍ ତାର ଛିଡ଼ି ସଂଯୋଗ ହୋଇ ବିଦ୍ୟୁତ୍ ଆଘାତରେ ଜଣଙ୍କ ପରେ ଜଣେ ହୋଇ ତିନିଜଣ ଯାକ ମା, ପୁଅ ଓ ଝିଅ ପ୍ରାଣ ହରାଇଥିବାର ମର୍ମାନ୍ତିକ ଦୁର୍ଘଟଣା ତଡ଼ିତ୍ ପ୍ରାୟ ଚାରିଆଡ଼େ ପ୍ରଚାରିତ ହୋଇଗଲା ।

ସହର ଯାକର ଲୋକେ ଠୁଳ ହୋଇଥିଲେ ବିଶ୍ୱମୋହନଙ୍କ ଘର ସାମ୍ନାରେ । ସମସ୍ତଙ୍କର ଆଖିରେ କେବଳ ଲୁହ । ପଥର ଖୁଣ୍ଟ ସଦୃଶ ମୂକ ହୋଇଯାଇଥିଲେ ବିଶ୍ୱମୋହନ । ଶବ ସଂସ୍କାରର ହୃଦୟ ବିଦାରକ ଦୃଶ୍ୟ ଏବେ ବି ପ୍ରଶାନ୍ତର ମନେ ପଡ଼ି ଦେହ ଶିତେଇ ଉଠିଲା ।

ହଜିଗଲା ବିଶ୍ୱମୋହନଙ୍କ ବ୍ୟକ୍ତିତ୍ୱ, କାର୍ଯ୍ୟଦକ୍ଷତା ଚଳତ୍‌ଶକ୍ତି ପ୍ରବାହ ।

ତା' ପରଦିନ ପହଞ୍ଚିଲେ ସେ ଏଇ ହାତୀପଥରର ଗୁରୁଶିଷ୍ୟ ଗୁମ୍ଫାରେ । ଯେଉଁ ପଥରଟି ଉପରେ ପ୍ରଶାନ୍ତ ବସି ମୋତେ ଏ ପ୍ରସଙ୍ଗରେ କହୁଥିଲା, ସେଇଠି ସେମିତି ଧ୍ୟାନମଗ୍ନ ସନ୍ୟାସୀ ପରି ଚାରିଆଡ଼କୁ ଚାହିଁ ବିଶ୍ୱମୋହନ ବସିଥିବାର ସମସ୍ତେ ଦେଖିଥିଲେ । ଯିଏ ଯେତେବେଳେ ଆସି ଦେଖିଛି ଠିକ୍ ସେଇ ଅବସ୍ଥାରେ ତାଙ୍କୁ । କାହାରି ଆଶ୍ୱାସନାକୁ ସେ କର୍ଣ୍ଣପାତ କରିନାହାନ୍ତି । ଦେଖଣାହାରୀ ଖାଇବାକୁ କିଛି ଦେଲେ ମନ ହେଲେ ସେ ଖାଆନ୍ତି ।

ହଠାତ୍ ଦିନେ ସେ ଆଉ ସେଠାରେ ବସିଥିବାର ଦେଖିବାକୁ ମିଳିଲେନି । ଖୁବ୍ ଖୋଜାଖୋଜି ହେଲା ହାତୀପଥରର ଝରଣାର ଉପର ମୁଣ୍ଡରେ । ସେ ଆତ୍ମବିସର୍ଜନ ଦେଇଥିବାର ଅନୁମାନ କରାଗଲା । ଦ୍ରୁତ ଝରଣାର ଜଳପ୍ରବାହ ତଥା ଜଳପ୍ରପାତ ପାଣି ଭିତରେ ପଥର ସନ୍ଧିରେ ତାଙ୍କର ଶବ ପଚି ଯାଇଥିବାର ଏବଂ ଖୋଜିବା ଭିତରେ ଅନ୍ୟ କେହି ମୃତାହତ ହେବାର ସମ୍ଭାବନା ଥିବାରୁ ସମସ୍ତେ ନିରାଶ ହୋଇ ଫେରିଗଲେ ।

ସେଇଦିନୁ ପ୍ରଶାନ୍ତ ଯେତେଥର ଏଠାକୁ ଆସିଛି, ବିଶ୍ୱମୋହନ ବସିଥିବା ପଥର ଉପରେ ବସି ତାଙ୍କରି କଥା ଭାବିଛି । ଅତୀତକୁ ନ ହଜାଇ ତା ସ୍ମୃତିକୁ ଏବେ ବି ଧରିରଖିଛି ।

ମନ ମୁକୁରରେ କେବଳ ଉଦାସ ଉଦାସ ଭାବ ।

ଉଠି ଠିଆହେଲି ପାପୁଲି ଭରି ଭଉଁରୀ ଖେଳି ବୁଲୁଥିବା ଉଶୃଙ୍ଖଳ ପାଣିରୁ ଆଞ୍ଜୁଳାଏ ତୋଳିଧରି ଅଜଣା ବିଶ୍ୱମୋହନଙ୍କ ଅତୃପ୍ତ ଆତ୍ମା ଉଦ୍ଦେଶ୍ୟରେ ଅର୍ପଣ ଟେକି ଦେଲା ପରେ ଆମେ ଫେରିଆସିଲୁ ।

୦

# ଜମାନବନ୍ଦୀ

ଅବିକଳ ତୋରି ପରି ଚେହେରା । ରୂପର ତାଳମେଳ ସେପରି ବିଶେଷ କିଛି ନୁହେଁ, କେବଳ ଦେହର ରଙ୍ଗ ସିନା ମୋ ପରି; କିନ୍ତୁ ଗଢ଼ଣ ତୋ ସଙ୍ଗେ ପ୍ରାୟ ମିଶି-ଯାଉଛି । ତୋରି ନାକ, ଆଖି; ତିର୍ଯ୍ୟକ ଭ୍ରୂଲତା, ଓଠ ଓ କାନ ଆଉ ତୋରି ମୁହଁ ।

ବେଶ୍ ସାବଲୀଳ, ସରଳ ସୁସ୍ପଷ୍ଟ ତାଙ୍କର ବକ୍ତବ୍ୟ, ନିଜ ପୁଅ ବିଜୁ ସମ୍ପର୍କରେ । ବିଜୁ ଶେଖରଙ୍କ ଏକ ମାତ୍ର ପୁଅ । ବିଦେଶରେ ଡାକ୍ତରୀ ପଢ଼ିଲା ପରେ ବର୍ତ୍ତମାନ ଆମେରିକାରେ ଏକ ଖ୍ୟାତନାମା ହସ୍ପିଟାଲରେ ଡାକ୍ତର ।

ଅସୀମ ଶେଖରର କଥାକୁ ଶୁଣି ଗଭୀର ଅନ୍ତର୍ନିରୀକ୍ଷଣ ଦେଇ କିଛି ଚିନ୍ତା କରିବା ପରି ମନେ ହେଉଥିଲେ ।

ରୁନୁ ପାଇଁ ବିଜୁ କିପରି ପାସପୋର୍ଟ, ଭିସା ବ୍ୟବସ୍ଥା କରିବାକୁ ବ୍ୟସ୍ତ ରହୁଛି । ସର୍ବୋପରି ବିଜୁକୁ ଶେଖର ଯେତେ ବୁଝାଇଲେ ମଧ୍ୟ ସେ କେମିତି ଅବୁଝା ହେଲାପରି ଆମେରିକାରେ ସିଟିଜେନ୍‌ସିପ୍ ନେଇ ସେଠାରେ ରହିଯିବାକୁ ଚାହୁଁଛି; ଏବଂ ସୁବିଧା ସୁଯୋଗ ପାଇଲେ ସମୟ ଦେଖି କେବେ କେମିତି ଫେରିଆସି ବୁଢ଼ା ବାପାଟିକୁ ଦେଖି ଆମେରିକା ଫେରିଯିବାକୁ ବିଜୁର ମତିଗତି ଜାଣିବା ପରେ ଶେଖର ଯେ ଅଡୁଆ ପରିସ୍ଥିତିରେ ପଡ଼ିଯାଇଛି ଭାବି; ଅସୀମ ଚିନ୍ତାର ଯନ୍ତାରେ ପଡ଼ିଗଲା ପରି ବୋଧ ହେଉଛି । ଶେଖର ମନର ଅବଶୋଷକୁ କ'ଣ କହି ସେ ଆଶ୍ୱାସନା ଜଣାଇବ ଭାବିପାରୁ ନାହିଁ । ଆଗରୁ ବିଜୁ ସମ୍ପର୍କରେ ଅସୀମ ସେପରି ବିଶେଷ ଅଧିକ ଖବର ରଖିନି କି ରଖିବା ଆବଶ୍ୟକ ମନେ କରିନାହିଁ ।

ଶେଖରର ତା' ନିଜ ଚେହେରାର ସାମଞ୍ଜସ୍ୟ ପୁଅ ବିଜୁ ସଙ୍ଗେ ନ ରହି ଅସୀମ ସହ ମେଳକ ରହିଥିବା ଖବର ଶେଖର ମୁହଁରୁ ଶୁଣିବା ପରେ ଅସୀମ ମନରେ କାହିଁକି କେମିତି ବିଜୁକୁ ଟିକିଏ ଦେଖି ନେବାକୁ ମନ ବ୍ୟତିବ୍ୟସ୍ତ ହୋଇଉଠିଲା । ଶେଖରର କଥା କାଟି ନ ପାରି ଦୀର୍ଘଦିନ ବ୍ୟବଧାନ ପରେ ବିଜୁର ବାହାଘର ହୋଇଯାଇଥିବାର କେତୋଟି ଦିନ ପରେ ଶେଖରର ଘରେ ପାଦ ରଖିଥିଲା ଅସୀମ ।

ଅସୀମକୁ ବିଜୁ ଓ ରୁନୁ ସହ ପରିଚୟ କରାଇଦେଇଥିଲା ଶେଖର ।

ପ୍ରତିଦିନ ଅପରାହ୍ଣରେ ଶେଖରର କାନ୍ଧରେ ହାତ ରଖି କିଛିବାଟ ଚାଲବୁଲ୍ କରି ଫେରନ୍ତି ଦୁଇବନ୍ଧୁ । ଯଦିଓ ଦୁଇବନ୍ଧୁଙ୍କୁ ବାର୍ଦ୍ଧକ୍ୟ ଆସିଛି, ତଥାପି ଶେଖର ମିଲିଟାରୀ ଆଦବ କାଇଦାରେ ଥିଲାରୁ ଅସୀମ ପରି ଏତେ ଦୁର୍ବଳ ନୁହେଁ ।

ସେଦିନ ଶେଖରର ଘରୁ ଫେରି ଦୁହେଁ ଧୀରେ ଧୀରେ ଆଗକୁ ଚାଲୁଥାଆନ୍ତି, ନୀରବତା ଭାଙ୍ଗି ଅସୀମ ପ୍ରଥମେ କହିଲା—

ଅନେକ ଦିନରୁ ତୋ ନିକଟରେ କଥାଟିଏ ମୁଁ ଲୁଚାଇ ରଖିଛି । ଅବଶ୍ୟ ପାପୀ ଅପରାଧୀ ଭାବି ଭୟରେ ତୋ ନିକଟରେ ମୁଁ କହିପାରିନି । ଆଜି ଭାବୁଛି ତୋ ନିକଟରେ ସବୁ ଖୋଲି କରି କହିବି ।

ଯଦି ନ କୁହେ ମନ କହୁଛି ବୋଧହୁଏ ମଶାଣିରେ ମୋ ଚିତାର ଶେଷ ଦୀପ୍ତଶିଖା ନ ଲିଭିବା ପର୍ଯ୍ୟନ୍ତ ମରି ମଧ ଜଳି ଜଳି ସ୍ମୃତିଚାରଣ କରିବ, ତୁ ଶେଖର ପାଖରେ ଏପରି ଏକ କଥା ଲୁଚାଇ ରଖି ସବୁଦିନ ପାଇଁ ଦୋଷୀଟିଏ ହୋଇ ରହିଗଲୁ । ସବୁଦିନ ଡରି ଡରି ଆଜୀବନ ଶେଖର ପାଖରେ ଆସାମୀଟିଏ ହୋଇ ବଞ୍ଚିବାକୁ କେମିତି ପସନ୍ଦ କଲୁ ?

ହୁଏତ ତୁ ମୋତେ କ୍ଷମା ନ ଦେଇ ରାଗରେ ଗର୍ଜିଉଠି ମୋ ତଣ୍ଟି ଚିପି ଶ୍ୱାସରୁଦ୍ଧ କରି ଜୀବନ ନେଇପାରୁ; କିନ୍ତୁ ମୁଁ ଆଜି ତୋ ନିକଟରେ ସତ କଥା ନ କହି ରହିପାରିବିନି, ମନରେ ଅବଶୋଷ ରଖି ମୁଁ ଜମାରୁ ମରିପାରିବିନି ।

ଶେଖର ଶୁଣୁଥିଲେ ଖୁବ୍ ଧ୍ୟାନରେ ।

ଏକ ଶୀତ ଶ୍ରାନ୍ତ ଭିଜା ଭିଜା ସନ୍ଧ୍ୟାରେ ତୋର ବିବାହ ବାର୍ଷିକୀ ପାଳନ ଅବସରରେ ତୋ କ୍ୱାଟର୍ସରେ ଡିନର୍ ପାଇଁ ମୁଁ ଉପସ୍ଥିତ ଥିଲି । ଏହା ପ୍ରାୟ ତିରିଶ ବର୍ଷ ତଳର ଘଟଣା ? ଆମେ ଥିଲେ ଶିଲଂରେ ।

ଶେଖର କିଛି କହୁ ନ ଥାଏ ।

ମିତା ଶେଖରର ସୁନ୍ଦରୀ ସ୍ତ୍ରୀ । ଅନିନ୍ଦନୀୟା ରୂପବତୀ । ଖୋଜିଲା ଖୋଜିଲା ଆଖି । ରେଶମୀ ଭାଙ୍ଗ ଭଙ୍ଗା କୁନ୍ତଳିନୀ, ଦୁଧଅଳତା ଓଠ ଆଉ ତେଜଦୀପ୍ତ ମୁଖଶ୍ରୀ ।

ଖୁବ୍ ପାଖରେ ତୁମ ଦମ୍ପତିଙ୍କୁ ଦେଖି ମୁଁ ସହିପାରୁ ନ ଥାଏ । ଝିପିଝିପି ବର୍ଷା ସହ ବାହାରେ ଅନ୍ଧାର ରାତି । ହଠାତ୍ ପୋର୍ଟିକୋରେ ଜିପ୍ ରହିବାର ଶବ୍ଦ । ଖବର ଆସିଥିଲା ତୋ ପାଖକୁ । ଜରୁରୀ ଡାକରା ପାଇ ତୁ ମିଲିଟାରୀ କ୍ୟାମ୍ପକୁ ଦୁଇଘଣ୍ଟା ପାଇଁ ଯାଇଥିଲୁ । କହିଯାଇଥିଲୁ—ଡିନର୍ ମିତା ସହ ଖାଇନେବାକୁ । ଆଉ ଫେରିଲେ ନିଜେ ଗାଡ଼ି ଡ୍ରାଇଭିଂ କରି ଛାଡ଼ି ଆସିଥାଆନ୍ତୁ ମୋ କ୍ୱାଟର୍‌ରେ । ବର୍ଷାରେ ଭିଜି ନ ଯିବାକୁ କଡ଼ା ତାଗିଦ୍ ମଧ ଦେଇଥିଲୁ । ମିତା କିନ୍ତୁ ତୋ କଥା ଶୁଣି ସେଦିନ ଢେର ହସିଥିଲା । "ହୁଁ, ଇଏ ପୁଣି ନିଜେ ନେଇ ଗାଡ଼ିରେ ଛାଡ଼ିବେ । ଅବାନ୍ତର ତାଙ୍କ କଥା—ପାହାଡ଼ ତଳକୁ ଗାଡ଼ି ଖସେଇଦେବେ, ତାଙ୍କ ଉପରେ କ'ଣ ଭରସା ରଖାଯାଇପାରେ । ରାତିରେ କ୍ୟାମ୍ପରୁ ଫେରି ମୁଡ୍‌ରେ ଥିଲେ ସିନା ।"

ତୁ ଯିବା ପରେ ତୋ ପ୍ରସଙ୍ଗରେ ମିତା କଣ୍ଠରେ ଅଭିମାନଭରା ସ୍ୱର । ଶୁଣିଲି ତୁ କୁଆଡ଼େ ପ୍ରାୟ ଅଧିକାଂଶ ଦିନ ମଦ ପିଇ ଟଳି ଟଳି ରାତିରେ ଘରେ କିଛି ନ ଖାଇ କ୍ଲବ୍‌ରୁ ଫେରି ଶୋଇଯାଉ ସେମିତି । ଦିନରେ ଯେତେ ସମୟ ଘରେ ରହୁ

ସିଗାରେଟ୍ ଧୂଆଁ ଅନବରତ । କ୍ଲବ୍, ବଟଲ୍, ଫ୍ରେଣ୍ଡସ୍ ଏ ସବୁକୁ ଘୃଣା କରୁଥିଲା ମିତା । ତୁ ମିତାର ମନ ନେଇ ପାରୁ ନ ଥିବାର ସ୍ୱୋକ୍ତି ମୁଁ ବେଶ୍ ବାରି ପାରୁଥାଏ ମିତାର ମୁହଁରୁ । ମିତା ତା'ର ନିଜ ପଣତରେ ଅଜଣାରେ ଗଡ଼ିଯାଉଥିବା ଲୁହକୁ ପୋଛି ଦେବାକୁ ଯାଇ ମୋ ଆଖିରେ ଧରା ପଡ଼ିଯାଇଥିବାରୁ ସେ ଲାଜେଇ ଗଲା ।

ତିନବ୍ ପରେ ସଙ୍ଗେ ସଙ୍ଗେ ଫେରିଯିବା ଉଚିତ୍ ହେବନାହିଁ କହି, ମିତା ତୋ ଫେରିବା ପର୍ଯ୍ୟନ୍ତ ଗପସପ କରିବାକୁ ଅନୁରୋଧ କଲା । ବିଦ୍ୟୁତ୍ ଆଲୋକରେ ମିତାର ଆଖି ଏକ ଅଜଣା ମୁହୂର୍ତ୍ତରେ ମୋ ଆଖି ସହ ମିଶିଗଲା ।

ହାତରେ ମାଗାଜିନ୍‌ଟିଏ ପାଖ ସେଲ୍‌ଫରୁ ଟାଣି ଆଣି ପୃଷ୍ଠା ପରେ ପୃଷ୍ଠା ଲେଉଟାଇବାରୁ ଅକ୍ଷର ଯାକ ସତେଯେପରି ଡେଇଁପଡ଼ିଲେ ।

ଧାଡ଼ିଟିଏ ପଢ଼ି ହେଲାନି ।

ପୁଣି ମିତାକୁ ଅନାଇବାକୁ ଚେଷ୍ଟାକରି କହିବା କହିବା ହୋଇ ଆଖି ମୋର ସ୍ଥିର ହୋଇଗଲା ।

ମିତାର ପଲ୍ଲବିତ ଚିବୁକର ଗୋଟାଏ କଣ ଥରିଗଲା । ସେତେବେଳକୁ ମିତାର ଗପର ଖିଅ ଲଟେଇ କେତେ କୁଆଡ଼େ ମାଡ଼ିଗଲାଣି ।

ଦୂର ଗୀର୍ଜାରୁ ରାତିର ସମୟ ଏଗାର ବାଜିଯିବାର ଶବ୍ଦରେ ତରବର ହୋଇ ଉଠିପଡ଼ିଲି କ୍ୱାଟର୍ସକୁ ଫେରି ଆସିବାକୁ ।

ହଠାତ୍ ଘଡ଼ଘଡ଼ିର ପ୍ରକମ୍ପରେ ସାରା ସହରଯାକର ବିଜୁଳି ଚାଲିଗଲା ।

ଭୟ ଓ ଆଶଙ୍କାରେ ମିତା ମୋତେ ଜାବୋଡ଼ି ନେଲା । ମିତାର ନରମ ବାହୁର ସ୍ପର୍ଶ । ଜୁଡ଼ାରେ ସଜ୍ଜିତ ହେନା ଫୁଲର ମହକ ଓ ତା' ଛାତିର ଚାପ ମୋ ଛାତିକୁ ଛୁଇଁ ଛୁଇଁ ମୋର ସେଦିନର ଯୁବସୁଲଭ ନିଶ୍ୱାସ ପ୍ରଶ୍ୱାସର ପ୍ରଖର ବେଗର ଆବେଗକୁ ମାପି ଚାଲିଥିଲା ମିତା ।

ଜୀବନରେ ପ୍ରଥମ ଥର ପାଇଁ ଅପ୍ରତ୍ୟାଶିତ ଭାବରେ ନିରୋଳ ନିଶାର ନିର୍ଜନ ପ୍ରହରରେ ମୁଁ ମିତା ସହ ଉପଭୋଗ ପ୍ରବଣ ତରୀରେ ଭାସି ବୁଲିଲି ।

ପରେ ତୁ ପହଞ୍ଚି ଯାଇଛୁ—ମିତା ଆଉ ମୋ ଭାବପ୍ରବଣ ଅବସ୍ଥାକୁ ତୋ ଝୁମିଲା ନିଶା ଆଖିରେ ଧରି ପାରିଲୁନାହିଁ । ବେପରୁଆ ଭାବରେ କାହାକୁ କିଛି ନ କହି ବେଡ଼୍‌ରୁମ୍‌କୁ ସିଧା ପଶିଗଲୁ ।

କୁଣ୍ଡାଝଡ଼ା ବର୍ଷାରେ ସାମାନ୍ୟ ଭିଜି ଭିଜି ଭାରିମନ ନେଇ ମୁଁ କ୍ୱାଟର୍ସକୁ ଫେରିଆସିଥିଲି ସେଦିନ । ଇଚ୍ଛା ନ ଥାଇ ମଧ୍ୟ ମିତା ସହ ପରକୀୟା ପ୍ରୀତିରେ ଲିପ୍ତ ଥିବାରୁ ମିତାର ଅଜଣା ମନର ସେଇ ନିଟୋଳ ଭରା ଉଚ୍ଛଳ ଲାବଣ୍ୟ ପାଖରେ

ହାର୍ ମାନି ଥିବାରୁ, ସବୁଦିନ ପାଇଁ ଅବିବାହିତ ରହିଗଲି । ତୋ ପାଖରେ ଜଣେ ପ୍ରବଞ୍ଚକ ପ୍ରତାରକ ଏବଂ ବନ୍ଧୁତାର ମିଛ ଅଭିନୟ କରି ଆସୁଥିବାରୁ ନିଜକୁ ଜଣେ ପାପୀ ଆସାମୀ ଭାବରେ ସାବ୍ୟସ୍ତ କରିନେବାକୁ ସ୍ଥିର କରିଛି । ଅନେକଥର ମିତାକୁ ତୋ ସହ ଏ ସହରରେ ଦେଖି ମଧ୍ୟ ସାହସ କରି ମୁହାଁମୁହିଁ ହୋଇପାରିନି ।

ଶୁଣିଛି ପୁଅଟିଏ ଜନ୍ମ ହେବାର ଅଳ୍ପଦିନ ପରେ ହେଡ୍‌ରିଲିଂ ହୋଇ ଷ୍ଟେଆର୍‌କେଶ୍‌ରୁ ପଡ଼ିଯିବାରୁ ଟିଟାନସ୍‌ରେ ମୃତ୍ୟୁ ହୋଇଛି ମିତାର । ମିତାର ମରିବା ଖବର ପାଇ ମୁଁ ମୂକ ପ୍ରାୟ ଦୁଃଖରେ ମ୍ରିୟମାଣ ହୋଇଛି । ଆଜି ସତୁରୀ ବର୍ଷ ବୟସରେ ଆଗପଛ ହୋଇ ଆମେ ଦୁହେଁ କେଉଁ ମୁହୂର୍ତ୍ତରେ ମିତାର ପଥ ଧରିବା କହିହେଉନି । ତଥାପି ମୋର ଏତିକି ଅନୁରୋଧ ଶେଖର ! ଡେରିରେ ହେଲେ ବି ତୋ ନିକଟରେ ଆଜି ସତ କଥାଟି କହିଦେଇଛି । ଏବେ ମୋ ଦୁଃଖ ପ୍ରଶମିତ ହୋଇଯିବ ।

ତୁ ମୋତେ କ୍ଷମା କରିଦେ ।

ତୋ ମୁହଁରୁ ଥରେ କେବଳ ଶୁଣିବାକୁ ଚାହୁଁଛି କହ । ତୁ ମୋତେ କ୍ଷମା ଦେଲୁ ବୋଲି ।

କାନ୍ଦ କାନ୍ଦ ହୋଇ ଶେଖରର ହାତକୁ ଧରିନେଇ ଏତିକି କହି ନୀରବ ରହିଗଲା ଅସୀମ ।

ଖୁବ୍ ବେଳୁ ନୀରବ ରହିଯାଇଥିବା ଶେଖର ଜୋରରେ ମନଖୋଲା ହସ ହସି ସାରା ନିସ୍ତବ୍ଧ ପରିବେଶକୁ ସତେ ଯେମିତି ଚହଲାଇ ଦେଲା । ସେ ହସର ଲହରୀରେ ତା'ର ମିଲିଟାରୀ ଦୁଃସାହସିକ ପ୍ରତିରୋଧ ଶକ୍ତି ଏ ପରିଣତ ବୟସରେ ବି ଜଣାଗଲା ।

ଓଭରକୋଟ୍ ଭିତରୁ କ୍ଷଣକ ମଧ୍ୟରେ ରିଭଲଭର୍‌ଟିକୁ ବାହାର କରି ଉତ୍ତେଜକ ସ୍ୱରରେ ଗର୍ଜି ଉଠିଲା ଶେଖର ।

''ହଁ, ଅସୀମ ! ମୁଁ ଡ୍ରିଙ୍କ୍ କରେ । ମୁଁ କ୍ଲବ୍ ଯାଏ । ମୁଁ ମିତାକୁ ଭଲ ପାଉ ନ ଥିଲି ବୋଲି କ'ଣ ତାର ସୁଯୋଗରେ ମୋ ପୁରୁଷାର୍ଥକୁ ତୁ ତାଚ୍ଛଲ୍ୟ କରି ମୋ ସ୍ତ୍ରୀ ସହ ତୁ...

ନା... ନା... ତୋତେ ମୁଁ କୌଣସି ଉପାୟରେ କ୍ଷମା ଦେବିନି । ମୁଁ ପ୍ରତିଶୋଧ ନେବି, ପ୍ରତିଶୋଧ... ।

ଦୀର୍ଘଦିନର ସଞ୍ଚିତ ପାପବୋଧରୁ ମୁକ୍ତି ପାଇଯିବାକୁ ଅସୀମ ଟ୍ରିଗାର ଚିପି ଦେବାକୁ ଶେଖରକୁ ବାରମ୍ବାର ଅନୁରୋଧ କଲା ।

କିନ୍ତୁ !

ଶେଖରର ହାତରୁ ରିଭଲଭରଟି ଖସିଯାଇଛି । ଆଖିରୁ ଲୁହ ଥପ୍ ଥପ୍ ଝରି-ପଡ଼ିଛି । ଦୁଃଖ ଓ ଅନୁତାପରେ ଭାଙ୍ଗିପଡ଼ି ଉଦାସ କଣ୍ଠରେ ସେ ଫେରିଗଲା ଅତୀତକୁ ।

ଯୁଦ୍ଧରେ ଆହତ ହୋଇ ଅପରେସନ୍‌ରେ ପ୍ରଜନନ ଶକ୍ତି ହରାଇ, ଜାଣି ଶୁଣି ମିତାର ଅପରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାକୁ ବିବାହ ନ କରି ରହିପାରିଲିନି । ମିତା ମନରେ ଦୁଃଖ ନ ଦେବି ଭାବି ମୋ ଔରସର ସନ୍ତାନ ତାକୁ ଦେଇ ପାରିବିନି ବୋଲି ତାକୁ ଲୁଚାଇ ରଖିବାକୁ ବାଧ୍ୟ ହୋଇଥିଲି । ପୁରୁଷ ହୋଇ ସ୍ୱାମୀତ୍ୱର ଅଧିକାର ଜାହିର୍ କରୁଥିବା ସ୍ୱାମୀ ଯେ ପୌରୁଷତ୍ୱ ହରାଇ ଦେଇଛି କହିବା କ'ଣ ସମ୍ଭବ ଅସୀମ ।

ଅନେକ ଚେଷ୍ଟା କରି ମୋ ଜିଭ ଓଲଟିନି ତା ନିକଟରେ । ତୁ ଯାହା ଆଜି ଏତେ ବର୍ଷ ପରେ ଶୁଣାଇଲୁ, ସିଏ ମୋତେ ତାର ମରିବା ପୂର୍ବରୁ ଖୋଲା ଖୋଲି ଭାବେ କହି ଆଗରୁ କ୍ଷମା ମାଗିନେଇଛି । ତଥାପି ମୁଁ ମୋ ବିଷୟରେ ସତକଥାଟି ତା' ପାଖରେ ପ୍ରକାଶ କରିପାରିଲିନି ।

ଭାବି ଦେଖିଲୁ ଅସୀମ !

ସେ ଥିଲା କେତେ ସରଳ, ଖୋଲା ଓ ମହତ ହୃଦୟର ।

କିନ୍ତୁ !

ମୁଁ ।

ସନ୍ଦେହର କୁହୁଳି ଭିତରେ ଜୀବନଯାକ ଜଣେ ମିଥ୍ୟାବାଦୀ ଆଉ ସ୍ତ୍ରୀ ଦ୍ରୋହୀ... । ଭଲ ପାଇବାର ନାଁରେ ମୁଁ ଖାଲି ପ୍ରତାରଣା ଆଉ ମିଥ୍ୟା କହିଛି । ଏଭଳି ଏକ ଅକ୍ଷମଣୀୟ ଅପରାଧ ପାଇଁ ମୁଁ ହିଁ ଦଣ୍ଡ ପାଇବା ଉଚିତ ।

ଏତେ ଦିନ ପରେ ତୁ ତୋ ମନର ଗ୍ଲାନି ପାପବୋଧକୁ ମୋ ନିକଟରେ ପ୍ରକାଶ କରି ଆଜି କ୍ଷମା ମାଗୁଛୁ ।

ଆଉ ଜଣେ ମୃତ୍ୟୁ ପୂର୍ବରୁ ତୁ ହିଁ ସେଇ ନିଛକ ମଣିଷଟି ଥିଲୁ କହି ମୋ'ଠାରୁ କ୍ଷମା ନେଇ ସାରିଛି ।

ଆଜି ମୁଁ ?

କାହାକୁ କହି କ୍ଷମା ମାଗିବି ଆଉ କିଏ ମୋତେ କ୍ଷମା ଦେବ ?

ସହିବାର ସୀମା ଅତିକ୍ରମ କଲାପରି ଶେଖରକୁ ମନେ ହେଲା । ଆଉ ଯେପରି କ୍ଷଣେ ବଞ୍ଚିରହିବାକୁ ସେ ଆଦୌ ପସନ୍ଦ କଲାନି ।

ଦୀର୍ଘଶ୍ୱାସଟିଏ ପରେ ଅସୀମ, ଶେଖରର ଆହତ ଦବିଲା ମନକୁ ଆଶ୍ୱାସନା ଦେବାକୁ ଯାଇ ତାର ଦୁର୍ବଳ ଦୁଇ ହାତକୁ ଶେଖରର ଛାତିରେ ଚାପି ଧରିଲା ।

୦

# ଅନ୍ୟ ଆକାଶର ସୂର୍ଯ୍ୟୋଦୟ

ଯଦି ସକାଳ ହେବାକୁ ଅପେକ୍ଷା କରାଯାଇ ଥାଆନ୍ତା ତେବେ ଡେରି ତ ସ୍ୱାଭାବିକ; କିନ୍ତୁ ସେତେବେଳକୁ ମୁଣ୍ଡ ଉପରକୁ ସୂର୍ଯ୍ୟ କଅଁଳା ବାଛୁରୀ ପରି ଡେଇଁପଡ଼ି ହାତଘଣ୍ଟାରେ ସମୟ ଏଗାରକୁ ଛୁଅଁନ୍ତା । ଗତ ରାତିରୁ ଚୌକିଦାର ଶୁକ୍ରୁଜାନୀଠୁଁ ଏଇ ଖବରଟି ବୁଝିନେଇ ବାରମ୍ବାର ଘଣ୍ଟା ଦେଖୁଥାଏ ସୁଦୀପ୍ତ ।

ଶେଷ ପୌଷର ପାହାନ୍ତି କୁଆଁତାରା ନଇଁ ମଉଳିବା ଉପରେ ଥାଏ । ଉତ୍ତୁଙ୍ଗ ପର୍ବତମାଳା ଦେଓମାଳିର ଶିଖରରେ । ବାହାରେ କୁହୁଡ଼ିମୟ ପାହାଡ଼ ପର୍ବତ ଘେରା ଅଞ୍ଚଳଟି ସତେଯେମିତି ଶୀତ ଆଉ ଶିଶିରର ବଳୟ ଭିତରେ ପଶିଯାଇ ମୁକ୍ତି ଅନ୍ୱେଷଣରେ ଶ୍ୱାସରୁଦ୍ଧ । ପରିବେଶ ଶାନ୍ତ ନିଥର ।

କାକରମିଶା ପବନରେ ମୁଁ ଆଉ ସୁଦୀପ୍ତ ଡାକବଙ୍ଗଳାରୁ ବାହାରି ପ୍ରକୃତିର ରୂପକାନ୍ତିରେ ନିଜକୁ ଜଡ଼େଇ ବିଭୋର ହୋଇ ଆଗେଇ ଯାଉଥିଲୁ ।

ଏପରି ଏକ ସ୍ଥାନରେ ନୂଆ ହୋଇ ଆସି ଦୁଃସାହସ କରି ବଣୁଆ ଜାଗାରେ ଅନୁସନ୍ଧାନ କରିବା ମୋ ଧାରଣାର ବାହାରେ ଥିଲା । ସୁଦୀପ୍ତ ଆଗରୁ ଥରେ ଦୁଇଥର ଆସି ତା' ସମ୍ପର୍କୀୟ ଭାଇ ଯିଏ କି ଏଠାରେ ଆଗରୁ ଚାକିରି କରିଥିଲେ ତାଙ୍କ ନିକଟରେ ରହି ବୁଲି ଫେରିଥିବାରୁ ସେ ବେଶ୍ ସାହସୀ ପଦକ୍ଷେପ ନେଇ ଶୁକ୍ରୁଜାନୀର ବାରଣ ସତ୍ତ୍ୱେ ପର୍ବତ କନ୍ଦରର ପ୍ରତ୍ୟକ୍ଷ ଦେବୀ ଗଙ୍ଗାମା'ଙ୍କ ଦର୍ଶନ କରିବାକୁ ମୋତେ ଆଜି ସାଥୀ କରିଛି ।

କାଳେ ମୁଁ ଭୟଭୀତ କିମ୍ବା ଫେରିଯିବାକୁ କହିଦେବି, ମୋତେ ଭାବିବାକୁ ସମୟ ନ ଦେଇ ସୁଦୀପ୍ତ ନୀରବତା ଭାଙ୍ଗି କହିଲା—

ଦଶବର୍ଷ ତଳେ ତୁ ସେତେବେଳେ ସ୍ନାତକୋତ୍ତର ଶ୍ରେଣୀର ଛାତ୍ର । ମନେଥିବ ଏଇ ଅଳିକ ସଂସାରର ମୋହ ମାୟା ଧନର ନିଶା ତ୍ୟାଗ କରି ଆମର ପବିତ୍ର ଜୀବନକୁ ଜନସେବାରେ ଜଡ଼ିତ କରି ଜୀବନର ସ୍ୱାଦୁ ଉପଲବ୍ଧି କରିବାକୁ ଯେଉଁଦିନ ତୁ ହଷ୍ଟେଲ ଛାତ୍ରମାନଙ୍କୁ ଘଣ୍ଟାଏ ସମୟ ମନ୍ତ୍ରମୁଗ୍ଧ କରି ଭାଷଣ ଦେଇଥିଲୁ ଠିକ୍ ପରଦିନ ସକାଳୁ କାହାକୁ କିଛି ନ କହି ଦୁଇମାସ ଫେରାର ହୋଇଯାଇଥିଲୁ ଓଡ଼ିଶାରୁ । ମନେ ପଡୁଛି ତୋର ।

ଆଉ ପୁଣି ତୋ ବାପା ମା' ବନ୍ଧୁ ପରିଜନ ଅଧ୍ୟାପକମାନଙ୍କ ମଧ୍ୟରେ ତୋତେ ଖୋଜିବାର ଯେଉଁ ଗଭୀର ଆଲୋଡ଼ନ ଏବେ ବି ମୁଁ ଚିନ୍ତା କଲେ ହସି ହସି ବେଦମ୍ ହୋଇଯାଏ । ତା' ଖୋଲାହସରେ ନିସ୍ତବ୍ଧତା ଅପସରିଗଲା । ବୁଲି ବୁଲି ପରିବ୍ରାଜକ

ମନ ନେଇ ହିମାଳୟର ପାଦଦେଶ ଆଉ ତାର ସବୁ ସହର । କାଶ୍ମୀର, ମସୌରୀ, ଦାର୍ଜିଲିଂ ସବୁଠି ରହିଛୁ । ଭାବି ଦେଖି କହିଲୁ, ଯେଉଁଠି ଆମେ ପହଞ୍ଚିଛୁ, ଏଭଳି ସ୍ଥାନଟିଏ ତୁ ଆଗରୁ ଦେଖିଛୁ କି ?

ସୁଦୀପ୍ତର ମୁଖମଣ୍ଡଳରେ ଉତ୍ତର ପାଇବାର ଅନୁସନ୍ଧିତ୍ସୁ ଆବେଗ । ବିଗତ ଦିନର ମୋ ଜୀବନର ଗୋଟିଏ ଅଲୋଡ଼ା ସ୍ମୃତିକୁ ଏବେ ବି ସେ ମନେ ରଖିଛି ଜାଣି ଖୁସି ହେଲି ।

କାଲିଠୁ ଆସି ଦେଖୁଛି ଲୋକମାନଙ୍କ ପାଖରେ ଆଧୁନିକତାର ଛାପ, ମୂଲ୍ୟବୋଧ ଯଦିଓ ନାହିଁ; କିନ୍ତୁ ସ୍ଥାନଟିର ଜଳବାୟୁ, ପ୍ରକୃତିର ଖୋଲା ନିରୋଳା ପରିବେଶ ପାଇଁ ମୁଁ ଅଭିଭୂତ ।

ଆମ ପାଦ ପାଖରେ ସୁଉଚ୍ଚ ଅପହଞ୍ଚ ଦୁର୍ଗମ ପର୍ବତ ଚୂଡ଼ାରୁ ଚଳଚଞ୍ଚଳା ଝରଣାଟି କଳ କଳ ହୋଇ ବହିଯାଉଥାଏ ବୁଦୁ ବୁଦୁକିଆ ଗଛର ଚେର ଛୁଇଁ । ଉଦ୍ଦେଶ୍ୟ ଆମର ଆଦିବାସୀ ଗଦ୍‌ବା ସମ୍ପ୍ରଦାୟର ଗ୍ରାମଦେବୀ ଗଙ୍ଗାମା'ଙ୍କୁ ଦର୍ଶନ କରି ଫେରି ଆସିବୁ ଶୁକ୍ରୁଜାନୀର ମଦ ନିଶାର ନିଦ ଭାଙ୍ଗିବା ପୂର୍ବରୁ । ପାଦ ଚଞ୍ଚଳ କଲୁ । ପର୍ବତ ମଝିର ଏକ ଅଜ୍ଞାତ କଣରେ ସେ କୋଡ଼ିଏ ଫୁଟର ମନ୍ଦିରଟି । ଅଦ୍ଭୁତ ତାଙ୍କର କରୁଣା । ସତ୍ୟ ହୁଏ ତାଙ୍କର ଆଶୀର୍ବାଦ । ବର୍ଷର ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ ଗଦ୍‌ବାମାନେ ସେଠାରେ ପହଞ୍ଚି ସେମାନଙ୍କର ଭକ୍ତି ଅର୍ଘ୍ୟ ଅର୍ପଣ କରନ୍ତି । ଦଳ ଦଳ ହୋଇ ସେମାନେ ଢୋଲ ମହୁରି ଟମକ ବଜାଇ ପାହାଡ଼ ଚଢ଼ି ପହଞ୍ଚନ୍ତି ମନ୍ଦିରରେ । ବାଜା ଆଉ ମଦମତ୍ତ ଆଦିବାସୀଙ୍କ ମନ ଭରି ଗୀତରେ ବଣ ମୂଳକ ହୋଇଉଠେ ସେଦିନ ନିନାଦିତ । ସାରା ରାତି ଉଜାଗର ରହି ସଲପ ଗଛର ମଦ ପିଇ ନାଚି ନାଚି ବର୍ଷକ ପାଇଁ ଆରାଧନା କରି ଫେରନ୍ତି ସେମାନେ ।

ହାତରେ ସେମାନଙ୍କର ମେଞ୍ଚାଏ ହଳଦିଆ ମନ୍ଦାର ଓ କଦମ୍ବ ଫୁଲ । ଗଦ୍‌ବା ନାରୀର ଜୁଡ଼ାରେ ସୁଶୋଭିତ ଗୁନ୍ଥା ଯାଇଥିବା କଦମ୍ବ, ମନ୍ଦାର ଫୁଲର ମିଶାମିଶି ମାଳ । ମନ୍ଦିର ଚତୁଃପାର୍ଶ୍ୱରେ କଦମ୍ବ ଆଉ ହଳଦିଆ ମନ୍ଦାର ଗଛର ଘଞ୍ଚ ବନାନୀ । ବର୍ଷର ସବୁ ଋତୁରେ ଗଙ୍ଗାମା'ଙ୍କ ଆଶୀର୍ବାଦରେ ଏଥିରେ ଫୁଟେ ସଦାସର୍ବଦା ଫୁଲ । ସାରା ପଚିଶ କୋଶ ଅଞ୍ଚଳରେ ଅରଣ୍ୟରାଜିରେ ଖୋଜିବୁଲିଲେ ମିଳେନି ଗୋଟାଏ କଦମ୍ବ କି ମନ୍ଦାର ଗଛ । ଶୁକ୍ରୁଜାନୀର କଣ୍ଠରେ ଏମିତି ସାବଲୀଳ ବର୍ଣ୍ଣନା ଚାତୁରୀର ଅନୁଲିପ୍ତ ସ୍ୱର୍ଶ ।

ଅନ୍ୟ ଦିନରେ ଭୁଲରେ ଯଦି କେହି ପାହାଡ଼କୁ ଯାଇ ଗଙ୍ଗାମା' ମନ୍ଦିରରେ ମାଟି ଛୁଇଁଲା ତେବେ ଅନାମ ବାବାର ଭୂତ ସବାର ହେବ ତା' ଦେହରେ । କ୍ଷୁଧା ତୃଷ୍ଣା ଛାଡ଼ି ସେ ଉଦ୍ଦଣ୍ଡ ନୃତ୍ୟ କରିବ । ଉନ୍ମାଦ ହୋଇ ପଞ୍ଜରା ହାଡ଼ ତାର ଗଣି

ହୋଇଯିବ । ଶେଷରେ କଙ୍କାଳସାର ହୋଇ ମରିଯିବ । ଯେତେ ଗୁଣି ଗାରେଡ଼ି କାଳିସି ସାଧକ ସବୁ ପଷ୍ଟେଇଯିବେ । ନିଦାଘର ପ୍ରଚଣ୍ଡ ଖରାରେ ଉତ୍ତପ୍ତ ପଥରରେ ବସି ସୂର୍ଯ୍ୟର ପ୍ରଖରତାକୁ ଚାହିଁ ଅନ୍ଧ ହେବାକୁ ଚାହିଁବ । ସର୍ବୋପରି ଅନିତ୍ୟ ଅସାର ସଂସାରରେ ସେ ବଞ୍ଚି ରହିବାକୁ କାମନା କରିବ ନାହିଁ । ତା' ବଂଶରେ କେହି ଅଛି ବୋଲି ସେ ଭୁଲିଯିବ ।

ନିର୍ଲିପ୍ତ ନିଷ୍କାମ ମନୋଭାବ ନେଇ ସପ୍ତାହ ଭିତରେ ସେ ମରିବ । ତା' ଆଖି ଆଗରେ ବୁଧୁଜାନୀ, ସୋମା କେହେରା, ଗୁରୁବାରୀ ମାଝୀ, ମଙ୍ଗଳା ହାଁସଦା, କୁଶହନହରା ଓ ଶତ୍ରୁ ମୁର୍ମୁଙ୍କର ଏଇଭଳି ଜୀବନ ଯାଇଛି, ଶୁକ୍ରୁଜାନୀ କାଲି ସନ୍ଧ୍ୟାରେ ଆମକୁ କହିଥିଲା ।

କି ଆଶ୍ଚର୍ଯ୍ୟ ଏ ଧାରଣା ଗଦ୍‌ବାଙ୍କର !

ଥରେ ଯେଉଁ ଧାରଣା ସେମାନଙ୍କ ମୁଣ୍ଡରେ ପଶିଯାଇଥାଏ, ସେ ଝୁଙ୍କ୍ କିଏ ବା ବଦଳାଇବ ? ଭୂତ ସବାର, ଅନାମ ବାବ ଆଉ ଦେବୀ ଗଙ୍ଗମା'ଙ୍କୁ ନେଇ । ପ୍ରତ୍ୟକ୍ଷ ଭାବରେ ଅନୁଭୂତିଟିଏ ଆମକୁ ମିଳିବ ।

ଏଇ ବିଷୟରେ ଅନୁସନ୍ଧାନ ପାଇଁ ଆମେ ଦୁଇଦିନ ସେଠାରେ ରହିବାକୁ ସ୍ଥିର କଲୁ ।

ଗଦ୍‌ବାମାନଙ୍କ ଭିତ୍ରରୁ କିଏ ଯଦି ଆମକୁ ଦେଖିଦିଏ, ମନ୍ଦିରରେ ଯଦି ଆମକୁ ଭୂତ ସବାର ହୁଏ ଏବଂ ସପ୍ତାହ ଭିତରେ ମୃତ୍ୟୁର ଭୟକୁ ଏଡ଼େଇ ଆମ ପାଦ ଆଗେଇ ଯାଉଥାଏ ।

ପର୍ବତଟିର ପାଦଦେଶ । ନାନା ଜାତି ବେନାମି ଜଙ୍ଗଲୀ ଫୁଲର ମହକରେ ସୁବାସିତ ପରିବେଶ ।

ଅଙ୍କାବଙ୍କା ଅସ୍ପଷ୍ଟ ପାଦଚଲା ରାସ୍ତାଟିଏ ସର୍ପିଳ ଗତିରେ ଗଡ଼ି ଆସିଛି ଉପରୁ । ଶୁକ୍ରୁଜାନୀର ନିଦା ଠେଙ୍ଗାଟି ହାତରେ ଧରିଛି ସୁଦୀପ୍ତ । ଲଟେଇ ପଡ଼ିଥିବା ଆବୁରୁଜାବୁରୁ କଣ୍ଟା ଗଛଗୁଡ଼ିକୁ ସେଥିରେ ଆଡ଼େଇ ବାଟ କଢ଼େଇ ନେଉଛି ସେ । କିଚିରି ମିଚିରି ହୋଇ ଅଜଣା ଟିକି ଟିକି ପକ୍ଷୀଙ୍କ ଫୁରୁରୁ କରି ଡେଣା ଝଡ଼ା ଶବ୍ଦରେ ମୋ ଦେହଟା ଶୀତେଇ ଉଠିଲା । ଶୁକ୍ରୁଜାନୀର କଥାରେ ବିଶ୍ୱାସୀ, ବାଘଭାଲୁ ଭରା ଜଙ୍ଗଲଘେରା ଇଲାକାରେ ଦି' ଦିନର ଅତିଥି ସାଜି ନିର୍ବିଘ୍ନରେ ଅଜଣା ସ୍ଥାନକୁ ଯିବାକୁ ମନ କରିବା ଯାହା, ଜାଣୁ ଜାଣୁ ସଙ୍କଟକୁ ନିମନ୍ତ୍ରଣ କରିବା ସେୟା ।

ନିଜର ଦୁର୍ବଳତାକୁ ଏତେ ବାଟ ଆସିବା ପରେ ପ୍ରକାଶ କରିବାକୁ ମୁଁ ସମୀଚୀନ ମନେ କଲିନାହିଁ ।

ହଠାତ୍ କାନରେ ଘୁଁ ଘୁଁ ହୋଇ ଆବାଜ୍ ଶୁଭିଲା ଯେପରି ନିଶାର୍ଦ୍ଧରେ ବୋଝେଇ ଟ୍ରକଟିଏ ଉଠାଣି ରାସ୍ତାରେ ମାଡ଼ିଚାଲୁଛି ।

ବାଁ ପାଖେ ବିରାଟ ଶିମିଳି ଗଛ । ଶାଖାପ୍ରଶାଖା ମେଲି ଦେଇଛି । ଗଛଟି ପତ୍ରଝଡ଼ା ଦେଇଛି । ଘରର କବାଟ ସଦୃଶ ବାଘୁଆ ମହୁମାଛି ଦଳ ବସା ବାନ୍ଧି ରହିଥାଆନ୍ତି । ଦଶ କି ବାର ଦଳ । ଅନୁଭୂତିଟି କେବେ ଆଗରୁ ମିଳି ନ ଥିଲା । କିଛି ସମୟ ଦେଖି ନେଇ ଆଗକୁ ଚଢ଼ିଲୁ ।

ଜଙ୍ଗଲ ଆଉ ପାହାଡ଼ରେ ଦିନ ଭରି ବୁଲି ବୁଲି ଗଦ୍‌ବା ନରନାରୀ ଲାଖ, ମହୁ, ଝୁଣା ଇତ୍ୟାଦି ସଂଗ୍ରହ କରି ବିଦେଶୀ ଲୋକଙ୍କୁ ବିକି ଯାହା ଦୁଇ ପଇସା ପାଆନ୍ତି, ତାଡ଼ି, ହାଣ୍ଡିଆ, ସଲପ ଓ ମହୁଲି କିଣି ରାତିଟା ଯାକ ଆନନ୍ଦରେ ଅଧୀର ହୁଅନ୍ତି । ଦିନ ଭରି ସ୍ନେହ ପ୍ରେମ ସରଳ ବିଶ୍ୱାସ ଅପୂର୍ବ ସମନ୍ୱୟରେ ଗଠିତ ଗଦ୍‌ବା ଜୀବନ ରାତିରେ ହୋଇଉଠେ ବେଶ୍ ମତୁଆଲା ନିଝୁମ୍ ନିଠୁର ନିଷ୍କରୁଣ । ସୁଦୀପ୍ତର ଭାଷାରେ ଗଭୀର ଦାର୍ଶନିକ ବିଶ୍ଳେଷଣ ।

ଆଗକୁ ପ୍ରାୟ ମନ୍ଦିର କିଛି ଦୂର ଅଛି, ଦେଖିଲୁ ଚିକ୍‌କଣ କଳା ମୁଗୁନି ପଥର ଉପରେ ଝରଣାର ସ୍ୱଚ୍ଛ ଜଳ ପଡ଼ି ତା'ର ଛିଟିକାରେ ଆମକୁ କିଞ୍ଚିତ୍ ଭିଜାଇଦେଲା ।

ପ୍ରାୟତଃ ଜଳାହାର ସାରି ଫେରୁଥିବା ପ୍ରାଣୀଙ୍କୁ ଜଗି ବସିଥିବା ଶିକାରୀ ଏଇଠି ଶିକାର ପାଇଁ ଜଗି ବସୁଥିବ । ଦେଖିଲୁ ଭାଲୁଟିଏ ଶୁଷ୍କ ଧୂସର ମାଟି ତାଡ଼ି ଉଇ ଖୋଳୁଛି । ବିକ୍ଷିପ୍ତ ଭାବରେ ଦୁଇ ତିନୋଟି ପଦଚିହ୍ନ ବେଶ୍ ନିଟୋଳ ଓ ସ୍ପଷ୍ଟ ବଡ଼ ପଞ୍ଝା । ପଦଚିହ୍ନ ବାଘର ।

ସୂର୍ଯ୍ୟର ପୂତସ୍ନାନ କିରଣର ଝଲକିତ ପ୍ରଥମ ସ୍ପର୍ଶ ଆମ ଦେହରେ ପଡ଼ିଲା । ଶିଉଳିରେ ଚାପି ଚାପି ପାଦ ପକାଇ ଝରଣା ଅତିକ୍ରମି ମନ୍ଦିର ନିକଟରେ ଅବତୀର୍ଣ୍ଣ ହେଲୁ । ଶୁକ୍ରୁଜାନୀର କହିବା ପରି ମନ୍ଦିରଟି ବେଶ୍ ପୁରାତନ । ଉଚ୍ଚତା କୋଡ଼ିଏ ଫୁଟ ହେବ । ମନ୍ଦିର ସାମ୍ନାରେ ପଥର ଖଣ୍ଡରେ ଖୋଦିତ କେତୋଟି ପୀନ ଅକ୍ଷୟ ଅକ୍ଷର ଲିପି ।

ସ୍ଥିର ଦୃଷ୍ଟିରେ ତାକୁ ପଢ଼ି ନ ପାରି ଗଦ୍ ଗଦ୍ ଭାବରେ କେଉଁ ଅକଳନ ଯୁଗରୁ କାହାର ନିର୍ଦ୍ଦେଶରେ ଶିଳ୍ପୀର ନିହାଣ ମୁନରେ ଉତ୍କୀର୍ଣ୍ଣ ସେଇ ଶବ୍ଦକୁ କେବଳ ଛୁଇଁଦେଲୁ । ମନ୍ଦିରଟିର ଦ୍ୱାର ନ ଥିବାରୁ ଅଧାଗଢ଼ା ପରି ମନେହେଲା । ଆସ୍ଥାନ ଉପରେ ଖଣ୍ଡେ ବଡ଼ପଥର ଉପରେ ନାଲି କନା ଗୁଡ଼ା ହୋଇ ଖଣ୍ଡିଏ ପଥର, ସେଇଟି ପୁଣି ସମ୍ପୂର୍ଣ୍ଣ ସିନ୍ଦୂର ଆବୃତ୍ତ । ନିକଟରେ ତିନୋଟି ପଥର ଥୁଆ ହୋଇ ଚୁଲିଟିଏ । ସେଥିରେ ଅଧାଜଳା ଦରପୋଡ଼ା କାଠ କେତୋଟି । ତାହା ଗଦ୍‌ବାମାନଙ୍କ ଭୋଜି କରିଥିବାର ସ୍ମୃତି ଚିହ୍ନ । ସୁରକ୍ଷିତ ଭାବରେ ଡାକବଙ୍ଗଳାକୁ ଆସିବାକୁ ପ୍ରଣତି ଢାଳି,

ଗଙ୍ଗାମା'ଙ୍କୁ ଦର୍ଶନ ସାରି ମେଞ୍ଚାଏ ହଳଦିଆ ମନ୍ଦାର ଓ କଦମ୍ବ ଫୁଲ ହାତରେ ଧରି ଫେରିଆସିଲୁ ।

ଫୁଲଗୁଡ଼ିକୁ ଲୁଚାଇ ଲୁଚାଇ ଆଣି ଡ୍ରେସିଂଟେବୁଲ ଉପରେ ଥୋଇଦେଲୁ । ନିଶାର ବିଭୋରତା ଶୁକ୍ରଜାନୀର ଆଖିରୁ କଟିଯାଇଥାଏ । ଅଳିନ୍ଦର ଦଉଡ଼ିଆ ଖଟରେ ଆମକୁ ଅପେକ୍ଷା କରି ସେମିତି ବସିଥାଏ । ଖାଇଦେଇ ଆମେ ତାକୁ ମଝିରେ ବସାଇ ପୁଣି କାଲି ପରି ଗପ ଆରମ୍ଭ କରିଦେଲୁ ।

ଅନାମ ବାବା ସମ୍ପର୍କରେ ମୁଁ ଜାଣିବାକୁ ଚାହିଁଲି ।

ଇଂରେଜ ଶାସନ ବେଳେ ପାଖ କରଦ ରାଜ୍ୟରୁ ଅପୂର୍ବ ରାଜପ୍ରାସାଦ, ଅସରନ୍ତି ଐଶ୍ୱର୍ଯ୍ୟ, ରାଜକୀୟ ଭୋଗବିଳାସ, ଆମୋଦପ୍ରମୋଦ ତ୍ୟାଗ କରି ରାଜପୁତ୍ର ତନ୍ମୟ କୁମାର ପ୍ରତିଷ୍ଠା କରିଥିଲେ ଗଙ୍ଗାମା'ଙ୍କ ମନ୍ଦିର । ତପସ୍ୟାରେ ନିରନ୍ତର କଟୁଥିଲା ସମୟ । ଦିନ ଆସିଛି, ସେ ହିଁ ରୂପାନ୍ତରିତ ହୋଇଥିଲେ ଅନାମ ବାବାରେ । ମଦମତ୍ତରେ ବସ୍ତିର ଗଦ୍‌ବା ଅଧିବାସୀ ଖୁବ୍ ହଇରାଣ ହରକତ କରିଥିଲେ ତାଙ୍କୁ । କିନ୍ତୁ ନ ଥିଲା ତାଙ୍କର ସେମାନଙ୍କ ପ୍ରତି ଟିକିଏ ରାଗରୋଷ । ତାଙ୍କର ଉଦାର ପ୍ରଶସ୍ତିମୟ ହସ୍ତଯୁଗଳ ଥିଲା ଗଦ୍‌ବାମାନଙ୍କ ପାଇଁ ସଦା ପ୍ରସାରିତ ।

କିନ୍ତୁ ଗୋରୁହାଡ଼, ପଚାସଢ଼ା ମାଂସ, ବିଷ୍ଠା, ଖପୁରି ହାଡ଼ ଅନାମ ବାବାଙ୍କ ଉପରକୁ ଫୋପାଡ଼ି ଆନନ୍ଦିତ ହେଉଥିଲେ ଗଦ୍‌ବା ଦଳ । ଖୁବ୍ ପରିଣତ ବୟସରେ ଇଚ୍ଛା ମୃତ୍ୟୁ ବରିଥିଲେ ଅନାମ ବାବା । ସେ ବଞ୍ଚିଥିବା ବେଳେ ହେଉ କି ଗଙ୍ଗାମା'ଙ୍କ ପ୍ରତ୍ୟକ୍ଷ କରାମତିରେ ହେଉ ଗଦ୍‌ବାମାନଙ୍କୁ କୌଣସି ଅସୁବିଧାରେ ସମ୍ମୁଖୀନ ହେବା କେହି ଶୁଣିନାହାନ୍ତି । କିନ୍ତୁ ଅନାମବାବାଙ୍କ ଦେହତ୍ୟାଗର ଦଶଦିନ ପରେ କାଳରାତି ମାଡ଼ିଆସିଲା । ପର୍ବତର ଏକ ବିଶାଳ ଅଂଶ ଧସିଆସି ଗଦ୍‌ବା ବସତିର ଅଧା ଅଂଶକୁ କବଳିତ କଲା । ସୁଉଚ୍ଚ ପାହାଚ ପାହାଚ ପଥର ଗାନ୍ଥିନୀର ସ୍ତର କେବଳ ପଡ଼ିରହିଲା ।

ମିଶିଗଲା ପାଞ୍ଚଶହ ଜୀବନର ଦୀର୍ଘଶ୍ୱାସ ଏବଂ ସେମାନଙ୍କ ହାଡ଼, ମାଂସ । ଯେଉଁମାନେ ବଞ୍ଚିଗଲେ ଅନାମ ବାବାଙ୍କୁ ଭୀଷଣ ଗାଳି ଦେଲେ, ତାରି ଅଭିଶାପରୁ ଏ ଅଘଟଣ ଘଟିଛି କହି ତାଙ୍କୁ ହିଁ ଦାୟୀ କଲେ । ଢୋଲ ଟମକ ମହୁରି ବଜାଇ ଦଳ ଦଳ ହୋଇ ସିନା ଗଙ୍ଗାମା'ଙ୍କ ପାଖକୁ ଗଲେ, ଏକାକୀ ନୁହେଁ । ଭୟରେ ଶିହରି ଯାଇ ତା' ପୂର୍ବ ବଂଶର ଦାରୁଣ ବିପର୍ଯ୍ୟୟ ପାଇଁ ଶୁକ୍ରଜାନୀର ଓଠ ଥରି ଥରି ସମ୍ବେଦନାରେ ରହିଗଲା ।

କଥାର ମୋଡ଼ ବଦଳାଇ ସୁଦୀପ୍ତ କହିଲା—ଶୁକ୍ରଜାନୀ ! ତମେ ଆମକୁ ହଳଦିଆ ମନ୍ଦାର ଆଉ କିଛି କଦମ୍ବ ଫୁଲ ଆଣି ଦେଇପାରିବ କି ?

ଏବେ ତ ଆଣିପାରିବିନି । ପିଲାଗୁଡ଼ା ମୋର ଅନାଥ ହୋଇଯିବେ । ସପ୍ତାହ ଭିତରେ ମୋର କାଳ ହୋଇଗଲେ ବାବୁ ତୁମକୁ କ'ଣ ମିଳିବ ? ଯଦି କହିବ, ଠିକଣା ତମର ଲେଖିଦିଅ, ଦିନବାର ଆସିଲେ ମୁଁ ଚିଠିଦେବି । ତମେ ବାବୁ ଆମ ସାଙ୍ଗେ ପାହାଡ଼ ଚଢ଼ି ଗଙ୍ଗାମା'ଙ୍କୁ ଦର୍ଶନ କରି ମନ ଇଚ୍ଛା କଦମ୍ବ ଆଉ ହଳଦିଆ ମନ୍ଦାର ଆଣିବ ବାବୁ ।

ସୁଦୀପ୍ତ ତା' ହାତକୁ ଟାଣିଦେଇ ଆମେ ରହୁଥିବା ରୁମ୍‌ର ଡ୍ରେସିଂଟେବୁଲ ପାଖକୁ ଶୁକ୍ରୁଜାନୀକୁ ନେଇଗଲା । ମନ୍ଦାର ଓ କଦମ୍ବଫୁଲ ସାମ୍ନାରେ ଦେଖି ଚମକିଯାଇ କହିଲା, ବାବୁ ! ତମେ ଏ କ'ଣ କଲ ? କାହିଁକି ମୁଁ ତୁମକୁ ଏ ମନ୍ଦିର କଥା କହିଲି । ଭେଣ୍ଡିଆ ଯୁବକ ତୁମେମାନେ । ଉନ୍ମାଦ ହୋଇ ଶୁଖି କଳାକାଠ ପରି ହୋଇ ସପ୍ତାହକ ଭିତରେ ମରି ପାଉଁଶ ହୋଇଯିବ । କ'ଣ କଲ ବାବୁ !

ବିବ୍ରତ ବିଚଳିତ ହୋଇ ବସ୍ତି ଆଡ଼କୁ ଧାଇଁଲା ସେ ।

ତା' କଥା ଶୁଣି ନ ହସି ଆମେ ରହିପାରିଲୁନି ।

ସତେଯେମିତି ସେ ହସରେ ଶୁକ୍ରୁଜାନୀ ଭାବିନେଲା ଆମ ଭିତରେ ଅନାମବାବା ସବାର ହୋଇଯାଉଛି ।

କିଛି ସମୟ ପରେ ଗଦ୍‌ବାମାନେ ଦଳ ଦଳ ହୋଇ ଡାକବଙ୍ଗଳାରେ ଆଶ୍ଚର୍ଯ୍ୟ ଦୃଷ୍ଟିରେ ଆମକୁ ଚାହିଁରହିଲେ ।

ସତେ ଅବା ପାଗଳ ଉନ୍ମତ୍ତ ପ୍ରାୟ ସେମାନଙ୍କ ସାମ୍ନାରେ ବୁଲିବୁ । ଦିନ ପରେ ଦିନ ବିତିଗଲା । ଏ ମଧ୍ୟରେ ସମୟସ୍ରୋତରେ ଆମର ସେଠାରେ ସାତଦିନ କଟିଗଲା ।

କ୍ରମେ ସେମାନଙ୍କ ଉତ୍ସୁକ ଚାହାଣୀ ବାସ୍ତବତାରେ ପରିଣତ ହେଲା । ସେଥିରେ ନ ଥିଲା ପୂର୍ବର ଅନ୍ଧବିଶ୍ୱାସର ଚମକତା ।

ଆମେ ଆସିବାର ଗୋଟିଏ ଦିନ ପୂର୍ବରୁ ଘୋଷଣା କଲୁ ପୁଣି ଆମେ ଗଙ୍ଗାମା'ଙ୍କୁ ଦର୍ଶନ କରିବାକୁ ଯିବୁ । ପରଦିନ ମୁଁ ଆଉ ସୁଦୀପ୍ତ ପୁଣି ଚଢ଼ିଥିଲୁ ପାହାଡ଼ । ଆମ ପଛରେ ଥିଲା ଶୁକ୍ରୁଜାନୀ ଆଉ ତା' ପଛରେ ଥିଲେ ସମସ୍ତ ଗଦ୍‌ବା ନରନାରୀ । ସେମାନଙ୍କ ମୁଖମଣ୍ଡଳର ଜମାଟବନ୍ଧା କୁସଂସ୍କାରର ଛାଇ କ୍ରମେ ଅପସରି ଯାଉଥିଲା ।

୦

# ଶ୍ରାନ୍ତ ଅପରାହ୍ନ

ଲେଖା ! ନାଁ ଟା ମୁଁ ଦେଇଥିଲି । ପୁଣି ତାହା ସୀମିତ ଥିଲା, ଆମ ଦୁହିଁଙ୍କ ଭିତରେ । ନାମକରଣ ପୁଣି ଶୈଶବରେ ନୁହେଁ, ଯୌବନର ପ୍ରାରମ୍ଭରେ । ତା'ର ମୋର ସମ୍ପର୍କର ସେତୁ ଯୋଡ଼ି ହୋଇଥିଲା କଲେଜ ପତ୍ରିକାର ଆମର ଲେଖା ପ୍ରକାଶିତ ଦୁଇଟି କବିତାରୁ । ଏଇ ନାଁ ଧରି ଅନେକ ଥର ତାକୁ ଡାକିଛି, ଚିଠି ଲେଖିଛି ।

ଏଇ ନାଁରେ ମୋ ମୁହଁରୁ ତା ନାଁ ଶୁଣିଲେ ଗଭୀର ଆନ୍ତରିକତା, ଆତ୍ମିକତା ସହ ତା' ମନରେ ପ୍ରଫୁଲ୍ଲତା ଆସେ ।

ଥରେ ମନଖୋଲି ପଚାରି ଦେଇଥିଲି ।

କିନ୍ତୁ;

ଫିକ୍ ଫିକ୍ ହସ ଛଡ଼ା କାହିଁକିର ଉତ୍ତର ପାଇନି । ତାର ଅସମ୍ଭବ ଆକର୍ଷଣ ଏଇ ନାଁଟା ପ୍ରତି ।

ତାକୁ ମୁଁ ମନପ୍ରାଣ ଦେଇ ଭଲ ପାଇଥିଲି । ତାର ଗହମ ଗୋରା ଦେହର ଚମକରେ ମହକିତ ଥିଲା ମୋ ସମ୍ପୂର୍ଣ୍ଣ ତନୁମନ । ଏବେ ବି କେବେ ଯଦି ଅଚାନକ ତା' କଥା ମନେପଡ଼େ ମୋ ଦେହରେ ଖେଳିଯାଏ ଅଫୁରନ୍ତ ଶିହରଣ । ଅନେକ ଥର ଭାବିଛି, ସେଇ ଉଲ୍ଲସିତ ମୁହୂର୍ତ୍ତଗୁଡ଼ାକୁ ଚିପି ରଖିବି । କିଛି ନ ହେଲେ ବି ପୁରୁଣା ସ୍ମୃତିକୁ ମନେ ରଖିବାକୁ ଟିକିଏ ଖୋରାକ ଦେବ ତ !

ଅତୀତକୁ ରୋମନ୍ଥନ କରିବା ହିଁ ଗ୍ଲାନି ଓ ଦୁଃଖକୁ ନିମନ୍ତ୍ରଣ କରିବା; ତଥାପି ଅତୀତଟାକୁ ହଜାଇ ପାରୁନି ।

ଅନେକ ଦିନ ବିତିଯାଇଛି ।

ତା' ମୁହଁ, ତା' ଶରୀର ମୋ ଆଖିରୁ ଅପସାରିତ ହୋଇଛି । ସମୟ କାକର ପରି ଉଡ଼ିଯାଇଛି । ଏଇ କେତେଦିନ ହେବ ତା' କଥା ଗଭୀର ଭାବେ ନ ଭାବିଲେ ତା' ଶରୀରର ଛାୟା ମୁଁ ଉପଲବ୍ଧି କରିପାରୁନି । ତେଣୁ ମୋ ଚିନ୍ତା ଚେତନାକୁ ଖୁବ୍ ତୀକ୍ଷ୍ଣ ଭାବରେ ଏକାଠି କରି ତାର ସମଗ୍ର ଶରୀରକୁ ମନେ ପକାଇବା ପାଇଁ ମୋ ଆଖିର ସରହଦ ପାଇବା ପର୍ଯ୍ୟନ୍ତ ଦୃଷ୍ଟି ନିକ୍ଷେପିଲି । ସମ୍ମୁଖରେ ସୂର୍ଯ୍ୟରଶ୍ମୀ ତୀର୍ଯ୍ୟକ୍ ଭାବରେ କିରଣ ମେଲିଦେଇଛି ପାହାଡ଼ର ମୁଣ୍ଡିଆଟା ଉପରେ । ଚିକ୍ ଚିକ୍ କରୁଛି ପାହାଡ଼ରୁ ଝରିଯାଉଥିବା ନୀଳଝରଣାର ସ୍ୱଚ୍ଛ ଜଳରାଶି ।

ଜିପ୍‌ଟା ବାଟରେ ପଞ୍ଚର ହେବାରୁ ନିଜେ କଷ୍ଟେମଷ୍ଟେ ଖୋଲା ଖୋଲି କରି ଷ୍ଟେପିନ୍ ଲଗାଇଥିବାରୁ ହାତ ଦି'ଟା କଳା ହୋଇଯାଇଥିଲା ।

ଗଡ଼ାଣିଆ ରାସ୍ତାରେ ଗାଡ଼ିଟାକୁ ପଛକୁ ଟିକିଏ ବ୍ୟାକ୍ କରି ଗିଅରରେ ରଖିଆସିଛି ଯେପରି ଷ୍ଟାର୍ଟିଂରେ କିଛି ଅସୁବିଧା ନ ହେବ । ପ୍ରାୟ ଶହେ ହାତରୁ ଅଧିକ ଉଚ୍ଚରୁ ଝରଣାର ପାଣି ଏକ ନିଠୁର ପଥର ଉପରେ ପଡ଼ି ଛିଟିକିଯାଉଛି । ହାତଟା ଧୋଇ ଠିଆହୋଇ ପାଣି ପଡୁଥିବା ସେଇ ପଥରକୁ ଲକ୍ଷ୍ୟ କଲି ।

ଛିଟା ପଡ଼ି ମୋ ପ୍ୟାଣ୍ଟ ଓ ସାର୍ଟ ଓଦାଳିଆ ମନେହେଲା । ଫେରିପଡ଼ି ନିକଟରେ ଥିବା ଚିକ୍କଣ ମୁଗୁନି ପଥରଟା ଉପରେ ଥମ୍ ହୋଇ ବସିପଡ଼ିଲି । ଦୁଇବାହୁ ଯୋଡ଼ିଦେଇ ଆଣ୍ଠୁ ଉପରେ ମୁଣ୍ଡଟାକୁ ଜଡ଼ାଇଦେଲି ଯେପରି ବାହାର ଦୁନିଆଠାରୁ ମୁଁ ଅଲଗା ହୋଇଯାଇଛି । ଆଖିବୁଜି ତା' କଥା କେବଳ ଭାବିବସିଲି । ଧୀରେ ଧୀରେ ତା' ସହ ସେଇ କେତୋଟି ସ୍ମୃତି ବିଜଡ଼ିତ ଦିନଗୁଡ଼ିକର ଚିତ୍ର ମୋ ମାନସପଟ୍ଟରେ ଉଦ୍‌ଭାସିତ ହେଲା ।

ସେଦିନ ବହୁ ଆକାଂକ୍ଷିତ ପ୍ରତୀକ୍ଷା ପରେ ଆମେ କ୍ଲାସ୍ ନ କରି ସ୍ଥିର କଲୁ ନିରୋଳାରେ ଗପି ଗପି ସମୟ କଟାଇବା ।

ପହଞ୍ଚିଲୁ ଆସି ମୋ ମେସ୍ ରୁମ୍‌ରେ । ପ୍ରଥମଥର ପାଇଁ ତାକୁ ଏକଲା ପାଇ ମନ ଉଚ୍ଚାଟ ହେଲା ।

ଭାବିଛି, ତା ସମଗ୍ର ଶରୀର ମୋ ହାତପାପୁଲିର ଉଷ୍ମତା ଅନୁଭବ କରନ୍ତା କି ? ତା ଚିବୁକର କୋମଳ ସହସ୍ର ଚୁମ୍ବିତ ଚମକ ମୋ ଛାତିରେ ଉଜାଡ଼ି ପଡ଼ନ୍ତା କି...

କିନ୍ତୁ;

ସାହସ କରି ଆଗରୁ କେବେ ନ ପଚାରି ତାର ବିନା ସମ୍ମତିରେ ତାକୁ ଛୁଇଁନି ।

ତାରି ଯୁକ୍ତି ଥିଲା...

''ପବିତ୍ର ବିବାହ ବନ୍ଧନ ପରେ ଦେହ ଓ ମନକୁ ଏକାଠି ମିଳେଇବାରେ ଏକ ସ୍ୱର୍ଗୀୟ ଉଲ୍ଲାସ ରହିଛି ଯାହା ମିଳେ ନା ବିବାହ ପୂର୍ବରୁ ।''

ତେଣୁ ମନର ବ୍ୟଗ୍ରତାକୁ ଜୋର ଜବରଦସ୍ତି ଚାପି ଦେଇଛି । କଥାର ମୋଡ଼ ବଦଳେଇଛି ।

ହୃଦୟକୁ ଠିକ୍ ପରୀକ୍ଷାଗାରରେ ନିରୀକ୍ଷା କରି ଜୀବନସାଥିଟିଏ ପାଇବାକୁ ହେଲେ ସାମାଜିକ ବାଧାବନ୍ଧନ ଆମ ଆଗକୁ ଆସିଛି ।

ସବୁକୁ ଦୂରେଇ ଦେଇ, ଜୀବନକୁ ପରସ୍ପର ଅନ୍ତରର ସ୍ନେହଶ୍ରଦ୍ଧା ଦେଇ ଉପଭୋଗ କରିବାକୁ ଶପଥ ନେଲୁ ମୋର ସେଇ ନିବୁଜ କୋଠରୀର ଛାତ ତଳେ ।

ଧନଦୌଲତ ମଣିଷ ତିଆରି କରେ ନା ।

ତା'ର ସୌନ୍ଦର୍ଯ୍ୟପୂର୍ଣ୍ଣ ବ୍ୟବହାର, ସ୍ପଷ୍ଟବାଦିତା ଓ ପବିତ୍ର ନିଷ୍କଳଙ୍କ ବ୍ୟବହାର ଅନେକ ବାର ତଉଲି ସାବ୍ୟସ୍ତ କରିଛି—ସେ ମାନବୀ ନୁହେଁ; ଦେବୀ ।

ସେ କ'ଣ ମୋର ପତ୍ନୀ ହୋଇ ପାରିବନି ?

ନଇଁ ନଇଁକା ବିବାହ ବେଦୀରେ ଉତ୍ତୀର୍ଣ୍ଣ ହେବ ନି ?

ମୋ ସନ୍ତାନକୁ ତା ଗର୍ଭକୋଷରେ ଧରିରଖି ପାରିବନି ?

ଗ୍ରୀଷ୍ମାବକାଶ ଲମ୍ବା ଛୁଟି । ସେଥର ଗାଁକୁ ନ ଆସି ମେସ୍‌ରେ ଥାଏ । ଅନେକ ପ୍ରଶ୍ନ ମୋ ମୁଣ୍ଡକୁ କ୍ଷଣିକେ ହନ୍ତସନ୍ତ କଲା । ଭାରାକ୍ରାନ୍ତ ମନକୁ ଶାନ୍ତ କରିବାକୁ ମୋ ଦଦରା ସାଇକେଲ୍‌ଟାକୁ କେନାଲ କୂଳର ଗଡ଼ାଣିଆ ରାସ୍ତାରେ ଗଡ଼ାଇଦେଲି ତା ଗାଁ ଆଡ଼େ ।

ଧଇଁ ସଇଁ ହେଲା ପର୍ଯ୍ୟନ୍ତ ପ୍ୟାଡ଼େଲର ଗତି କମୁ ନ ଥାଏ ।

ଖରାଟା ମୁଣ୍ଡ ଉପରେ ଥାଏ । ଝାଳରେ ସାର୍ଟ ଓଦା ହୋଇ ଗେଞ୍ଜିର ପୂର୍ଣ୍ଣରୂପଟା ଫୁଟି ପଡୁଥାଏ । ପଛରୁ ମୋ ନାଁ ଧରି କିଏ ଜଣେ ଡାକୁଥିବାର ଜାଣି ଓହ୍ଲାଇ ଦେଖିଲି ସେ ଅନୁପମ । ଆମ ସାଥିରେ ପଢ଼େ । ବେଳେ ବେଳେ ମନଖୋଲା କଥା ହେଉ ।

''କିରେ, ଏତେ ଖରାରେ କୁଆଡ଼େ ମାଡ଼ି ଯାଉଛୁ ।''

ଉତ୍ତର କ'ଣ ଦେବି ପ୍ରସ୍ତୁତ ନ ଥିବାରୁ ନୀରବ ରହିଲି ।

''ଖୁମ୍ବଟା ପରି ଠିଆ ହୋଇଛୁ । କିଛି କହିବୁନି ନା କ'ଣ ?''

ମୋର ଚେତନା ଫେରିଛି । କଥା ବାଆଁରେଇ ପାଖ ଦୋକାନକୁ ଯାଇ ଚା' ପିଇଲୁ ।

ଗଛ ଛାଇରେ କିଛି ସମୟ କଟାଇ ଅନୁପମ ତା' ଗାଁକୁ ଯିବାକୁ ଅନୁରୋଧ କଲା । ଅନୁପମର ପଢ଼ା ଘରେ ମୁଁ ସେ ରାତିରେ ଅତିଥି ହେଲି ।

ଅନୁପମକୁ ଆମ ପ୍ରେମର ବିବରଣୀ ଆମୂଳଚୂଳ ଗପିଲି । ତାର ସ୍ନେହ, ଆତିଥ୍ୟ, ସଚ୍ଚୋଟ ଆଖି ପାଖରେ ମୁଁ ହାର ମାନିଲି...

ସେ ମୋତେ କଥା ଦେଲା । କାଲି ପ୍ରତ୍ୟୁଷରୁ ତା' ଘର ଦେଇ ଲେଖା ନଦୀକୁ ସ୍ନାନ ପାଇଁ ଯିବ । ମୋ ସହ ଲେଖାକୁ ନିରୋଳାରେ କଥା ହେବାକୁ ସୁଯୋଗ ଦେବାକୁ ଯତ୍‌ପରୋନାସ୍ତି ଚେଷ୍ଟା କରିବ ।

ସାକ୍ଷାତ ପାଇବା ନ ପାଇବାର ଆଶାର ଦ୍ୱନ୍ଦ୍ୱର ଜ୍ୱଳନରେ ସାରାରାତି ଉଜାଗରରେ କଟିଲା । କୌଣସିମତେ ସେଦିନ ସମାଜର ସନ୍ଦେହୀ ଦୃଷ୍ଟିକୁ ଏଡ଼ାଇ

ଲେଖାର ସାକ୍ଷାତ ପାଇଛି । କିନ୍ତୁ କଥା ନ ହୋଇପାରି ବ୍ୟର୍ଥ ମନରେ ଫେରି ମେସ୍‌ରେ ନ ରହି ଗାଁକୁ ଫେରି ଆସିଛି ।

ତା'ଠୁ ଚିଠି ପାଇଛି—

''ଏ ଦୁନିଆଟା ପରା ସ୍ୱାର୍ଥସର୍ବସ୍ୱ । ସମସ୍ତେ ନିଜ ସ୍ୱାର୍ଥ ପାଇଁ ଲାଳାୟିତ । ତେଣୁ ତୁମେ ଏମିତି ସରଳ ହୋଇ ମନର କଥା ଅତି ଖୋଲାଖୋଲି ଭାବେ ଅନ୍ୟକୁ କହି ମୋ ଗାଁରେ ସନ୍ଦେହର ଜାଲ ବୁଣିଦେଲ । ଏମିତି ହେଲେ ଜୀବନ ସଂଗ୍ରାମ କ୍ଷେତ୍ରରେ ଠକିଯିବ ଯେ !''

ତେବେ କ'ଣ ଅନୁପମ ମୋ କଥା ବାହାରେ ପ୍ରକାଶ କଲା କି ? ଛାତିଟା ଚାଉଁକରି ଲାଗିଲା । ଚିଠି ଦେଲେ କାଳେ କ'ଣ ଅଘଟଣ ଘଟିବ ଭାବି ଉତ୍ତର ନ ଲେଖି କଲେଜ ଖୋଲିବାକୁ ଅପେକ୍ଷା କଲି ।

ତାର ସଜଳ ସୁନ୍ଦର ଆଖି ଛଳ ଛଳ ଓ ରଙ୍ଗହୀନ ।

ଏବଂ ନରମ ଓଦା କଣ୍ଠ କେମିତି ଉଦାସ... ଉଦାସ...

ଶୁଣିଲି—ତା' ବିଶ୍ୱାସର କ୍ଷେତ ଉପରେ ଅନୁପମ ଚରିତ୍ରଗତ ଦୁର୍ବଳତା ଦେଖାଇ ଗାଁର କେତେକଙ୍କୁ କହି ଅବିଶ୍ୱାସର ବାଲିଚର ମଡ଼ାଇ ଦେଇଛି । ତା' ସହିତ ପୁଣି ଅପବାଦ; ସେ କ୍ଲାସ୍ ନ କରି ମୋ ସହ କଟାଉଛି ଘଣ୍ଟା ଘଣ୍ଟା । ମୋ ସହ ଚୁପି ଚୁପି କଥା ତା'ର କେବଳ ପ୍ରେମ ସମ୍ବନ୍ଧୀୟ । ସେ କୁଆଡ଼େ ମତେ ମନଦେବା ସଙ୍ଗେ ସଙ୍ଗେ ଦେହକୁ ଅର୍ପଣ କରିଛି । ତା' ଦେହ ଅଇଁଠା ହୋଇଛି ।

ଛି... ଛି... ସତେ କି ନୀଚ ଏ ସମାଜ ! ମନଟା ମୋ ଘୃଣାରେ ପୂରି ଉଠିଲା ।

ତା'ର ହୃଦୟ ଥିଲା ପବିତ୍ର ଆଉ ସ୍ୱଚ୍ଛ, ସଜ ଓ ତୁଷାର ପରି । କିନ୍ତୁ ମୁଁ ତା ଗାଁରୁ ଫେରିବା ପରଠୁ ରାତିର ଘନ ଅନ୍ଧକାର ପରି କାଳିମାମୟ ଓ ରହସ୍ୟମୟ ।

ଭାବପ୍ରବଣ ହୋଇ ଆଗାମୀ ରଙ୍ଗୀନ୍ ସ୍ୱପ୍ନକୁ ଅନ୍ୟକୁ କହି କି ଗୁରୁତର ଭୁଲ ନ କରିଛି ମୁଁ । ନିଜକୁ ନିଜେ ଅପରାଧୀ ସାବ୍ୟସ୍ତ କରି ତା' ନିକଟରେ ଦୋଷୀଟିଏ ପରି ନିରୁତ୍ତର ଥାଏ । ତାର ଶ୍ରାବଣୀ ଆଖି ଆଉ କିଛି କ୍ରୋଧ ମୋତେ ପରାସ୍ତ କଲା ।

ଅମାନିଆ ଲୁହ ନୀରବରେ ଝରି ଯାଉଥାଏ ।

ତା'ପରଠୁ ସେ କଲେଜ ଆସିନି । ଜାଣିଶୁଣି ପାଠ ଛାଡ଼ିଛି । ତାକୁ ପାସୋରିଦେବାକୁ କରୁଣ ନିବେଦନ କରିଛି ଚିଠି ମାଧ୍ୟମରେ ।

ତାର ଶେଷ ଦେଖା, ଶେଷ କଥା, ଶେଷ ଚିଠି ମୋ ମନରେ ଏବେ ବି ରେଖାପାତ କରେ । ଶୁଣିଛି ତା' ଅନିଚ୍ଛା ସତ୍ତ୍ୱେ ଆଉ କାହାର ସେ ବଧୂ ସାଜିଛି ।

ଅସମୟରେ ଅପ୍ରତ୍ୟାଶିତ ଭାବରେ ଏଭଳି ବିଷ ସଞ୍ଚରି ଆମ ମନର ସମସ୍ତ ଆଗାମୀ ନୀଡ଼ ରଚନାର ମୋହଯନ୍ତ୍ରଣା ଜର୍ଜରିତ ହୋଇ ହଠାତ୍ ଘାଣ୍ଣୁ ସାଜିବ, କିଏ ଜାଣିଥିଲା ?

ସ୍ଥିର କଲି, ସାରା ଜୀବନ ସେଇ ସ୍ମୃତି ବିଜଡ଼ିତ ସ୍ୱପ୍ନକୁ ଜାବୁଡ଼ି ଧରି ଏକାକୀ ରହିଯିବି ।

ମୋର ଖପୁରୀ ଭିତରେ ଅସଂଖ୍ୟ କୋଷମାଳା ଅଣାୟତ୍ତ ଓ ସ୍ୱାଧୀନ । ମୋ ମାଟି କାନ୍ଥ ପଡ଼ିଯିବା ପୂର୍ବରୁ ସାହାରା ମିଳିଛି—ସହରୀ ସଭ୍ୟତାଠାରୁ ଖୁବ୍ ଦୂରରେ ରହି ମିଳିଥିବା ସରକାରୀ ଚାକିରିରେ ।

ଆଦିବାସୀ ଅଞ୍ଚଳର ପାହାଡ଼ିଆ ବନ୍ଧୁର ରାସ୍ତା, ନୀଳ ସୁଉଚ୍ଚ ପର୍ବତମାଳା, ଅରଣ୍ୟ ଝରଣା, ରାତ୍ରିର ନିବୁଜ କୋଠରୀର ନିଗୂଢ଼ ଅନ୍ଧାର, ନିଃସଙ୍ଗ ଜୀବନ ମୋତେ ପ୍ରତ୍ୟେକେ ଦେଇଛନ୍ତି ଅଫୁରନ୍ତ ସାନ୍ନିଧ୍ୟ । ଯଦିଓ ବୟସଭାରାରେ କେବେଠୁ ତାରୁଣ୍ୟର ସରାଗ ମୋର ହଜିଗଲାଣି । ଯେନତେନ ପ୍ରକାରେ ଏକ ଖିଆଲି ମନ ନେଇ ବଞ୍ଚିଛି ଏ ଅବଧି ।

ସେ ମଧ୍ୟ ବୟସର ଅପରାହ୍ନରେ ପହଞ୍ଚିଯିବଣି । ସଂସାର ଜାଲରେ ଉବୁଟୁବୁ ହୋଇ ଗୃହିଣୀଟିଏ ସାଜିଥିବ ।

ଶୀତୁଆ ପବନଟାରେ ନିଦଟା ଭାଙ୍ଗିବା ପରେ ଅଲୋଡ଼ା ସ୍ମୃତିକୁ ଝରଣାର ସ୍ୱଚ୍ଛ ଜଳରେ ଫିଙ୍ଗି ଦେଇ ସିଧା ଦଉଡ଼ିଲି ଜିପ୍ ଆଡ଼କୁ । ଷ୍ଟାର୍ଟ ଦେଲି । ଆଗରୁ ପଢ଼ିଥିବା କବିତାରୁ ଚେନାଏ ଗୁଣୁଗୁଣୁ ହୋଇ ବେସୁରା କଣ୍ଠରେ ଗାଇଲି ।

> କାଗଜଡଙ୍ଗା ଜୀବନ, କେତେବେଳେ
> ବୁଡ଼ିଯିବ ମୋତେ ଜଣା ନାହିଁ ।
> ମୋତେ କିନ୍ତୁ ଭଲ ଲାଗେ ଏକାଏକା
> ଧୂଆଁଳିଆ ପ୍ରପାତର ରସର ରୁବାଇ ॥

ସବୁଜ ଅରଣ୍ୟରାଜିକୁ ପଛରେ ପକାଇ ଗାଡ଼ିଟା ମାଡ଼ିଚାଲିଛି । କିଟି କିଟି ଅନ୍ଧାର ପାଇଁ ଜିପ୍ ଲାଇଟର ସୁଇଚ୍‌ଟାକୁ ଟିପିଦେଲି... ।

O

# ପ୍ରତ୍ୟାବର୍ତ୍ତନ

ଦୁଇ ବର୍ଷହେଲା ପୁରୀକୁ ବଦଳିହୋଇ ଆସିଲେଣି ଶାନ୍ତିଶେଖର ।

ପରିବାରବୋଲି ପାଞ୍ଚଜଣ । ସ୍ତ୍ରୀ ସୁନିତା, ପୁଅ ନିଲୁ, ଦୁଇ ଝିଅ ମୁନି ଆଉ ଟୁନି । ତେରବର୍ଷ ଚାକିରିକାଳରେ ଆଦିବାସୀ ଓ ମାଳଅଞ୍ଚଳରେ କାମ କଲାପରେ ଏଠାକୁ ଆସିବାର ସୌଭାଗ୍ୟ, ଜଗନ୍ନାଥଙ୍କ ଆଶୀର୍ବାଦ ଛଡ଼ା ଆଉ କିଛି ନୁହେଁ । ଯାହାହେଉ ବଦଳି ଆଦେଶ ପରେ ସେଠାରୁ ରିଲିଭ ହେବା, ପୁରୀରେ ଜଏନ୍ କରିବା; ଏଇ ଟ୍ରାଞ୍ଜିଟ୍ ସମୟରେ ଶାନ୍ତିଶେଖରଙ୍କ ମନରେ ଅଫୁରନ୍ତ ଆନନ୍ଦ ଉଲ୍ଲାସ ଖେଳିଯାଇଥିଲା । କାରଣ ପ୍ରତିଦିନ ଅନ୍ତତଃ ପକ୍ଷେ ଥରେ ଠାକୁରଙ୍କ ଦର୍ଶନ ତ ମିଳିପାରିବ । ଭାଗ୍ୟରେ ଥିଲେ ସୁଯୋଗ ମିଳେ, ଏ କ୍ଷେତ୍ର ଶ୍ରେଷ୍ଠ ଧାମ । ତେଣୁ ଏ ମାଟିର ପ୍ରତ୍ୟେକ ଅଣୁପରମାଣୁ ତ ଏଠି ପୂଜାପାର୍ବଣ ସାମାଜିକ ଚଳଣି ସବୁକିଛି ପବିତ୍ର ।

କିନ୍ତୁ... ...

ଆସିବାର ପ୍ରଥମ ଦିନ ପିଲାମାନଙ୍କୁ ନେଇ ଯାହା ଶ୍ରୀମନ୍ଦିରକୁ ଯାଇଥିଲେ ତାହା ହିଁ ତାଙ୍କର ଶେଷ ଦର୍ଶନ । ସମୟ ହୋଇନି କହିଲେ ଭୁଲ ହେବ । ମନ୍ଦିରରେ ପ୍ରବେଶ ନ କରିବାର କାରଣ ପଚାରିଲେ କୁହନ୍ତି—ଶୁଦ୍ଧ ସ୍ୱଚ୍ଛ ପରମାର୍ଥ ମନ ନେଇ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ହେଲେ ବ୍ରହ୍ମସୂତ୍ର, ପିନ୍ଧିଥିବା ବସ୍ତ୍ର ପବିତ୍ର ହେବା ଉଚିତ । ସିଧା ସଳଖ ଅଫିସ୍‌ରୁ ଏମିତି ମନ୍ଦିର ଧାଇଁବାକୁ ମୁଁ ପସନ୍ଦ କରେନା ।

ଖୁବ୍ ସ୍ପଷ୍ଟବାଦୀ ନିର୍ଭୀକ ମଣିଷଟିଏ ଶାନ୍ତିଶେଖର ।

ବାସହରା ଲୋକଙ୍କୁ ନୂଆକରି ଗୃହ ନିର୍ମାଣ ପ୍ରକଳ୍ପରେ ଅନ୍ତର୍ଭୁକ୍ତ କରି ଚାହିଦା ଅନୁଯାୟୀ ଘର ଖଣ୍ଡିଏ ଖଣ୍ଡିଏ ଯୋଗାଇ ଦେବାକୁ ତାଙ୍କୁ ଡେପୁଟେସନ୍‌ରେ କାର୍ଯ୍ୟନ୍ୟସ୍ତ କରାଯାଇଛି । ସକାଳ ଆଠରୁ କ୍ୱାଟର୍ସରୁ ବାହାରି ଫେରନ୍ତି ରାତ୍ରିର ବିଳମ୍ବିତ ପ୍ରହରରେ । ପିଅନ ଟିଫିନ କ୍ୟାରିଅରରେ ଲଞ୍ଚ୍ ଆଣି ପହଞ୍ଚେ ଅଫିସ୍‌ରେ । ସ୍କିମ୍ ଓ ତାର ଅନୁମୋଦନ ପାଇଁ କ୍ୟାବିନେଟ୍ ନିଷ୍ପତ୍ତି, ସପ୍ତାହରେ ଅନ୍ୟୁନ ଦୁଇଥର ଭୁବନେଶ୍ୱର ଆସି ବିଭାଗୀୟ ବିବରଣୀ ପ୍ରଦାନ; ଇତ୍ୟାଦି ତାଙ୍କ ଜୀବନକୁ ବ୍ୟସ୍ତତା ଭିତରକୁ ଟାଣିନେଇଛି । ପ୍ରୋଜେକ୍ଟଟିର ରୂପାୟନ ଲାଗି ଜମି ନିର୍ବାଚନ ଆଇନଗତ ରେଜିଷ୍ଟ୍ରେସନ୍‌ରେ ବହୁ ସମୟ ସେ ବିତେଇଛନ୍ତି । ଖାଇବା ପିଇବାରେ ଠିକଣା ରହିନାହିଁ ।

ସ୍ତ୍ରୀ ସୁନୀତାଙ୍କର ଏଥିଲାଗି ମୁହଁ ଶୁଖାଶୁଖି । ସାରା ସହରଟିର ପ୍ରତି କୋଣ ଅନୁକୋଣ ବୁଲି, ଲୋକଙ୍କ ସହ ମିଶି, ଉପଯୋଗୀ ଜମିନିର୍ବାଚନ କରିବା ସଙ୍ଗେ ସଙ୍ଗେ ତାଙ୍କ ଦୃଷ୍ଟିକୁ ଆସିଛି ଅନେକ କିଛି । ନିରନ୍ନ ଜନତାଙ୍କ ବିକଳ ମିନତି କେବଳ କିଛି ଖୁଚୁରା ପଇସା ମାଗିବା ପାଇଁ ରାସ୍ତାକଡ଼ରେ ଶୀତ ଖରା ବର୍ଷାରେ ପଡ଼ିରହିଥିବାର

ଦୃଶ୍ୟ ତାଙ୍କ ହୃଦତନ୍ତ୍ରକୁ ବିଦାରିତ କରିଛି । ଆଖି ପକାଇଲେ ଦେଖିବ ରିକ୍ସାବାଲା, ଭିକାରୀ, ତେଲଙ୍ଗା, କୁଷ୍ଠରୋଗୀ, ଶରଣାର୍ଥୀ, ହତାଶାପୂର୍ଣ୍ଣ ଲୋକଙ୍କର ଭିଡ଼ । ସବୁଠୁ ବେଶୀ ଅପରିଷ୍କାର ଘୃଣ୍ୟ ବିକାରଗ୍ରସ୍ତ ଜୀବନର ଆଲେଖ୍ୟ ମିଳିବ ସହରର ମଧ୍ୟସ୍ଥଳୀ ଷ୍ଟେସନବଜାର ଆଉ ରେଲଧାରଣାର କଡ଼େ କଡ଼େ । ସଂସ୍କୃତି ସେମାନଙ୍କୁ ଯେମିତି ସ୍ପର୍ଶ କରିନି । ସତେଯେମିତି ଦିନେ ସାରା ସହରଟା ନାଳନର୍ଦ୍ଦମାର ସଭ୍ୟତା ହୋଇ ନାମିତ ହେବ, ଅପସଂସ୍କୃତି ଭିତରେ ସେମାନଙ୍କର ସହସ୍ର ଉତ୍ତରପୁରୁଷମାନଙ୍କର ଜନ୍ମ । ଦୁନିଆରେ ବଞ୍ଚିବା ପାଇଁ ଆଉ କିଛି ଉପାୟ ନାହିଁ । ଆର୍ଥିକ ଦୟନୀୟତାରେ ନିପୀଡ଼ିତ ତରୁଣୀ ନିର୍ବିଘ୍ନରେ ତାର ରୂପ ଯୌବନ ବିକ୍ରି କରେ । ପରପୁରୁଷ ସହ ଦେହଦାନ କରିବାକୁ ବାଧ ହୁଏ । ତାର ଭୋକିଲା ଛୁଆ ମୁହଁରେ କିଛି ଦି'ଟା ଦେବାକୁ ତାର ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ କରେ । ଯଦି କେବେ ପୋଲିସ୍‌ର ଜୁଲମ ସେମାନଙ୍କ ବାସ୍ତୁରା ବସ୍ତିରେ ଆରମ୍ଭ ହୋଇଗଲା, ତେବେ ଡାହାଣ ପଟ ରେଲଧାରଣା କଡ଼ ପ୍ରୀତି ଛାଡ଼ି ପୁଣି ବାମରେ ଅବ୍ୟବହୃତ ହେଉଥିବା ଜମିରେ ତାର ଚିରା ଫଟା ଲୁଗା ମସିଣା ଉପରେ ଗଢ଼ିଦିଏ ଛୋଟ ଏକ କୁଡ଼ିଆ । ଏମାନଙ୍କ ଜୀବନ କଥା ଚିନ୍ତା କରିବାକୁ ଆମର କାହାରି ଟିକିଏ ଦରଦ, ଆଗ୍ରହ ବା ସମୟ ନାହିଁ ।

ଥରେ ଅଫିସ୍‌ରୁ ଫେରୁ ଫେରୁ ସହରର ଉପକଣ୍ଠ ଅଞ୍ଚଳ ଆଡ଼େ ଗାଡ଼ିକୁ ଗଡ଼େଇ ଦେଇଥିଲେ ଶାନ୍ତିଶେଖର । ଜିପ୍‌ର ହେଡଲାଇଟ୍ ପଡ଼ିଥିଲା ଖୁବ୍ ତୀକ୍ଷ୍ଣ ଭାବେ ମଶାଣିଟି ଉପରେ । ଦୁଇ ଚାରିଟା ଅଧା ଭର୍ତ୍ତି ହୋଇଥିବା ଅଖା ସହ ଚାରିଜଣ ଦୌଡ଼ାଦୌଡ଼ି ହୋଇ ଗଛ ଆଡୁଆଳରେ ଲୁଚିଯିବାକୁ ଉଦ୍ୟମ କରୁଥିଲେ । ମନରେ ଭୟ ଓ ଆଶଙ୍କା ଜମାଟ ବାନ୍ଧିଲା । ଜିପ୍‌ର ଗତି ବଢ଼ାଇ ଫେରିଆସିଲେ ସେ । ଶୁଣିଥିଲେ ସନ୍ନିକଟ ମଶାଣିସ୍ଥିତ କୁଡ଼ିଆଟିରେ ସନ୍ନ୍ୟାସୀ ସ୍ୱରୂପାନନ୍ଦ ବହୁଦିନରୁ ନିର୍ଭୟରେ ଏକାକୀ ରହୁଛନ୍ତି । ନିର୍ଜନ ନିଛାଟିଆରେ ସେ ତପସ୍ୟା କରନ୍ତି ।

ଶ୍ମଶାନର ଉତ୍ତରପଟେ ବିସ୍ତୀର୍ଣ୍ଣ ପ୍ରାନ୍ତରଟିରେ ତାଙ୍କର ଗୃହନିର୍ମାଣ ପ୍ରକଳ୍ପର କାର୍ଯ୍ୟ ନିକଟରେ ଆରମ୍ଭ କରିବାକୁ ସ୍ଥିର କରିଛନ୍ତି ସେ । ପ୍ରଭାବ ଓ ପ୍ରତିପତ୍ତିଶାଳୀ ବ୍ୟକ୍ତିଙ୍କର ଧମକଚମକ ଏବଂ ବହୁ ବାଧାବିଘ୍ନ ସତ୍ତ୍ୱେ ସେଇଠାରେ ପ୍ରକଳ୍ପର ଶୁଭ ଦେଇଛନ୍ତି ଶାନ୍ତିଶେଖର ।

ଯେତେବେଳେ ସେ ସ୍ୱରୂପାନନ୍ଦଙ୍କୁ ଭେଟିଲେ ଓ ପୂର୍ବ ରାତିର ଘଟଣାକୁ ମନେକଲେ ତାଙ୍କ ମନରେ ସନ୍ଦେହ ହେଲା । ସହରଂଯାକର ଯେତେ ଗରିବ ଅସହାୟ ଲୋକ ମରନ୍ତି, ଯାହାର ଶକ୍ତି ନାହିଁ ସ୍ୱର୍ଗଦ୍ୱାରରେ ଦାହ କରିବାକୁ, ଶବ ନେଇ ଏଇଠିକି ଆସନ୍ତି । ବିନା ଖର୍ଚ୍ଚରେ ସ୍ୱରୂପାନନ୍ଦଙ୍କ ଚିହ୍ନିତ ସ୍ଥାନରେ ପୋତି ପକାନ୍ତି । ଗଳିତ ଚର୍ମମାଂସକୁ ପରିଷ୍କାର କରି ଶବର ହାଡ଼କୁ ବିଦେଶ ପଠାଇ ଖୁବ୍ ଲାଭ ନିଅନ୍ତି ଏମାନେ ।

ଯେତେ ଶବ ଆସିଲେ ମଧ୍ୟ ସ୍ଥାନର ଅଭାବ ନାହିଁ । ଆଜି ଯେଉଁଟା ସମାଧି ନିଏ ଠିକ୍ ଦଶଦିନ ପରେ ତାର କଙ୍କାଳ ଚାଲାଣ ହୁଏ । ନଚେତ୍ ଶବଗୁଡ଼ିକ ଏଠି

ସେଠି ପଡ଼ି ପଚି ଆବର୍ଜନାମୟ ହେବ ବୋଲି ନିଜ ସପକ୍ଷରେ ସଫେଇ ଦେଇ କହିଥିଲେ ସ୍ୱରୂପାନନ୍ଦ । ପ୍ରକଳ୍ପର କାର୍ଯ୍ୟରେ ଯାହା ବାଧା ଆସିଛି କେବଳ ସ୍ୱରୂପାନନ୍ଦ ଏବଂ ତାଙ୍କର ସହଯୋଗୀମାନଙ୍କ ଦ୍ୱାରା ବୋଲି ଶାନ୍ତିଶେଖରଙ୍କ ସନ୍ଦେହ ରହିଲା ନାହିଁ ।

କି ଜଘନ୍ୟ ମାରାତ୍ମକ ଏ ଲୋକଗୁଡ଼ାକ... ସମାଜର ଦିଗହଜା, ବୁଲା, ବାସହରା ଲୋକଙ୍କୁ ଶୋଷଣ, ଅତ୍ୟାଚାରିତ କରି ନିଜକୁ ସୁଖସମ୍ଭୋଗରେ ବିତେଇ ଦେବାରେ କି ମୂଲ୍ୟବୋଧ ପାଏ ଏଇ ମଣିଷ ? ସ୍ୱରୂପାନନ୍ଦଙ୍କ ଇଚ୍ଛା ଓ ପ୍ରବଳ ପ୍ରତିରୋଧ ଭିତରେ ତାଙ୍କୁ ଆଗେଇ ଯିବାକୁ ହେବ । ନିଜର ସୀମିତ ସରକାରୀ ଶକ୍ତି ବିନିମୟରେ ଏତିକି ହିଁ କରିହେବ, ସେ ଦୃଢ଼ନିଶ୍ଚିତ ।

ନିଜର ଅଫିସ୍ ଦାୟିତ୍ୱ, ସ୍କିମ୍ ପ୍ରସ୍ତୁତି, ଉପରିସ୍ଥ ହାକିମଙ୍କୁ ପୁରୀରେ ଥିବାରୁ ଆତିଥ୍ୟ ଯୋଗାଇଦେବାରେ ସେ ହେଳା କରିପାରିନାହାନ୍ତି । ପୁଣି ସ୍ୱରୂପାନନ୍ଦଙ୍କ ଆକ୍ରୋଶମୂଳକ ବିରୋଧ ଓ ଦ୍ୱନ୍ଦ୍ୱ ତାଙ୍କୁ ଭାରାକ୍ରାନ୍ତ କରିଛି, ଯାହା ଫଳରେ ନିଜ ପରିବାର ସହ ଖୁସିରେ ଦିନେ ମନ୍ଦିର ଯାଇ ପାରିନାହାନ୍ତି, ହେଳା କରିଛନ୍ତି ପରିବାରର ଦାୟିତ୍ୱ ନେବାରେ । ପୁଅ ନିଲୁ ଯେତେ ଟିୟୁସନ୍ ହେଲେ ମଧ ମା' ପାଖରେ ଅଭିଯୋଗ କରିଛି, ବାପାଙ୍କୁ କ'ଣ ଟିକିଏ ସମୟ ହେଉନି ଆଗପରି ମୋତେ ପଢ଼େଇବାକୁ ?

ନିଲୁର ବାପାଙ୍କ ଶିକ୍ଷାଦେବା ପ୍ରଣାଳୀର ତାରିଫ ଶୁଣି ଯେତିକି ଖୁସି ଲାଗିଛି, ସୁନିତା ସେତିକି ବିରକ୍ତ ହୋଇଛନ୍ତି । ଆଜି ଅଫିସ୍‌ରୁ ଫେରନ୍ତୁ, ସଫା ସଫା ବତେଇ ଦେବି ଏଠୁ ବଦଳି ଲାଗି ଚେଷ୍ଟା କରିବାକୁ, ତିନିବର୍ଷ ନ ପୂରୁ ପଛେ । କୌଣସି ରାଜନୀତିଆ ନେତାଙ୍କୁ କିଛି ଘୁସ ଦେଇ ବଦଳି ପୁଣି କୋରାପୁଟ, ବଲାଙ୍ଗୀର କି ବୌଦ ଆଡ଼େ ହେଲେ ଯାଇ ଏ ପରିବାରରେ ଶାନ୍ତି ଆସିବ, ତାଙ୍କୁ ଯାଇ ସମୟ ମିଳିବ ।

ମୁନି ଟୁନିଙ୍କ କଥା ନ କହିଲେ ଭଲ । ସକାଳେ ସଞ୍ଜେ ଦୈନିକ ଫୁଲବାଣୀରେ ଥିଲାବେଳେ ତାଙ୍କରିମାନଙ୍କ ସଙ୍ଗେ ସମୟ ଖେଳିବାରେ କଟେ ।

କିନ୍ତୁ ଏଠି ?

ଫୁରୁସତ ମିଳୁନି ବେଳ ଚାଲିଛି ଘଣ୍ଟାର ମିନିଟ୍ କଣ୍ଟା ପରି । ଟୁନି ତ ସାନ ସବୁଠୁ ଗେଲବସରୀ । ବାପାଙ୍କୁ ଦେଖିଲେ କହୁଛି, ମୁଁ କାଳିଆ ଠାକୁରଙ୍କୁ ଏଇଠୁ ମୁଣ୍ଡିଆ ମାରୁଛି । ଆମର ପୁଣି ଫୁଲବାଣୀକୁ ବଦଳି ହେବ, ସେଠି ତମେ ଆଗପରି ଆମ ସଙ୍ଗେ ଖେଳିବ ଯେ । ଆସିବା ଦିନୁ ସୁନିତାଙ୍କ ମୁହଁରେ ଆଗ ସରାଗ ନାହିଁ, କିନ୍ତୁ ପ୍ରତିବାଦ କରିବାକୁ ତାଙ୍କ କଣ୍ଠରୁଦ୍ଧ ହୋଇଛି ସ୍ୱାମୀଙ୍କୁ ଦୋଷ ନ ଦେଇ, ଦେଇଛନ୍ତି ସାମାଜିକ ଆଧ୍ୟାତ୍ମିକ ଭାବ ଏବଂ ପ୍ରଚାରିତ ପୁରାଣ ମହାତ୍ମ୍ୟକୁ ।

ବ୍ରହ୍ମାଣ୍ଡ ପୁରାଣ, ବିଷ୍ଣୁ ପୁରାଣ, ସ୍କନ୍ଦ ପୁରାଣ ପଢ଼ି ସୁନିତା ଶ୍ରୀକ୍ଷେତ୍ରର ବୈଶିଷ୍ଟ୍ୟ ବୁଝିଛନ୍ତି । ଏହାର ସ୍ଥାପତ୍ୟ, ଐତିହ୍ୟ ଗୋଟିଏ ଗୋଟିଏ ଆଧ୍ୟାତ୍ମିକ ପରିବେଶ ସୃଷ୍ଟିର ପ୍ରତୀକ ସ୍ୱରୂପ । ଯୁଗ ଥିଲା ଏହାର ସତ୍ୟାସତ୍ୟ ଉପଲବ୍ଧି କରିହେଉଥିଲା । କାଳର

ରଥଚକରେ ସବୁ ଭେଳିକି ଲାଗିଛି, ଯାହା ସମ୍ପୂର୍ଣ୍ଣ ଅବିଶ୍ୱାସ୍ୟ । ସୁନିତା ପୁରାଣ ଉକ୍ତିକୁ ବିଶ୍ୱାସ ଯାଇ ଭୁଲ କରିଥିବାରୁ ସେ ଆଜି ଅନୁତପ୍ତା । ପୁରୀକୁ ଆସିବାର ମୋହ ନେଇ ସ୍ୱାମୀଙ୍କୁ ଡେପୁଟେସନ୍‌ରେ ଆସିବାକୁ ସେତେବେଳେ ବାଧ୍ୟ କରିଥିଲେ । ତେଣୁ କାହାକୁ କହିବେ ? ନୀରବରେ ଖାଲି ସନ୍ତୁଳିତ ହେବା ଛଡ଼ା ଉପାୟ ନାହିଁ ।

ଶାନ୍ତିଶେଖର ନିଦରୁ ଉଠିନାହାନ୍ତି ।

ସକାଳୁ ଫୋନ୍ ଧରିଥିଲେ ସୁନିତା ।

ଦିଲ୍ଲୀରୁ ସେଣ୍ଟ୍ରାଲ ପାର୍ଟି ଆସୁଛନ୍ତି ପୁରୀରେ ତିନିର ଖାଇବେ । ରାତିରେ ସମୁଦ୍ର କୂଳକୁ ଲାଗି ହୋଟେଲ୍ ବ୍ୟବସ୍ଥା କରିବାକୁ ଚେୟାରମ୍ୟାନଙ୍କ ନିର୍ଦ୍ଦେଶ ରାଜଧାନୀରୁ । ଚର୍ଚ୍ଚାରେ ତ୍ରୁଟି ନ ରହିଲେ ଯାଇ ଅଧିକ ଗ୍ରାଣ୍ଟ ମିଳିବ ।

ଏଇ ଅର୍ଥହୀନ ବାଜେ କଥାଗୁଡ଼ା ଅନେକବାର ଏପରି ଶୁଣି ଶୁଣି ତାଙ୍କ ପାରିବାରିକ ଜୀବନରେ ଝଡ଼ ଅଶାନ୍ତି ସୃଷ୍ଟି କରୁଛି । ଧୂର୍ତ୍ତ ଉପରସ୍ତରର ହାକିମମାନେ ତାଙ୍କ ସ୍ୱାମୀଙ୍କ ପରି ସରଳ ନିଷ୍ପାପ ହୃଦୟର କର୍ମଚାରୀଙ୍କୁ ନିର୍ଦ୍ଦେଶ ଦେଇ କେତେ ସଂସାର ଉଜାଡ଼ନ୍ତି ସତେ । ଘୃଣିତ ବ୍ୟାପାର ଏଗୁଡ଼ାକ, କି ଅସମ୍ଭବ ଅନାଡ଼ୀ ଏଗୁଡ଼ାକ । କେତେ ଅନୁନୟ କରି ପିଲାମାନଙ୍କ ସହ ଆଜି ରବିବାର ସନ୍ଧ୍ୟାଟା ମନ୍ଦିରରେ କଟାଇବାକୁ ସ୍ଥିର କରିଥିଲେ, ସବୁ ବିଫଳ ହେଲା ଏବେ । ଦୁଃଖର ଛାୟା ତାଙ୍କ ସୁନ୍ଦର ଆଖି ଦୁଇଟିକୁ କାଳିମାମୟ କରିଦେଲା ।

ଶାନ୍ତିଶେଖର ଖବର ପାଇ ତରବର ହୋଇ ନିତ୍ୟକର୍ମ ସାରି ସହଳ ଅଫିସ୍ ବାହାରିଲେ ।

ଏ ଅବସ୍ଥାରେ ତାଙ୍କ ଉପରେ କ'ଣ ରାଗିହୁଏ ? କାଲି ତ ସେ ବ୍ୟସ୍ତ ହେଉଥିଲେ ମାସ ଶେଷ ହେବାକୁ ବସିଲାଣି ଟଙ୍କା ନ ଥିଲା ପାଖରେ ।

କିନ୍ତୁ ଯେମିତି ହେଲେ ସେ ବ୍ୟବସ୍ଥା କରି ସେଣ୍ଟ୍ରାଲ ପାର୍ଟିଙ୍କୁ ଆତିଥ୍ୟ ଦେବେ । ବିବାହ ଦିନରୁ ତାଙ୍କ ପାଖେ ପାଖେ ରହି ଭଲରୂପେ ଚିହ୍ନିଛନ୍ତି ତାଙ୍କୁ, ତାଙ୍କରି ଛାତିର ସମୁଦ୍ରରେ ନିଜେ ନଇ ହୋଇ ସତ୍ତା ହଜେଇ ଦେଇଛନ୍ତି ସେ । କେବେ ବି ସୁଦ୍ଧା ଭରସି ବିରକ୍ତି ହୋଇ ମୁହେଁ ମୁହେଁ ତାଙ୍କୁ ଜବାବ ଦେଇନାହାନ୍ତି । ଆଜି ଅବା ତାଙ୍କୁ ଜାଣିବାରେ ଭୁଲ କେମିତି ହେବ । ଦୁର୍ନୀତି ତାଙ୍କୁ ସ୍ପର୍ଶ କରିନି, ଲାଞ୍ଚଖୋର ନୁହନ୍ତି । ସଦା ପବିତ୍ର ସଙ୍କୋଚ, ମନଟା ତାଙ୍କ ପ୍ରତି ସମ୍ବେଦନରେ ଭରି ଉଠିଲା । ଏ ସମାଜର ମଣିଷ ଯୁଗ ଯୁଗ ଧରି ଏମିତି ଶାସିତ । ସ୍ୱାଧୀନତାର ନାମରେ ଅସଂଖ୍ୟ ଶଙ୍କା ଭୟଙ୍କର ସ୍ୱାର୍ଥପରତା ମଣିଷକୁ ତାର ଶକ୍ତ ରଜ୍ଜୁରେ କବଳିତ କରିଛି । ନିଷ୍କ୍ରାନ୍ତ ହେବା କଷ୍ଟ । ଅପ୍ରତିହତ ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦର ସ୍ୱର ଧୀରେ ଧୀରେ କ୍ଷୀଣ ହୋଇଛି । ବିଷର୍ଣ୍ଣ ଭାରାକ୍ରାନ୍ତ ହୃଦୟରେ ଭାବି ଭାବି ଦିନଟି ବଡ଼ ଅସ୍ଥିରରେ କଟିଛି ସୁନିତାଙ୍କର ।

ଶାନ୍ତିଶେଖରଙ୍କୁ ରାତି ଦଶଟା ପର୍ଯ୍ୟନ୍ତ ଅପେକ୍ଷା କରି ନ ଖାଇ ନ ପିଇ ଶୋଇପଡ଼ିଛନ୍ତି ସେ ।

କଲିଂବେଲ୍‌ର ଲାଗି ଲାଗି ଦ୍ରୁତ ଶବ୍ଦ ଶୁଣି ଘରର କବାଟ ଖୋଲିଛନ୍ତି । ମୁହଁଟା ସାରା ସ୍ୱେଦବିନ୍ଦୁରେ ପୂର୍ଣ୍ଣ, ରୁମାଲରେ ପୋଛୁ ପୋଛୁ କହିଲେ, ମୋ ପାଇଁ ଖାଇବାକୁ ଅଛି ତ ?

ଟିଫିନ୍ କ୍ୟାରିଅରରେ ଦେଇ ଦିଅ ମୁଁ ସେମାନଙ୍କ ଗହଣରେ ଖାଇନେବି ।

ରୁଟି ଓ ସାଧା ସିଝା ତରକାରୀ ସଜେଇ ରଖି ବଢ଼ାଇଦେଲେ ସୁନିତା ।

ଦିନଯାକ ପ୍ରସ୍ତୁତିରେ କ୍ଳାନ୍ତି, ଆଉ ରାତ୍ରଭୋଜନ ନିଜେ ନ ଖାଇ ତାଙ୍କର ଖାଦ୍ୟକୁ ସେଣ୍ଟ୍ରାଲ ପାର୍ଟିର ଜଣେ ବ୍ୟକ୍ତିଙ୍କ ପାଇଁ ଦେଇଥିବାରୁ ମନରେ ଟିକିଏ ବି ଦ୍ୱିଧା ଆସିନି । ସମସ୍ତ ଦାମୀ ଖାଦ୍ୟଦ୍ରବ୍ୟ ବ୍ୟତୀତ ସାଧା ସିଝା ତରକାରୀ, ରୁଟି ବ୍ୟବସ୍ଥା ତାଙ୍କ ଛଡ଼ା ଅନ୍ୟମାନଙ୍କ ରୁଚିକୁ କାହିଁକି ଅବା ଆସିବ ଭାବି ପ୍ରସ୍ତୁତି ତାଲିକାରେ ଲେଖି ନ ଥିଲେ ଶାନ୍ତିଶେଖର ।

ଭଦ୍ରବ୍ୟକ୍ତିଙ୍କର ରାତି ଅଧରେ ଅସାଧାରଣ ଜିଦ୍‌ଖୋର ସ୍ୱଭାବ ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ସେ ।

ଉପରୋକ୍ତ ବରାଦି ଖାଦ୍ୟ ଖାଇଲେ ଯାଇ ତାଙ୍କୁ ନିଦ ଆସିବ । ଯଦିଓ ସେ ଏବଂ ଅନ୍ୟମାନେ ଦାମୀ ପ୍ରସ୍ତୁତି ଖାଦ୍ୟ ଖାଇସାରିଲାପରେ ଏପରି ଜିଦ୍ ପୁନରାୟ କରିଥିଲେ କେବଳ ଏ ସବୁକୁ ଫିଙ୍ଗାଫିଙ୍ଗି କରି ହୋଟେଲ ସ୍ଥିତ କୋଠରୀଟିକୁ ଚିତ୍ରବିଚିତ୍ର କରି ଆନନ୍ଦିତ ହେବାରେ ।

ସମଗ୍ର କୋଠରୀଟି ମଦଗନ୍ଧରେ ଫାଟି ଉଠୁଥିଲା । ଅସୌଜନ୍ୟ ବ୍ୟବହାର କଥାବାର୍ତ୍ତାରେ ଠିକଣା ନ ଥିଲା । ମଦ ନିଶାରେ ପରିବେଶ ବୈଚିତ୍ର୍ୟହୀନ, ସମୁଦ୍ରର ଗର୍ଜନ, ଝରକା ଦେଇ ପଶୁଥିବା ଶୀତୁଆ ପବନ, ସଜ୍ଜିତ ଫୁଲ, ନିରୁପମ ନୀଳ ଆଲୋକରାଶି ସବୁକିଛି ନିଷ୍ପ୍ରଭ ରସହୀନ ।

ହୋଟେଲ ମ୍ୟାନେଜରଙ୍କଠାରୁ ସେମାନେ ବିଛଣାରେ ପରିଶ୍ରା ଆଉ ବାନ୍ତି କରି ପରିବେଶ ଅପରିଷ୍କୃତ କରିଥିବାର ଶୁଣି ଶାନ୍ତିଶେଖର ରାଗରେ ଲାଲ ପଡ଼ିଯାଇଥିଲେ ।

ଯେଉଁ ମଣିଷ ନିଜର ଆତ୍ମସମ୍ମାନ ବଜାୟ ରଖିପାରେନା, ଯେଉଁ ମଣିଷ ବିନା ଦ୍ୱନ୍ଦ୍ୱରେ ମଦିରା ଶକ୍ତି ପାଖରେ ଆତ୍ମସମର୍ପଣ କରେ, ସେମାନଙ୍କୁ ଆତିଥ୍ୟ ଓ ସମ୍ବର୍ଦ୍ଧନା ଜଣାଇଥିବାରୁ ନିଜେ ଲଜ୍ଜାରେ ମୁଣ୍ଡ ନୁଆଁଇ ଦେଇଥିଲେ ଶାନ୍ତିଶେଖର... । ତଥାପି ସ୍ୱର ଉତ୍ତୋଳନ କରିନାହାନ୍ତି । ତାଙ୍କ ମୁହଁର ରାଗ ଓ ହୃଦୟର ଭାଷା ଏକାଠି ମିଶି ଅବ୍ୟକ୍ତ ଗୋଲକଟିଏ ପାଲଟି ଯାଇଛି ।

ସ୍ୱରୂପାନନ୍ଦଙ୍କ ନାନା କୁଟନୀତି ବାଧାବନ୍ଧନ ସତ୍ତ୍ୱେ ଶକ୍ତିହୀନ ଢୁଲା ବାସ୍ତୁରାଙ୍କ ପାଇଁ ସ୍ଥାୟୀ ଭାବେ ଖଣ୍ଡିଏ ଖଣ୍ଡିଏ ଘର ବ୍ୟବସ୍ଥା କଥା କାଳକ୍ରମେ କେନ୍ଦ୍ର କମିଟି

ଦ୍ୱାରା ଯଥେଷ୍ଟ ଅନୁଦାନ ପାଇବା ପାଇଁ ଅନୁମୋଦନ ଚିଠି ହସ୍ତଗତ ହୋଇଛି ଶାନ୍ତିଶେଖରଙ୍କର ।

ଏକ ପକ୍ଷରେ ତାଙ୍କ ସ୍ଥିରୀକୃତ ସ୍କିମ୍‌ଟିର ସଫଳ ରୂପାୟନ, ଅନ୍ୟ ପକ୍ଷରେ ଏତେ ଦିନର ପାରିବାରିକ ଅଶାନ୍ତି ଓ ଅନ୍ତର୍ଦାହ ଭିତରେ ସାଫଲ୍ୟ ମିଳିଥିବାରୁ ଖୁସିରେ ଆତ୍ମହରା ହୋଇ ଧାଇଁ ଆସିଛନ୍ତି ସୁନିତାଙ୍କ ପାଖକୁ ।

ଶେଯର ତକିଆରେ ଗୁମୁରି ଗୁମୁରି ନିରୋଳାରେ କାନ୍ଦୁଥାଆନ୍ତି ସୁନିତା । ସ୍ୱାମୀଙ୍କର ସଦା ଅନୁପସ୍ଥିତି, ସମୟହୀନତା, କ୍ଳାନ୍ତି, ବ୍ୟସ୍ତ ଜୀବନ ତାଙ୍କୁ ଅସହ୍ୟ ମନେହେଉଛି ।

ଫୁଲବାଣୀର ଘଞ୍ଚ ଦିଗହଜା ଅରଣ୍ୟରାଜି, ଚନ୍ଦ୍ରକିରଣରେ ଫିକ୍‌ଫିକ୍ ହସୁଥିବା ପଲ୍ଲୀପ୍ରାନ୍ତର, ଏଠାର ଦିଗନ୍ତ ବୁକୁର ଫେରି ଆସୁଥିବା ମୁକ୍ତ ସମୀରଣ ଏବଂ କାଳିଆ ପାଖରେ ରହି ତାଙ୍କୁ ଦର୍ଶନ କରିବାର ମୋହ ଅପେକ୍ଷା ମାଳ ଅଞ୍ଚଳର ଶାନ୍ତ ନିଛକ ଜୀବନ ହିଁ ଢେର ମନୋହର ।

କେତେ ତଫାତ୍ ଏ ବଞ୍ଚିବା ଭିତରେ ?

କେତେ ବ୍ୟବଧାନ ଏ ଜୀବନର ମହତ୍ତ୍ୱ ଭିତରେ ?

ଆଢୁଆଳରେ ଠିଆ ହୋଇ ଶାନ୍ତିଶେଖର ସୁନିତାଙ୍କ ମନର ଅନ୍ତର୍ଦ୍ୱନ୍ଦ୍ୱକୁ ବୁଝିବାକୁ ଚେଷ୍ଟା କରୁଥାଆନ୍ତି ।

କିନ୍ତୁ ସେ ସେହିଭଳି କାନ୍ଦୁଥାନ୍ତି । ସେ କାନ୍ଦର ଲହରୀ ଭିତରେ ହଠାତ୍ ପାପୁଲିର ସ୍ପର୍ଶ ପାଇ ସମ୍ମୁଖରେ ଶାନ୍ତିଶେଖରଙ୍କୁ ଦେଖି କାଳେ ଦୁର୍ବଳତା ଜଣାପଡ଼ିବ ଭାବି ଲାଜରେ ପଣତ ଉଠାଇ ନେଇଥିଲେ ଆଖି ପାଖକୁ ।

ସୁନିତାଙ୍କ ନରମ ଦେହକୁ ଖୁବ୍ ନିକଟକୁ ଜଡ଼ାଇ ଧରି ଆବେଗଭରା କଣ୍ଠରେ ସେ କହିପକାଇଲେ ।

ଆଉ ବ୍ୟସ୍ତ ହେବାର ନାହିଁ । ପ୍ରୋଜେକ୍ଟକୁ କେନ୍ଦ୍ରୀୟ ଅନୁଦାନ କରାଇ ଦେଇଛି । ମୁଁ ଯେଉଁ ଜମିରେ ସ୍କିମ କାମ କରିବାକୁ ସ୍ଥିର ନିଷ୍ପତ୍ତି ନେଇଥିଲି, ତାହା ମଧ୍ୟ କାର୍ଯ୍ୟକାରୀ ହେବ । ସ୍ୱରୂପାନନ୍ଦଙ୍କ ଶତ୍ରୁତାଠାରୁ ଦୂରେଇ ଯିବା ମଧ୍ୟ ଭଲ । ଏଥର ମୁଁ ଏଠି ନ ରହିଲେ ଚଳିବ । ଏବେ ରିପ୍ରେଜେଣ୍ଟସନ୍‌ଟି ଲେଖି ହାତେ ହାତେ ନେଇ କାଲି ମୁଁ ନିଜେ ଯିବି ଭୁବନେଶ୍ୱର ।

ତାଙ୍କର ଛାତିର ଉଷ୍ମତା ସୁନିତାଙ୍କ ନିଶ୍ୱାସ ସହ ଆସ୍ତେ ମିଶିଯାଉଥିଲା ।

୦

# ଅବସନ୍ନ ଅବଶୋଷ

ସମାଜରେ ବେଶ୍ ନାଁ କମେଇଥିଲେ ସେ ।

ସଙ୍ଗୀତ ଶିଳ୍ପୀଭାବରେ ସେ ଯେଉଁ ଶୀର୍ଷ ଛୁଇଁଥିଲେ ଅନ୍ୟମାନଙ୍କୁ ତୁଳନା କଲେ ସମସ୍ତେ ତାଙ୍କ ତଳକୁ ଆସିବେ ।

ସାହିତ୍ୟକ୍ଷେତ୍ରରେ ମଧ୍ୟ ସମୟ ମିଳିଲେ କିଛି ଲେଖାଲେଖି କରୁଥିଲେ । ଯେତିକି ଲେଖିଛନ୍ତି ଅନେକ ରଥୀ ମହାରଥୀମାନଙ୍କ ସହ ସେ ତୁଳନୀୟ । କଳାକାର ଭାବରେ ଯାହା ଯଥାର୍ଥ ସବୁ ଗୁଣର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ ସେ । ସେ ଥିଲେ ଶିଳ୍ପୀ, କଳାକାରମାନଙ୍କର ମଉଡ଼ମଣି ଓ ଅପ୍ରତିଦ୍ୱନ୍ଦ୍ୱୀ । ଜୀବନ ସଂଗ୍ରାମରେ ପରାଧୀନ୍ ଚାକିରି ଛାଡ଼ି ଆଦରି ନେଇଥିଲେ ଏଇ ସ୍ୱାଧୀନ ପେଶାକୁ । ତାଙ୍କ ବ୍ୟକ୍ତିତ୍ୱର ଉର୍ବରା କ୍ଷେତରେ ନିର୍ଭୀକ ଭାବରେ ଛିଡ଼ାଇଥିଲେ ଜଣେ ସ୍ୱାଭିମାନୀ ନିପରବାଏ ନିଧଡ଼କ ଶିଳ୍ପୀଟି । ଧରାବନ୍ଧା ନୀତି ନିୟମର ଶୃଙ୍ଖଳ ତାଙ୍କୁ ବାନ୍ଧିପାରିଲା ନାହିଁ । ମୁକ୍ତ ବିହଙ୍ଗ ଭଳି ଉଡ଼ିବାରେ ଅନେକ ଶାନ୍ତି, ଅନେକ ଆନନ୍ଦ । ପେଶା ଥିଲା ସିନା ସଙ୍ଗୀତ ସାଧନା; କିନ୍ତୁ ନିଶା ଥିଲା ନିଶାପାଣି । ତାହାହିଁ ତାଙ୍କ କାଳର କାରଣ ବି ହେଲା । ଅନେକଙ୍କର ବାରଣ ଥିଲା ସାମୟିକ । ମଦନିଶାରୁ ବର୍ତ୍ତିବା ଥିଲା ତାଙ୍କ ଆୟତ୍ତର ବାହାରେ । ତାଙ୍କର ଯୁକ୍ତି ଥିଲା; ଯାହା ପାଇଥିଲେ ଆଉ ଯାହା ବି ଜୀବନରେ ହରେଇ ବି ଥିଲେ ସବୁ ୟାରି କରାମତିରେ । ତାଙ୍କ ଭାବନା, ଜୀବନଶୈଳୀ ଓ ସ୍ପନ୍ଦନର ମୂଳାଧାର ଥିଲା ପ୍ରେମ । ପ୍ରେମ ହିଁ ସୃଜନଶୀଳତାର ପ୍ରଧାନ ଉପଜୀବ୍ୟ; କଳା କଳ୍ପନା ସୃଷ୍ଟି ଓ ସଙ୍ଗୀତର ମୁଖ୍ୟ ଅଂଶ । ପ୍ରେମକୁ ସେ ଯେମିତି ବୁଝିଥିଲେ ଅନ୍ୟ କେହି ବୁଝିବା କଷ୍ଟ । ପ୍ରେମ ହିଁ ସଙ୍ଗୀତ । ପ୍ରେମ ହିଁ ଅଫୁରନ୍ତ ଶକ୍ତି, ଅପୂର୍ବ ସୃଜନର ମାଧ୍ୟମ । ଯୁକ୍ତି ଥିଲା ବଳିଷ୍ଠ । ସେ ଯୋଉଥିରେ ହାତ ଦେଉଥିଲେ ଅସଫଳ କ୍ୱଚିତ୍ ହେଉଥିଲେ ।

ସେ ଯେ ସବୁଥିରେ ମହାନ୍ ଥିଲେ ମୋଟେ ତା' ନୁହେଁ । ତାଙ୍କ କାର୍ଯ୍ୟକଳାପର ଆଳାପନ ଓ ଆରୋପ ବେଳେବେଳେ ଏପରି ଚହଟିଛି; ଅନେକ ଶିହରିତ ହୋଇଥିଲେ । ହଁ, ଏ ଦୁନିଆରେ କିଏ ନିଷ୍କଳଙ୍କ ? ଚନ୍ଦ୍ରରେ ପୁଣି ତ ସାମାନ୍ୟ କଳଙ୍କ ରହିଛି । ସେ କଳଙ୍କ କ'ଣ ତା'ର ସୁନ୍ଦର ରୂପକାନ୍ତି କି ଢାଙ୍କି ଦେଇଛି ?

ସେମିତି ସ୍ୱପ୍ରତିଭାର ସ୍ୱୟଂଭୂ ନମୁନା ପାଖରେ କ୍ଷୀଣ ନିଷ୍ପ୍ରଭ ହୋଇଥିଲା ସେସବୁ ପିଲାଳିଆମୀ ଖିଆଲ ଓ କାର୍ଯ୍ୟକଳାପ ତାଙ୍କର ।

ଅନେକଥର ଆକାଶବାଣୀରେ ତାଙ୍କୁ ଭେଟିଛି । କିନ୍ତୁ ସାହସ ହେଇନି କଥା ଦି' ପଦ ହେବାକୁ । ପ୍ରାକ୍ ସ୍ୱୀକୃତି ଅପେକ୍ଷାରେ ଥିବା ଶିଳ୍ପୀର କ'ଣ ଅବା ପରିଚୟ ସେ ବିରାଟ ବ୍ୟକ୍ତିତ୍ୱ ନିକଟରେ ।

ଥରେ ମ୍ୟୁଜିକ୍ ଷ୍ଟୁଡ଼ିଓରୁ ବାହାରି ନାଟକ ଷ୍ଟୁଡ଼ିଓକୁ ସେ ପଶିଆସିଲେ, ତାଙ୍କ ଅନ୍ତରଙ୍ଗ ବନ୍ଧୁଙ୍କୁ ଖୋଜିବାକୁ । ଯିଏ କି ମୁଖ୍ୟ ଭୂମିକାରେ କଣ୍ଠ ଦେଉଥାଆନ୍ତି । କାଚ ଏପଟେ ଚେୟାର ଟାଣି ବସିପଡ଼ିଲେ । କାନରେ ବାଜୁଥାଏ ସଂଳାପଗୁଡ଼ିକ ।

ସଂଳାପ ନୁହେଁ ତ ନିରୋଳ କବିତା । ଜୀବନ ଯନ୍ତ୍ରଣାର କଣ୍ଟକିତ ନିଛକ ଅବଶୋଷ, ପୋଡ଼ି ପୋଡ଼ି ଦେହରେ ଗଳି ଯାଉଥାଏ, ଯେମିତି ସମାଜର ସଙ୍କୁଚିତ ସଂକୀର୍ଣ୍ଣ ରକ୍ତକୁ ନିଗାଡ଼ିଦବ, ସେଇଥିପାଇଁ ତ ନାଟ୍ୟକାର ନିଜ ଭିତରେ ସବାର ହୋଇ ସଂଳାପରେ ଫୁଟେଇଛି ତା'ର ଶିଳ୍ପୀର ମୁହଁରେ । ବେଶ୍ ସଚେତନ ଥିଲେ ଶିଳ୍ପୀ, ଯେଉଁଠି କଣ୍ଠ ହିଁ କେବଳ ନାଟକଟି ସୃଷ୍ଟିରେ ମୁଖ୍ୟ ଆୟୁଧ ସେଠି ସଚେତନ ନ ହେଲେ କଥା ସରିବ । ବସୁ ବସୁ ବସିଗଲେ ସେ, ସମ୍ପୂର୍ଣ୍ଣ ରେକର୍ଡ଼ ସରିବା ପର୍ଯ୍ୟନ୍ତ । ସେଇଠି ହେଲା ତାଙ୍କ ସହ ପ୍ରଥମ ପରିଚୟ ।

ତା'ପରେ ତାଙ୍କ ପାଖକୁ ଯାଇଛି ଅନେକ ଥର । କେତେ ନୂଆ ନୂଆ କାହାଣୀ ଲେଖିବା ପୂର୍ବରୁ ସେ ଆମୂଳଚୂଳ ବଖାଣିଛନ୍ତି । ଉପନ୍ୟାସ ଗଳ୍ପ ଲେଖିବା ପୂର୍ବରୁ ବିଷୟବସ୍ତୁ ଉପରେ କେତେ ଯୁକ୍ତିତର୍କ, କଥାବସ୍ତୁର ବିନ୍ୟାସ ସମ୍ପର୍କରେ ଘଣ୍ଟା ଘଣ୍ଟା ବିତିଛି । ଏଇଟା କେମିତି ହେଲା, ଲେଖିଲେ କେମିତି ହେବ, ପାଠକେ ପଢ଼ିବେ ତ ? କେତେ ପ୍ରଶ୍ନ, ଅତୁଆ ସୂତାରେ ଛନ୍ଦି ହୋଇପଡ଼ିଛି । ଉତ୍ତର ନ ଦେଲେ ତାଙ୍କ ରାଗରୁଷା ଅଭିମାନୀ ମୁହଁକୁ ଏଡ଼େଇ ଫେରିହେଇନି ।

ତାଙ୍କ ବିଶ୍ୱାସର ବାଲିବନ୍ଧ ଅନୁରୂପ ଦୃଢ଼ । ସେ କହନ୍ତି, ମୃତ୍ୟୁକୁ ସ୍ପଷ୍ଟଭାବରେ ଯେ କୌଣସି ପାତ୍ରରେ, କାଳରେ ଓ ସ୍ଥାନରେ ଉପସ୍ଥାପନ କରିବାରେ ଆମ ରାଶିଚକ୍ରର କୁଆଡ଼େ ଧର୍ମ । ସେଇଥିପାଇଁ କଥା କଟାକଟିରୁ ତାଙ୍କ ନୂଆ କାହାଣୀ ନୂଆ ମୋଡ଼ ନେଇଛି ।

ତାଙ୍କ ଦମ୍ଭୋକ୍ତି ତୁଳା ପରି ନରମି ଯାଇଛି, ଦେଖିଛି ସୃଜନର ମାନବୀୟ ଆଦର୍ଶ ପାଖରେ ତାଙ୍କ ନମନୀୟ ସମର୍ପଣ ସ୍ୱଭାବର । କିନ୍ତୁ ତାଙ୍କ ବିରାଟ ହିମାଳୟ ସଦୃଶ୍ୟ ଜ୍ଞାନ ବିଦ୍ୱତ୍ତା ପାଖରେ ସାମାନ୍ୟ ଉଇହୁଙ୍କା ପରି କେତେ ବାର ବି ସଙ୍କୁଚିତ ମଧ ହୋଇଛି । ହାଏ ଭାବିଲା ବେଳକୁ ସେ ନାହାନ୍ତି ।

ସେଥର କଥା ଛଳରେ ନିଜର ଅବଶୋଷ ଜଣାଉଥିଲେ । ତାଙ୍କ ଗଳ୍ପ ଉପନ୍ୟାସ କେହି ରୂପାନ୍ତରିତ କଲେନି ଚିତ୍ରନାଟ୍ୟରେ । ଶେଷରେ ଗୋଟି ଗୋଟି ପଢ଼ି ପଢ଼ି ବାଛିଥିଲି 'ଘୁଙ୍ଗା' ଗଳ୍ପଟିକୁ । ନିଜେ ଜେରକ୍ସ କରି ଛୋଟିଆ ଚିଠି ସହ ପଠେଇ ଦେଇଥିଲି ଡାକରେ । ରାଜି ଅରାଜି ହେବାର ଦ୍ୱନ୍ଦ୍ୱରେ ତାଙ୍କ ରୋଗାକ୍ରାନ୍ତ ଚେହେରା ଆଖିରେ କ୍ଷଣକେ ନାଚିଗଲା । ମନରେ ପ୍ରଶ୍ନ ବି ଆସିଲା । ଗଳ୍ପଟି କେବର ? କେମିତି ? ନାଟକୀୟତା ଅଛି ନା ନାହିଁ ? ଇତ୍ୟାଦି । ଏସବୁର ଉତ୍ତର ନ ଖୋଜି ଖାଲି ପଢ଼ିଦେଲି ଗଳ୍ପଟି ।

ସେ ଥାଆନ୍ତି ଡାକ୍ତରଖାନାରେ । ଚେତନା ବେଳେ ବେଳେ ରହୁଥାଏ, ଚାଲି ବି ଯାଉଥାଏ । ଗଣ ମାଧ୍ୟମରୁ ଜଣାପଡୁଥାଏ ତାଙ୍କ ଅବସ୍ଥା ସାଂଘାତିକ । ବର୍ତ୍ତିବା ଏଥର ସନ୍ଦେହଜନକ । ତଥାପି ଜନଗଣର ପ୍ରାର୍ଥନା ଓ ପୂଜାର୍ଚ୍ଚନା ସେ ବଞ୍ଚିଯାଆନ୍ତୁ ।

ସବୁ କାମକୁ ପଛ କରି ଏପିସୋଡ୍ ଅନୁଯାୟୀ ଲେଖି ଚାଲିଥାଏ । ମନକୁ ପାପ ଛୁଉଁଥାଏ, କାଳେ ତାଙ୍କର କିଛି ହୋଇଯିବ କି ? କିନ୍ତୁ ବିଶ୍ୱାସ ଥିଲା, ସେ ଅନ୍ୟ ଥର ପରି ଡାକ୍ତରଖାନାରୁ ଫେରିଆସିବେ, ଘୁଙ୍ଗା ଗପର ଚଳଚ୍ଚିତ୍ର ରୂପାୟନ ଦେଖିବେ ।

ତା' ହେଲାନି—

ଘୁଙ୍ଗା ଚରିତ୍ରଟିର ସଂଳାପ ନ ଥାଇ ପୃଷ୍ଠଭାଗରୁ କେବଳ ଗୋଟିଏ ଅଭିବ୍ୟକ୍ତି ପ୍ରତିଧ୍ୱନିତ ହେବ ଶେଷରେ ତାହା ସ୍ଥିର କରିଥାଏ । ସେଇଟି ଗୁରୁତ୍ୱପୂର୍ଣ୍ଣ ଏବଂ ଚିତ୍ରନାଟ୍ୟର ମଞ୍ଜି ସଂଳାପ ।

ସତର୍କତା ସହ ସେଇଟି ଲେଖା ହେଉଥାଏ, ଫୋନ୍ ଆସିଲା—ସେ ଆଉ ନାହାନ୍ତି ।

ତାଙ୍କ ମୃତ୍ୟୁରେ ସରକାରଙ୍କ ଶୋକସଭା, ରାଷ୍ଟ୍ରୀୟ ସମ୍ମାନ ଘୋଷଣା ଇତ୍ୟାଦି ଶୁଣିଲି ସମ୍ବାଦରୁ । ଚାଉଁ ଚାଉଁ କରି ଭିତରେ କିଏ ଯେମିତି କେଁଚି ପକେଇଲା ।

ମୃତ୍ୟୁ ତ ଆସିବା ଅନିବାର୍ଯ୍ୟ । ଅନ୍ତତଃ ତାଙ୍କ ପରି ସଙ୍ଗୀତ ଶିଳ୍ପୀର ଜୀବନରେ ମରଣ ତା'ର ଘୁଙ୍ଗୁରରେ ତାଳ ଲୟର ଗୁଞ୍ଜରଣ କାହିଁ ବଜେଇଲା ନାହିଁ ତ ? ବୋଧହୁଏ, ଭୁଲିଗଲା... ବୁଝିହୁଏନା । ସତରେ ସବୁ ମୃତ୍ୟୁ ବଡ଼ ଦାରୁଣ, ମାୟା ମୋହ ବନ୍ଧନକୁ ଏଡ଼େଇ ଏଇଠି ବୋଧେ ଏକାକୀତ୍ୱର ନିଗୂଢ଼ ସତ୍ୟତାକୁ ପ୍ରାଣୀ ଉପଲବ୍ଧ କରେ ।

ହାତଗୋଡ଼ ଛାଟି ବୁକୁ ଫଟାଇ ଡାକଛାଡ଼ିଲେ ବି କେହି ଶୁଣିବେନି କି ହେଜିବେନି ସେଇ ମରଣବେଳାର ନିଃସଙ୍ଗତା ଆଉ ବିଷାଦ ବିଡ଼ମ୍ବିତ ଚରମ ପରିଣତିକୁ ।

କାଳାଧୀନ ମଣିଷ ସମୟ ବୁକୁରେ ହଜିଯାଏ । ଶୁଣିଛି, ଯେଉଁମାନଙ୍କଠୁ ସଂସାର କିଛି ପାଇବାର ମୋହରେ, ଅସମର୍ଥ ହୁଏ, ସେଇ ମୁହୂର୍ତ୍ତରେ ଆରମ୍ଭ ହୁଏ ହତାଦାର । ବିଷାଦବୋଧ ଭିତରେ ଉଇ ଚରିଯାଏ, ଅନ୍ତର ତଳର ନିରୁତା ସ୍ନେହ ବନ୍ଧନ, ପୂର୍ବର ପ୍ରତିଭା ସବୁକିଛି କିନ୍ତୁ ସମାଜ ଫିଙ୍ଗିଦେବାର କାଳାତୀତ ସତ୍ୟରୁ; ମଣିଷକୁ ଈଶ୍ୱର ସାଉଁଟି ନିଅନ୍ତି । ଅତୀତର ସ୍ମୃତିମୁଖର ଦିନଗୁଡ଼ିକ କେମିତି ହଜିଯାଏ ପରିଣତର ଉତ୍ତପ୍ତ ସାମାଜିକ ଉପେକ୍ଷା ପାଖରେ ।

ଏମିତି ଅନେକ ଦୟନୀୟ ମୃତ୍ୟୁ ମହନୀୟ ପ୍ରତିଭାଧରମାନଙ୍କର ଏ ମାଟିରେ ଘଟିଛି । ଅନ୍ୟଜଣେ ବିଶିଷ୍ଟ କଳାକାରଙ୍କର ଏଇ ନିକଟରେ ମୃତ୍ୟୁ ହୋଇଛି । ବୟସଭାରାରେ ତାଙ୍କୁ ବାର୍ଦ୍ଧକ୍ୟ ଛୁଇଁଥିଲା । ଦିନେ ତାଙ୍କ କଣ୍ଠସ୍ୱର, ମଞ୍ଚ ଓ ଚଳଚ୍ଚିତ୍ରର ଅଭିନୟ ସର୍ବବିଦିତ ଥିଲା ।

କିନ୍ତୁ ଶେଷ ଜୀବନ, ସେମିତି ନିଃସଙ୍ଗ, ଉପେକ୍ଷିତ ଆଉ ବିଡ଼ମ୍ବିତ । ସାଂସାରିକ କର୍ମଜଞ୍ଜାଳ ଜୀବନରେ ଯେତେସବୁ ସାର୍ଥକତା ନିରର୍ଥକ ମନେହେଲା । ଅତୀତର ସେଇ ଖ୍ୟାତି, ଯଶକୀର୍ତ୍ତି ଶେଷ ଜୀବନରେ ମୁଠେଇ ଧରିବାକୁ ହାତରେ ଯୁ ପାଇଲାନାହିଁ ସେ ଅନନ୍ୟ ପ୍ରତିଭାଶାଳୀ ଅଭିନେତାଙ୍କର । ମୃତ୍ୟୁର କିଛି ଦିନ ପୂର୍ବରୁ ଆମେ ଯାଇଥାଉ ତାଙ୍କର ସାକ୍ଷାତ୍‌କାର ନେବାକୁ । ତାଙ୍କ ଥରିଲା ହାତକୁ ତଳେ ଝୁଲେଇ ସାର୍ଟ ବୋତାମ ଲଗେଇ ବସେଇ ଦେଇଥିଲି କ୍ୟାମେରା ସାମ୍ନାରେ ।

ପ୍ରଥମେ ହସିଲେ ମନ ଖୋଲି । ବସାଭଙ୍ଗା ଉଡ଼ାପକ୍ଷୀର ପୁଣି କି ସାକ୍ଷାତକାର । ହସ ଭିତରେ ଅନେକ ଅପ୍ରକାଶ୍ୟ କ୍ଳେଶ, ଯନ୍ତ୍ରଣାର ଦହଗଞ୍ଜ ଶୃଙ୍ଖଳା ମୁହଁତଳୁ ନିରୁତା ବିବଶ କଷଣ ବାରି ହୋଇପଡୁଥିଲା । ସେ ହସର ଲହରୀରେ ଲହରାୟିତ ହେଉଥିଲା ବେଦନାର ଅଗଣିତ ଅବଶୋଷ । ଜିଦ୍ କଲେ, ଡାକ୍ତରୀ ବାରଣ ମାନି ଛ' ମାସ ହେବ ସିଗାରେଟ ଟାଣି ନ ଥିଲେ । କେହି ଏଠିକି ଆସିବେନି, ଅନ୍ତତଃ ତୁମମାନଙ୍କ ସହ ସେଲିବ୍ରେସନ୍‌ଟା ହୋଇଯାଉ ସିଗାରେଟ୍‌ରେ । ବନ୍ଧୁଙ୍କ ପକେଟରୁ ସିଗାରେଟ ଆଣି ଲାଇଟର ଜଳେଇ ଦିଆଗଲା । ସେ ଧୂଆଁ ଛାଡ଼ିଲେ । ତାଙ୍କ ମୁହଁ, ବେକ ତଳର ଅତିରେକ ଶେତା ମଳିନ ଭାଙ୍ଗ ଭାଙ୍ଗ ଚମ ଚିହ୍ନ । ଅଭାବବୋଧ ଓ ଅସହାୟ ବିଷାଦ ନିର୍ଜ୍ଜିତ ପିଠିଆ ମଣିଷଟିର ନିର୍ଲିପ୍ତ ଓଠରୁ ବେଶ୍ ଭାବଗମ୍ଭୀର ସ୍ୱଷ୍ଟୋକ୍ତି ସାକ୍ଷାତକାରଟିରେ ।

ଆମର ବିଦାୟବେଳା—ପାଖକୁ ଡାକି ଅନୁରୋଧଟିଏ କଲେ, ନଅମାସ ହେଲା ଦିଲ୍ଲୀରୁ ପେନସନ୍ ଆସିନି, ଏକାଡ଼େମୀକୁ କ'ଣ ସରକାର ପଇସାପତ୍ର ଦେଉନି । କେମିତି ବଞ୍ଚିବେ ଏ କଳାକାର ? ହାହାକାର... ହତାଶ ଦୀର୍ଘଶ୍ୱାସ ।

କିଛି ଲେଖାଲେଖି କରିବା ପୂର୍ବରୁ ସେ ଚାଲିଗଲେ ।

ସେ ପାରିରେ ସେ କେମିତି ଥିବେ, ତାଙ୍କ ଅବଶୋଷର ଶେଷ ତୃଷ୍ଣା ମେଣ୍ଟିଲାନି, ତଥାପି ସେ ହଜିଗଲେ ଇତିହାସର ଅତୀତ ପୃଷ୍ଠାରେ । ଯେମିତି ଅନେକ ହଜିଛନ୍ତି । X X X

ଯେମିତି ହଜିବାକୁ ଯାଉଛି ଏଇ ମହାନ୍ କଳାକାର ସଙ୍ଗୀତଜ୍ଞ ।

ଲୁଇରେ ଶବ ନଦା ଯାଉଥାଏ । ନିର୍ଜୀବ ଶରୀର ଉପରୁ ଗଦା ଗଦା ନଦା ଫୁଲକୁ କଢ଼ାଯାଉଥାଏ ସେତେବେଳେ, ଆଖିର ମୋଟା ଚଷମା—ହଲିଗଲା ପ୍ରାଣହୀନ

ଶରୀର—ଲାଗିଲା ଓଠସନ୍ଧିର ଦାନ୍ତଗୁଡ଼ିକ ଖେନ୍ତେଇ ହେଇ ପଡ଼ିଲେ ଯେମିତି; ହଠାତ୍ ଦଲକାଏ ପବନରେ ବାଁପଟୁ ଶବ ଉପରେ ପଡ଼ିଥିବା ଧଳାଲୁଗାଟା ଉଡ଼ିଗଲା । ନିରାଭରଣ ଆଣ୍ଠୁ ଉପରେ ଜ଼ିକ୍ ଜିକ୍ କଲା ପୁରୁଣା କ୍ଷତଟା, ଭୟ ଲାଗିଲା । ଆଣ୍ଠୁ ଚକିଟା ତ ଡାକ୍ତର ଉଠେଇ ଦେଇଥିଲେ । ମୃତ୍ୟୁର ବର୍ଷକ ପୂର୍ବରୁ ସେପୁରୁକୁ ଚାଲିଯିବ ବୋଲି ସଙ୍କେତ ମିଳି ସାରିଥିଲା । ଦୁଇଆଣ୍ଠୁ ଯୋଡ଼ି ଆଣ୍ଠୁ ଉପରେ ମୁଣ୍ଡ ଥୋଇ କେତେ କଥା ଚିନ୍ତା କରୁଥିଲ । ବହୁ ପୁରୁଣା ଲୋକ ଏ ବସିବାକୁ ତିନିମୁଣ୍ଡିଆ ମଣିଷ ରୂପେ ଆଖ୍ୟା ଦିଅନ୍ତି । ଏ ଢଙ୍ଗଢାଙ୍ଗ କୁଆଡ଼େ ଭାରି ଖରାପ । ପରିବାରଠୁ ଆରମ୍ଭ କରି ବନ୍ଧୁପରିଜନ ଏମିତି ବସିବାକୁ ବାରଣ କରୁଥିଲେ । ହେଲେ ସେ ମାନୁ ନ ଥିଲେ ।

କିନ୍ତୁ ଯେତେବେଳେ ଆଣ୍ଠୁ ଚକିଟା ଅପରେସନ୍ ପରେ ଉଠେଇ ଦିଆଗଲା, ସେତେବେଳେ ସେ ଅଭ୍ୟାସ ଆଉ ରହିଲା ନାହିଁ । ଗୋଡ଼ଭାଙ୍ଗି ବସି ହେଉ ନ ଥିଲା; ବସି ବି କେମିତି ହେବ ? ଖୁସି ହୋଇଥିଲୁ ଯାହାହେଉ ଆଉ କିଛି ଦିନ ତିଷ୍ଠି ଯିବେ । ତଥାପି ସେ ଦିନ ଗଣୁଥିଲେ ନିରୋଳାରେ ନୀରବରେ । ଆଣ୍ଠୁ ଚକିଟା ଯିବାରେ ସେ ନିଜେ ଦାୟୀ ଥିଲେ । ଜୀବନ ଆଦୌ ଏକ ସରଳରେଖା ନୁହେଁ । ଭଙ୍ଗୁର ଅଙ୍କାବଙ୍କା ବିଚ୍ଛିନ୍ନ ଖଣ୍ଡିତ ଛୋଟ ଛୋଟ ଗାର । ଆଲୁଅ ଓ ଅନ୍ଧାରର ମିଶାମିଶି ମିଶ୍ରଣ, ଦୁଃଖର କୁହେଳିକା ଓ ସୁଖର ଆତିଶଯ୍ୟର ଆବେଶନରେ ଆଉଟୁ ପାଉଟୁ ମଣିଷ । ଏଥିରୁ କେହି ବାଦ୍ ପଡ଼ିନାହାନ୍ତି, ସେ ବା କେମିତି ? ଆଗରୁ ଯେତେ କମେଇଥିଲେ ପ୍ରାୟ ଉଜାଡ଼ି ସାରିଥିଲେ । ନ ମାଗିଲା ଲୋକଠୁ ନିଶାପାଣି ଲାଗି ମାଗି ଦେଉଥିଲେ । ଅନାଟନରେ ଭାରି ହୋଇପଡ଼ି ଥିଲା ତାଙ୍କର ସମଗ୍ର ପରିବେଶ । ପକେଟ ଦେଖିଲି, ଶହେ ଦୁଇଶହ ଯିବ, ତାଙ୍କ ସହ ଦେଖାସାକ୍ଷାତ ତ ହେବ ।

ଦେଖୁ ଦେଖୁ ଆନନ୍ଦ କହିଲେ ନ ସରେ । ଷ୍ଟୁଡ଼ିଓରେ ରେକର୍ଡ଼ିଂ ଅଛି କହି ତାଙ୍କୁ ସେଠି ଡ୍ରପ କରିଦେବାକୁ କହି ଗାଡ଼ିରେ ବସି ଗୀତଗୁଡ଼ିକ ଶୁଣାଇଲେ । ସବୁଥର ପରି କେମିତି, ଚଳିବ ତ ପଚାରିଲେ ।

କଥାର ଖିଅକୁ ଅନ୍ୟ ମୋଡ଼ ଦେବାକୁ ଚାହିଁଲି । ସେ କିନ୍ତୁ ଛାଡ଼ିବା ଲୋକ ନୁହେଁ । ତାଙ୍କର ନିଶା ବି ମୁଣ୍ଡରେ ଥାଏ । ଗାଡ଼ିଚାବିକୁ ତାଙ୍କ ପକେଟରେ ରଖି ବାଧ୍ୟ କଲେ ସଙ୍ଗୀତ ସହ ଗୀତଗୁଡ଼ିକୁ ପୁଣି ଥରେ ଶୁଣିନେବାକୁ ଷ୍ଟୁଡ଼ିଓ ଭିତରେ ।

ଅସୁସ୍ଥତାବଶତଃ ତାଙ୍କ କଣ୍ଠ ଆଗପରି ନ ଥିଲା । ରେକର୍ଡ଼ ହେବା ପୂର୍ବରୁ ବାହାରକୁ ଆସିଲୁ । ମତାମତ ଜାଣିବାକୁ ପୁଣି ପୂର୍ବ ଜିଦ୍ ।

ଅତମତ ହୋଇ ନିର୍ଭୀକ ଭାବରେ ଗୋଟିଏ ଗୀତ ଛଡ଼ା ଅନ୍ୟ ଗୀତ ଭଲ ଲାଗୁନି କହିଦେଲି ।

ଶୁଣିଲି, ସେଦିନ ସେ ଗୋଟିଏ ଗୀତକୁ ରେକର୍ଡ଼ କରି ଫେରିଥିଲେ ଆକାଶବାଣୀର ସୁବର୍ଣ୍ଣ ଜୟନ୍ତୀ ସଭାକୁ । ସେଠି ଅତିଥି ଥିଲେ କେନ୍ଦ୍ରମନ୍ତ୍ରୀମାନେ । ଆଶା ଥିଲା ସେ ମଞ୍ଚକୁ ଡକାହେବେ ଓ ସମ୍ବର୍ଦ୍ଧିତ ହେବେ । ତାଙ୍କୁ ମଞ୍ଚକୁ ଡକାଯାଇନି । ଅଗଣିତ ଦର୍ଶକ ଭିତରେ ସେ ଜଣେ ହୋଇଥିଲେ । ବିଳମ୍ବିତ ରାତିରେ ରିକ୍ସା ନ ପାଇ ଚାଲି ଚାଲି ଫେରିବା ବାଟରେ ଏକ ତାରକୁ ଝୁଣ୍ଟି ଆଣ୍ଠୁ ଫାଟିଛି । ତା'ପରେ ଦି' ମାସ ହସପିଟାଲରେ ।

ଅନେକଥର ହସପିଟାଲ ଯାଇଛି ତାଙ୍କୁ ଦେଖିବାକୁ । କିଛି ନ କହି ଖାଲି ଚାହୁଁଥିଲେ; କିନ୍ତୁ ସେ ଚାହାଣୀ ହିଁ ଯେମିତି ଅନେକ କଥା କହୁଥାଏ ।

ହଁ, ଦେବା ନେବାର ସଂସାରରେ ତାଙ୍କର ଅବା ଏ ବୟସରେ କ'ଣ ଆଉ ଦେବାର ରହିଛି ଯେ ସେ ଆଶା କରିବେ । ଆଶା ପରା ନିରର୍ଥକ, ଦୁଃଖର କାରଣ ।

ମର୍ମେ ମର୍ମେ ଅନୁଭବୀ ଥିଲି ତାଙ୍କର କଷ୍ଟ, ସ୍ୱାଭିମାନ ଓ କ୍ଲେଶ ।

ଅଭିମାନୀର ଦମ୍ଭ ଓ ଦୃପ୍ତ ତେଜ ପୂର୍ବ ଶିଳ୍ପୀଙ୍କ ପରି ଧସିଯାଉଥାଏ ତଳକୁ ଆହୁରି ତଳକୁ, ଅନେକ ତଳକୁ ।

ନିଆଁ ଧରିଲା——ଜୁଇରେ——ବସିଥାଏ ଶ୍ମଶାନର ଅନ୍ୟ ଗୋଟିଏ ସମାଧିପୀଠରେ——କୁହୁଳି କୁହୁଳି ଜୁଇର ଧୂଆଁ ଉଠୁଥାଏ, କେବଳ ଗୋଡ଼ ଦୁଇଟା ବାହାରକୁ ଦିଶୁଥାଏ ।

ବାଁ ଗୋଡ଼ର ଅପରେସନ୍ କ୍ଷତଟା ସ୍ପଷ୍ଟରୁ ସ୍ପଷ୍ଟତର ହୋଇ ବାରମ୍ବାର ଝଲସି ଯାଉଥାଏ ମୋଟା ଚଷମାର କାଚ ଦେଇ ।

ଶବାଧାରରେ ଲୋକଗହଳି କ୍ରମେ କମି କମି ଆସୁଥାଏ ।

ସବୁ କୀର୍ତ୍ତି ଅନନ୍ୟ ପ୍ରତିଭା ସାହିତ୍ୟକୃତି ଚିନ୍ତାଧାରା ବିପୁଳ ଆଶା ଓ ଅକାଂକ୍ଷା କୁହୁଳିତ ଧୂଆଁରେ ମିଶି ଯାଉଥିବାବେଳେ ସରକାରଙ୍କ ରାଷ୍ଟ୍ରୀୟ ସମ୍ମାନ ଘୋଷଣାରେ ସରଗରମ ତୋପଧ୍ୱନି ଆତସବାଜୀ ଜନଗହଳି ଭାରି ଫିକା ଫିକା ଲାଗୁଥାଏ । ମତେ ଲାଗୁଥାଏ ସେ ଉପରୁ ଥାଇ ଖାଲି ବିଦ୍ରୁପ କରୁଥାଆନ୍ତି, ସେଇ ତୁଚ୍ଛା ଛଳନାଭରା ବୃଥା ସମ୍ମାନକୁ ।

○

# ଭଲ ଗପ ପାଇଁ ପ୍ଲଟ୍‌ଟିଏ

ଜୀବନ ଯନ୍ତ୍ରଣା ମଧ୍ୟରେ ଜୀବନକୁ କିପରି ସହଜ ଭାବରେ ଭଲ ପାଇ ବହି ଯାଉଥିବା ସମୟତକ କଟାଇ ଦେଇ ହୁଏ, ତାହା ଖୁବ୍ ଭଲ ଭାବେ ସ୍ମିତାକୁ ଜଣାଥିଲା । ଚବିଶ ବର୍ଷର ବୟସରେ ଦୁଃଖ କ'ଣ କ୍ଷଣେ ସେ ଉପଲବ୍ଧି କରିନି ।

କିନ୍ତୁ, ଆଜି କେମିତି ଅଡୁଆ ଅଡୁଆ ଲାଗୁଛି ତାକୁ । ପାଗଟା ଭଲ ନାହିଁ । କାନ୍ଥ ଘଣ୍ଟାର ଟିକ୍ ଟିକ୍ ଶବ୍ଦ ସଙ୍ଗେ ମିଶିଯାଉଥିଲା ମେଘର ଟିପ୍ ଟିପ୍ ଶବ୍ଦ । ଝରକା କବାଟରେ ବର୍ଷାର ରିମ୍‌ଝିମ୍ ତାଳ ସଙ୍ଗେ ତା'ର ଦୀର୍ଘଶ୍ୱାସ । ସ୍ୱାମୀ ଦେବଦତ୍ତଙ୍କୁ ଅଫିସ୍ କାମରେ ଟୁର୍‌ରେ ଷ୍ଟେସନ୍‌ରେ ସି-ଅଫ୍ କରି ଫେରିଆସିବା ପରଠୁ ତାକୁ କିଛି ଭଲ ଲାଗୁନି । ସମୟତକ ତାଙ୍କ ଫେରିବା ପର୍ଯ୍ୟନ୍ତ କିପରି କଟିବ, କ'ଣ କରିବ କୂଳକିନାରା ମିଳୁ ନ ଥାଏ । ଦେବଦତ୍ତଙ୍କ ଫେରିବା ପର୍ଯ୍ୟନ୍ତ ପ୍ରତୀକ୍ଷାର ଯନ୍ତ୍ରଣା ଯେ କି ଦୁର୍ବିସହ ଭିତରେ କଟୁଛି ତାର କଥାରେ ସ୍ଫୁରୁ ନାହିଁ ଆଜି । କୋହଲା ପାଗ ସାଙ୍ଗକୁ ଏଇ କନକନିଆ ଥଣ୍ଡା ପାଗରେ ଦେବଦତ୍ତ ଥିଲେ ତା'ର କୋମଳ କାଳୁଆ ଦେହଟାକୁ ତାଙ୍କ ଦେହରେ ନେଶି ଦେଇ ଘନଘନ ନିଶ୍ୱାସରେ ସଁ ସଁ ହୋଇଯାଉଥାଆନ୍ତା ସେ ।

କିନ୍ତୁ ବାହାଘରର ଦୁଇମାସ ଭିତରେ ଏଇ ବିରାଟ ସରକାରୀ ବଙ୍ଗଳାରେ ଯୁବତୀ ସ୍ତ୍ରୀକୁ ଏକାକିନୀ ଛାଡ଼ି ଟୁର୍‌ରେ ଯିବା ଦେବଦତ୍ତଙ୍କ ପକ୍ଷରେ ଠିକ୍ ହୋଇନି । ନିହାତି କଷ୍ଟକର ବ୍ୟାପାର ।

ନିବିଷ୍ଟଭାବେ କୋଠରୀର ନିଥର ନିସ୍ତବ୍ଧତା ଭାଙ୍ଗି ଖାଲି ପଡ଼ିଥିବା ଦେବଦତ୍ତଙ୍କର ମୁଣ୍ଡପାଖ ତକିଆକୁ ଟାଣିନେଇ ନିଜ ତକିଆ ସହ ଯୋଡ଼ିଦେଲା । ମୁଣ୍ଡଟି ସାମାନ୍ୟ ଉପରକୁ ଉଠିଗଲା । ପାଖ ସେଲ୍‌ଫରୁ ମ୍ୟାଗାଜିନ୍‌ଟିଏ ଟାଣି ଆଣି ପୃଷ୍ଠା ପରେ ପୃଷ୍ଠା ଖେଳେଇ ଦେଇ ପୁଣି ଥୋଇଦେଲେ ସ୍ମିତା ।

ଚାପି ହୋଇ ରହିଥିବା ଓଠ ଦିଓଟିରେ ତା'ର ଅସ୍ଥିରତାର ଆଭାସ ଚିନ୍ତାର ଛାଇରେ ତା'ର ନିଦହୀନ ଆଖି ଦିଓଟି ଆଜି ଅନେକ କ୍ଳାନ୍ତ ଆଉ ଉଦାସ । ମୁଣ୍ଡ ବାଳର ମୂଳରୁ ଯେମିତି ନିଆଁ ବାହାରି ପଡୁଛି ।

ଅଧାକପାଳିର ଶିରାଗୁଡ଼ିକ ଫୁଲି ଉଠି ଧକ୍ ଧକ୍ କରୁଛି । ଏମିତି ଆଗରୁ ସେ କେବେ ଅନୁଭବ କରିନି । ମଝିରେ ମଝିରେ ଟେଲିଫୋନ୍ ଆସିଛି । ଦେବଦତ୍ତଙ୍କ ବନ୍ଧୁ ଏବଂ ତାଙ୍କ ଅଫିସ୍‌ରୁ । ଦୁଇ ତିନି ପଦ କଥାରେ ସୀମିତ ସମୟ ଦେଇ କଥା ହୋଇଛି ସେ । ପୂଝାରୀକୁ ଫ୍ରିଜ୍ ଭିତରେ ଖାଦ୍ୟପେୟ ରଖିଦେଇ ତା ଗାଁରୁ ବୁଲି

ଆସିବାକୁ ଅନୁମତି ମଧ ଦେଇଛି । ଡାଇନିଂ ଟେବୁଲକୁ ଯାଇ ଅଳ୍ପ କିଛି ଖାଇନେଇ ଫେରି ଆସିଛି ବେଡ୍‌ରୁମ୍‌କୁ ।

ଏ ସହରକୁ ଆସିବା ପରଠୁ ଛନ୍ଦା ସହ ତିନିଥର କଥା ହୋଇଛି ସେ । ଛନ୍ଦା ତାର ଅତି ଅନ୍ତରଙ୍ଗ ବାନ୍ଧବୀ । ଦୁହେଁ କଲେଜ ସାଥି । ସ୍ୱାମୀ ସହ ସେ ରହୁଛି ଚନ୍ଦନପୁରରେ । ସ୍ୱାମୀ ତା'ର ଏବେ ଷ୍ଟଡ଼ି ଲିଭ୍‌ରେ । ନୂଆ ହୋଇ ସ୍ମୀତାର ବାହାଘର ହୋଇଥିବାରୁ ଚିଠିପତ୍ରରେ କିଛି ଲେଖିଦେଲେ ସ୍ୱାମୀଙ୍କ ହାତରେ ପଡ଼ିଯିବାର ସମ୍ଭାବନା ଥିବାରୁ ଫୋନ୍‌ରେ ମନ ଖୋଲି ଦି'ପଦ କଥା ହେବାରେ ଶାନ୍ତି ସେମାନଙ୍କର ।

ବିଳମ୍ବିତ ରାତ୍ରିରେ ଫୋନ୍ କରି ଛନ୍ଦାର ନିଦ ଭାଙ୍ଗିବାକୁ ପସନ୍ଦ କଲାନି । ନୂଆକରି ଦେବଦତ୍ତ କିଣି ଆଣିଥିବା କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଥିବା ଗଳ୍ପ ପୁସ୍ତକଟି ଉପରେ ତାର ହଠାତ୍ ନଜର ପଡ଼ିଗଲା ।

ଲେଖକ ଚୌଧୁରୀ ପରିତୋଷ ରାଉତରାୟ ଏଇ ତ ସେଇ ଭଦ୍ରଲୋକ ପ୍ରାୟ ଯାହାଙ୍କ ନିଶାନ୍ତ କବିତା ତା'ର ଅଣ୍ଡର ଗ୍ରାଜୁଏସନ୍‌ରେ ପଢ଼ା ହେଉଥିଲା । ଆଧୁନିକ କବିତାରେ ନିଶାନ୍ତ ଏକ ଯୁଗାନ୍ତକାରୀ ସୃଷ୍ଟି । ଏହାର କବି ପରିତୋଷ ରାଉତରାୟ ଓଡ଼ିଆ କବିତା ରାଜ୍ୟର ଅନ୍ୟତମ ପ୍ରମୁଖ ପୁରୁଷ । ସାମ୍ପ୍ରତିକ ଜୀବନର ବିଭିନ୍ନ ସ୍ୱର ଓ ସ୍ୱାକ୍ଷରକୁ ନେଇ ତାଙ୍କ କବିତା ସୃଷ୍ଟି କରିଛି ଏକ ସ୍ୱତନ୍ତ୍ର ଧାରା । ପାଠକକୁ ଦେଇଛି ସ୍ୱତନ୍ତ୍ର ଧାରଣା । ତାଙ୍କ କଲେଜର ଓଡ଼ିଆ କ୍ଲାସ୍ ନେଉଥିବା ଅଧାପକଙ୍କ ବକ୍ତବ୍ୟର ଏଇ କେତୋଟି ଧାଡ଼ି ଆଜି ବି ତାର ଅବିକଳ ମନେ ଅଛି । ପ୍ରତୀକାତ୍ମକ ଓ ପ୍ରୟୋଗାତ୍ମକ ବୈଶିଷ୍ଟ୍ୟ ବୁଝାଇବାକୁ ଯାଇ ସେଦିନ ଧାରାବାହିକ ଭାବରେ ଚାରିଟି ପିରିୟଡ଼ର ସମୟ ନେଇ ଯୁବ ଅଧାପକ ତରୁଣ ନାୟକ ନିଜେ ଜଣେ ଚିନ୍ତାଶୀଳ ସମାଲୋଚକ ଭାବେ ଛାତ୍ରଛାତ୍ରୀମାନଙ୍କ ଗହଣରେ ବେଶ୍ ପରିଚିତ ହୋଇ ଯାଇଥିଲେ ।

ସେ ଦିନର ଓଡ଼ିଆ ଅନର୍ସ ଛାତ୍ରୀ ତାର ସାଙ୍ଗ ଛନ୍ଦା ଯୁବ ଅଧାପକ ତରୁଣ ନାୟକଙ୍କୁ ଭଲ ପାଇବସି ଘରେ ଜିଦ୍ ଧରି ତାଙ୍କୁ ହିଁ ବିବାହ କରିନେଇଥିଲା । ସେକଥା ଆଜି ମନେପଡ଼ିଲେ କେତେ ସମୟ ଯେ ସେ ଲାଜେଇ ଲାଜେଇ ପରମୁହୂର୍ତ୍ତରେ ଛନ୍ଦା ନିକଟରେ ହସିଛି ତାର କଳନା ନାହିଁ ।

ଏଇ କାଲି ପରି ଲାଗୁଛି ତାକୁ । ସେଦିନ ହଷ୍ଟେଲକୁ ଫେରିବାକୁ ବସ୍‌ଷ୍ଟାଣ୍ଡରେ ସେ ଅପେକ୍ଷା କରିଥିଲା । ଅଚାନକ ଛନ୍ଦା ଓ ତାର ସ୍ୱାମୀ ଯିଏକି ତାର ସାର୍ ଥିଲେ, ଦେଖା ହୋଇଗଲେ । ଛନ୍ଦାର ଦୁଇଟି ଯାଆଁଳା ପୁଅ । ବେଶ୍ ଡଉଲ ଡାଉଲ । ସ୍ୱାମୀ ସନ୍ତାନଙ୍କ ଗହଣରେ ଛନ୍ଦା ଗୁହିଣୀଟିଏ ସାଜିଥାଏ । ଗେଲରେ କହୁ କହୁ ସ୍ମୀତା ସେଦିନ କହିଦେଇଥିଲା ନିରୋଳା ସତ୍ୟ କଥାଟିଏ । ହୁଏତ ଛନ୍ଦା ଓ ତା'ର ସ୍ୱାମୀଙ୍କୁ କଥାଟି ବାଧିଥାଇ ପାରେ ।

—ସାର୍ ଯଦି ନିଶାନ୍ତ କବିତାର ଆଙ୍ଗିକ ରୂପକଳ୍ପ କଥା ବୁଝାଇବାକୁ ଯାଇ ତାଙ୍କର ପାଣ୍ଡିତ୍ୟ ଚାରିଗୋଟି ପିରିଅଡ୍‌ର ସମୟ ନେଇ ବୁଝାଇ ନ ଥାନ୍ତେ, ତେବେ ଛନ୍ଦା ତୁ କ'ଣ ସାର୍‌ଙ୍କୁ ପାଇ ପାରିଥାନ୍ତୁ ? ହୁଏତ ସାର୍ ତୋର ହାତଛଡ଼ା ହୋଇଯାଇଥାନ୍ତେ । କ'ଣ କହୁଛୁ ଛନ୍ଦା ? ତୋର ଏଥିଲାଗି ସବୁ କୃତଜ୍ଞତା ନିଶାନ୍ତ କବିତାର କବିଙ୍କୁ ଜଣାଇବାର ଥିଲା ।

ସେଦିନ ସ୍ୱାମୀଙ୍କ ନିକଟରେ ଅତୀତର ସ୍ମୃତିକୁ ବାନ୍ଧବୀ ଅପ୍ରତ୍ୟାଶିତ ଭାବରେ କହି ଦେଇଥିବାରୁ ଛନ୍ଦା ଲାଜରେ ଝାଉଁଳି ଯାଇଥିଲା । ଛାଡ଼ ଇଏ ତ ସବୁ ପୁରୁଣା ସ୍ମୃତି ।

ଗଳ୍ପ ବହିଟିର ସବୁ ପୃଷ୍ଠାଗୁଡ଼ିକ ଥରେ ଦେଖିନେଲା । ବହିର ଶେଷ ଗଳ୍ପଟିର ଶିରୋନାମା ଅପେକ୍ଷା ଗଳ୍ପଟି ପଢ଼ିବାକୁ ସ୍ଥିର କଲା । ସମ୍ଭବତଃ ତାର ଆଜିର ଦେବଦତ୍ତଙ୍କୁ ଅପେକ୍ଷା ଏବଂ ଲେଖକଙ୍କର ଅପେକ୍ଷା ଗଳ୍ପର ଚରିତ୍ରର ଅପେକ୍ଷା ସଙ୍ଗେ ସାମଞ୍ଜସ୍ୟ ଥାଇପାରେ । ଶେଷ ପର୍ଯ୍ୟନ୍ତ ଗଭୀର ମନଯୋଗ ସହ ଗଳ୍ପଟି ଶେଷ କରିନେଲା ।

ଗଳ୍ପଟିର ନାୟିକା ରାଧା, ତାର ପ୍ରେମିକ ଶ୍ୟାମବନ୍ଧୁଙ୍କୁ ଆଗରୁ ଚିଠି ଲେଖି ଗାଁରେ ଅନୁଷ୍ଠିତ ବାର୍ଷିକ ଯାତ୍ରା ଉତ୍ସବକୁ ନିମନ୍ତ୍ରଣ କରିଛି ଏବଂ ସମଗ୍ର ଦର୍ଶକ ଯେତେବେଳେ ଯାତ୍ରାର ଘଟଣା ପ୍ରବାହ ମଧ୍ୟରେ ସମ୍ପୂର୍ଣ୍ଣ ଆକର୍ଷିତ ହୋଇଯିବେ, ତାର ସୁଯୋଗରେ ସେମାନେ ଏକ ନିରୋଳା ଗୁପ୍ତ ସ୍ଥାନରେ ମିଳିତ ହେବେ । ଘଟଣାକ୍ରମରେ ଦୁଇଜଣଙ୍କ ମଧ୍ୟରେ କେବଳ ଚିଠିପତ୍ର ମାଧ୍ୟମରେ ପ୍ରେମ ହୋଇଯାଇଥାଏ । ସାକ୍ଷାତ୍ ଅନେକ ଥର ହୋଇଥିଲେ ମଧ୍ୟ କେବେ କଥା ହେବାର ସୁଯୋଗ ପାଇ ନ ଥିଲେ । ଦୋଳ ଉତ୍ସବରେ ଗାଁରେ ଯାତ୍ରାଦଳ ଆସି ନାଟକ ମଞ୍ଚସ୍ଥ କରନ୍ତି । ସେଇଦିନକୁ ଅପେକ୍ଷା କରି ଦୁହେଁ ଦିନ ଗଣୁଥାଆନ୍ତି । ପ୍ରଣୟର ଜାଲରେ ଦୁହେଁ ଛନ୍ଦାଛନ୍ଦି ହୋଇଯାଇ କେବଳ ମାନସିକ ସ୍ତରରେ ଦୁହେଁ ସନ୍ତୁଳିତ ହେଉଥାନ୍ତି । ନାୟିକା ରାଧାର ଆଶାର ଆକାଶରେ ଚନ୍ଦ୍ରଉଦିଆ ଜୋଛନାର ପରଶ ଯେ ମିଳିବ ତାହା ସେ ବିଶ୍ୱାସ କରୁ ନ ଥାଏ । ଦୋଳ ଉତ୍ସବ ଆସିଛି । ଶ୍ୟାମବନ୍ଧୁ ଆଉ ରାଧା ଆଖିରେ ସଙ୍କେତ ଦେଇ ଯାତ୍ରା ସ୍ଥାନରୁ ଏକ ସମୟରେ ଉଠିଛନ୍ତି ସମସ୍ତଙ୍କ ଅଲକ୍ଷ୍ୟରେ । କିନ୍ତୁ ବନ୍ଧୁମାନଙ୍କ ଗହଣରେ ସେଦିନ୍ ଭୋଜି ଖାଇ ଶ୍ୟାମବନ୍ଧୁ ଅନିଚ୍ଛାରେ ପ୍ରଥମ ଥର ଭାଙ୍ଗ ପିଇ ରାଧା ସହ ଦେଖା ହେବା କଥା ବ୍ୟତୀତ ନିଜର ସମସ୍ତ ଚେତନାଶକ୍ତି ହରାଇ ରାଧାକୁ ନିରୋଳାରେ ପାଇ ବଡ଼ପାଟି କରିଦେବାରୁ ଲୋକ ଚକ୍ଷୁରେ କାଳେ ଧରାପଡ଼ିଯିବାର ଭୟରେ ଗାଁ ଭିତରକୁ ଦୌଡ଼ିଯାଇ ନିଜ ଘରେ କବାଟ କିଳି ରାତି କଟେଇ ଦେଇଛି । ଶ୍ୟାମବନ୍ଧୁ ସହ ଆଉ କେବେ ସାକ୍ଷାତ ହୋଇନି କି ଆଉ ଚିଠି ଦେଇନି ରାଧା ।

ଏହାହିଁ ସଂକ୍ଷେପରେ ପରିତୋଷଙ୍କ ଅପେକ୍ଷା ଗଳ୍ପର କଥାବସ୍ତୁ । ଗଳ୍ପଟି ପଢ଼ିସାରିବା ପରେ ଗଭୀର ଭାବାନ୍ତରରେ ଟେଲିଫୋନ୍ ଡିରେକ୍ଟରୀ କାଢ଼ି ପରିତୋଷଙ୍କ ନମ୍ବର ପାଇଲା ସ୍ମିତା ।

ଟେଲିଫୋନ ନମ୍ବର ଲେଖିନେଇ ତିନି ବାର କଲମରେ ଦୋହରାଇ ନେଲା । ଫୋନ୍ ରିସିଭର ଟେକି ଡାଏଲ ଟୋନ୍ ପାଇଁ ଅପେକ୍ଷା କରିବା ଭିତରେ କ୍ଳାନ୍ତିରେ ଆଖିରେ ଆଖିଏ ନିଦ ଥିଲେ ମଧ୍ୟ ଶୋଇ ନ ପାରି ହାତଟାକୁ ମୁଠାକରି ପାଟି ପାଖକୁ ନେଇ ହାଇଟାଏ ମାରିଲା ସ୍ମିତା ।

ଅଙ୍ଗୁଳିରେ ତରବର ହୋଇ ନମ୍ବରଟିକୁ ବୁଲାଇ ଦେଲା ।

ଫୋନ୍ ରିଂ ହେବାର ଶବ୍ଦ । କ'ଣ ଯେ ପ୍ରଥମେ ଅପ୍ରସ୍ତୁତ ଭାବରେ କଥା ହେବ ନିଜକୁ ପ୍ରସ୍ତୁତ କରିନେବାକୁ ଉଦ୍ୟମ କଲା ।

ଆରପଟୁ ଡେରିରେ ଫୋନ ରିସିଭର ଟେକି ଗମ୍ଭୀର ଭାବରେ ପୁରୁଷର କଣ୍ଠସ୍ୱର ।

—ହ୍ୟାଲୋ, ମୁଁ ପରିତୋଷ ରାୟ କହୁଛି ।

—ନମସ୍କାର, ଆପଣ କବି ଚୌଧୁରୀ ପରିତୋଷ ରାୟ—

—ହଁ, ସରି, ସର୍ଟଫର୍ମରେ ଆଗରୁ ନାଁଟି କହିଦେଲି ।

—ଆପଣ କିଏ କହୁଛନ୍ତି, କାମ କ'ଣ, ଆପଣଙ୍କ ନାଁ ?

—ମୁଁ, ମୁଁ ଆପଣଙ୍କର ଜଣେ ବିଦଗ୍ଧ ପାଠିକାଟିଏ ।

—ମୁଁ ସେକଥା କହୁନି, ତୁମ ନାଁ ଓ ପରିଚୟ ।

—ପରିଚୟ ଜଣେ ପାଠିକା ବୋଲି ଜାଣିଲେ କ'ଣ ଯଥେଷ୍ଟ ନୁହେଁ !

—କି କାମ ମୋ ପାଖରେ ଅଛି । ତୁମର ପରିଚୟ ଜାଣିଲେ ମୁଁ ତୁମ ସହ କଥା ହେବି । ନଚେତ୍... ।

—କ'ଣ ଅଭିମାନରେ ମୋ ଉପରେ ରାଗି ଫୋନ୍ ଥୋଇ ଦେବେନା । ତା'ହେଲେ ମୋ ସହ କଥା ହେବାକୁ ଆପଣଙ୍କୁ ଭଲ ଲାଗୁନି । ମୋ କଣ୍ଠରୁ ମାତେ ଚିହ୍ନିବାକୁ ଚେଷ୍ଟା କରନ୍ତୁ । ନିଶ୍ଚୟ ଚିହ୍ନିପାରିବେ । ଯଦି ଚିହ୍ନି ନ ପାରିବେ ମୁଁ ପରେ ଅବଶ୍ୟ ଚିହ୍ନା ଦେବି । ଏଇ ସର୍ତ୍ତରେ କଥା ହେଲେ ହୁଅନ୍ତୁ, ନହେଲେ ଆପଣ ଫୋନ୍ ଥୋଇ ଦେଇପାରନ୍ତି... ।

ନାରୀ କଣ୍ଠଟି ସହ ଆଗରୁ ପରିଚିତ ଥିଲା ପରି ପରିତୋଷଙ୍କ ମନେ ହେଲା । ଚେଷ୍ଟା କରି ଚିହ୍ନିବାରେ ଅସମର୍ଥ ହୋଇ ଠାସୁକ୍ ମାରି କହିଲେ—ଓଃ, ତମେ ଫୋନ୍ ନମ୍ବର ମୋର ରଖିଛ ମାନେ ଆମର ଆଗରୁ ସାକ୍ଷାତ ହୋଇଛି । ମୋର ଗଳ୍ପ ବହି କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇବା ପରେ ମୋତେ ବଧାଇ ଜଣାଇବାକୁ ଆମ କଲେଜକୁ ଆସିଛ ।

—ତମେ ବୋଲି ତମକୁ ସମ୍ବୋଧନ କରିଥିବାରୁ କିଛି ଭାବୁ ନାହଁ ତ ?

—ନା ।

—ତମେ ଆମ କଲେଜକୁ ଆସିଛ ଏବଂ କ୍ୟାଣ୍ଟିନ୍‌ରେ ଆମେ ଅନେକ ଗପିଛେ । ପ୍ରକୃତରେ ତୁମ ନାଁ ଏବେ ମନେ ନ ପଡ଼ିବାରୁ ମୁଁ ଦୁଃଖିତ ।

—ଆଉ ଟିକିଏ ମନେପକାନ୍ତୁ । ଆପଣରୁ ସମ୍ପର୍କ ତୁମେକୁ ଖସିଯିବା ପରେ ଅତୀତର ପରିଚିତ ମୁହୂର୍ତ୍ତ ମନେପଡ଼ିଯିବ । ନାଁଟି ମନେ ନ ପଡ଼ିବାର ଦୁର୍ବଳତା ନାରୀଟିଏ ପାଖରେ କାଳେ ଧରାପଡ଼ିଯିବ, ପରିତୋଷ ଅଡୁଆ ପ୍ରଶ୍ନଟିଏ କରିଦେଲେ ।

—ଏତେ ରାତିରେ କ'ଣ ଶୋଇନାହଁ, ତୁମେ ।

—ଆପଣଙ୍କ ଗଳ୍ପ ବହିଟି ପଢୁଛି । ଶେଷ ଗଳ୍ପଟି ପ୍ରଥମେ ପଢ଼ିଲି ।

—'ଅପେକ୍ଷା' ଗଳ୍ପ ।

—ହଁ ।

—ରୋମାଣ୍ଟିକ୍ ଗଳ୍ପଟିଏ ।

—କେନ୍ଦ୍ର ସାହିତ୍ୟ ଏକାଡ଼େମୀର ପୁରସ୍କୃତ ବହିର ବିଶିଷ୍ଟ କଥାକାର ଯେ—

—ନା, ନା ମୁଁ ଏତେ ବଡ଼ ବିରାଟ କଥାକାର ମୋଟେ ନୁହେଁ, କେବଳ ଅଧୁନା ସମାଜର ନିଛକ ସାମାଜିକ ପରିବେଷ୍ଟନୀରୁ ଚରିତ୍ରଗୁଡ଼ିକ ସାଉଁଟି ଆଣି କଥାର ମାଳାରେ ଗୁନ୍ଥି ଦେଇଛି ମାତ୍ର... ।

କଥାର ମୋଡ଼ ବଦଳାଇ ସ୍ମୀତା କହିଲା—ଅସମୟରେ ଆପଣଙ୍କୁ ଡିଷ୍ଟର୍ବ କରି ଫୋନ୍ କରିଥିବାରୁ ମୋ ଉପରେ ରାଗୁଥିବେ ।

—ମୋଟେ ରାଗିନି । ମୁଁ ଘରେ ଏକଲା ଅଛି । ପୁଅ ଓ ପତ୍ନୀ ଜରୁରୀ କାମରେ ଗାଁକୁ ଯାଇଛନ୍ତି । ଏଇ ସୁଯୋଗରେ କଲେଜରୁ ଛୁଟି ନେଇ ସାହିତ୍ୟ ସାଧନା କରିନେବାକୁ ସମୁଚିତ ସମୟ ଭାବି ଷ୍ଟଡ଼ିରୁମ୍‌ରେ ଲେଖାଲେଖି କରୁଥିଲି । ବେଡ୍‌ରୁମ୍‌ରୁ ତୁମ ରିଂ ପାଇ... ।

—ପ୍ରକୃତରେ ମୁଁ–ମୁଁ ଭାରି ଦୁଃଖିତ ।

—ନା, ନା, କହି ପରିତୋଷ ହସି ଉଠିଲେ । ଅପରପଟୁ ସ୍ମୀତାର ମୃଦୁହସର ଲହରୀରେ ସେ ଆହୁରି ବିମୋହିତ ହୋଇଉଠିଲେ ।

—ପ୍ଲିଜ୍, ତୁମ କଣ୍ଠରୁ ତୁମେ ମୋର ଘନିଷ୍ଠ ଜଣାଶୁଣା ବାନ୍ଧବୀ ଭଳି ଜଣାପଡୁଛ । ଆମର ସମ୍ପର୍କ ପ୍ରାୟ ଦୀର୍ଘ ଦିନର ।

—ମନେହେଉଛି ଆପଣଙ୍କ ଅନୁଶୀଳନ ଶକ୍ତି ଖୁବ୍ ତୀକ୍ଷ୍ଣ ଓ ଗଭୀର ।

—ମୋ କଣ୍ଠସ୍ୱର ଓ କଥା ଆପଣଙ୍କୁ ଏତେ ଭଲ ଲାଗୁଛି, କହିଲେ ଦେଖି ମୁଁ କେମିତି ଦେଖିବାକୁ ହୋଇଥିବି ।

—କରୁଣାମୟ ତୁମକୁ ନିଶ୍ଚୟ ଅପ୍‌ସରା ପରି ଚେହେରା ଦେଇଥିବେ । ଗହମ ଗୋରା ରଙ୍ଗକୁ ଗୋଟାଏ ଚାଉଳରେ ଗଢ଼ା ଦେହ ତୁମର ବେଶ୍ ରୂପ ଲାବଣ୍ୟ ଭରା ହୋଇଥିବ ।

—ତେବେ ମୋର ଉଚ୍ଚତା କେତେ ହୋଇଥିବ ?

—ଏମିତି ପାଞ୍ଚ ଫୁଟ୍ ଦୁଇ ଇଞ୍ଚ ଭିତରେ ।

—ଆପଣଙ୍କ କଳ୍ପନାର ଲଗାମ ବେଶ୍ ଉନ୍ମୁକ୍ତ, ବାକି ରହିଗଲା ମୋର ବୟସ ।

—ବୟସ ଭାବୁଛି କୋଡ଼ିଏ, ଏକୋଇଶ ଭିତରେ ।

—ସତ କହୁଛି, କବି ଆପଣଙ୍କ କଳ୍ପନା ନିର୍ଭୁଲ । ଶୁଣିଛି କବିମାନେ ଅନେକ ନାରୀ ଚରିତ୍ରର ସଂଘର୍ଷରେ ଆସିଥାନ୍ତି । ଏହା କ'ଣ ଆବଶ୍ୟକ ? ଯଦିବା ଉଚିତ୍ ତେବେ କାହିଁକି ?

—ଏଥିରେ ଉଚିତ୍ ଅନୁଚିତ୍‌ର ପ୍ରଶ୍ନ ଉଠୁନାହିଁ । କବି ଆତ୍ମସଂଯମ ଭିତରେ ନିଜେ ସ୍ୱାଧୀନ । ତେଣୁ ଆମକୁ ସାଧାରଣ ଲୋକଠାରୁ ନିଆରା ଭାବରେ ଦେଖିବା ଉଚିତ । କେବଳ ନାରୀ କାହିଁକି ସୃଷ୍ଟିର ସମସ୍ତ ସତ୍ତା ସହିତ କବି ସମ୍ପର୍କ ରଖେ । ଧରିନିଅ ତୁମ ସହ ଘଣ୍ଟା ଘଣ୍ଟା ଧରି କଥା ହେଉଛି, ସମ୍ପର୍କ ରଖିଛି, ଏପରି ନୁହେଁ ଯେ ମୋର ଚରିତ୍ରଗତ କିଛି ଦୋଷ ଦୁର୍ବଳତା ରହିଛି ଏବଂ ଏହାର ସୁଯୋଗରେ ତୁମ ପ୍ରତି ଅନିଚ୍ଛାରେ ଅସଦାଚରଣ କରିବି ।

କଥାର ଖିଅକୁ ବେଶୀ ନ ଲମ୍ବାଇ ସ୍ମୀତା ରିସିଭର ହଠାତ୍ ବନ୍ଦ କରିଦେବାକୁ ପ୍ରସ୍ତୁତ ହେବା ଅବସରରେ ଓଠରେ କୃତ୍ରିମ ହସ ଚେନାଏ ଚହଲାଇ କହିଦେଲା—"କବି ଆପଣ ନିହାତି ଖିଆଲି ଚଗଲା ଆଉ ଦୁଷ୍ଟ... ନୁହେଁ ।"

ସପନପରୀ ପରି କଣ୍ଠସ୍ୱର କ୍ଷଣକେ ନାଟକର ଯବନୀକା ପଡ଼ିଗଲା ପରି ବୋଧ ହେଲା । ନମ୍ବର ଠିକଣା ପରିଚୟ ନ ପାଇବାର ଗ୍ଲାନିରେ ତାଙ୍କୁ ହତାଶ ଲାଗିଲା ।

ଫୋନର ରିଂ ଟୋନ୍‌କୁ ଅପେକ୍ଷାମାଣ ଚାତକ ପକ୍ଷୀ ପ୍ରାୟ ଅନାଇ ଅନାଇ ବିରକ୍ତିରେ ଉଠି ବିଳମ୍ବରେ ନିତ୍ୟକର୍ମ ସାରିନେବାକୁ ଯିବାବେଳେ ଫୋନ୍ ରିଂ ଆସିଲା ।

—କବି ପରିତୋଷ ।

—ହଁ ।

—ମୋ ଉପରେ ରାଗିଥିବେ ବୋଧହୁଏ ।

—'ଅବଶ୍ୟ ଫୋନ୍ ନମ୍ବର ପରିଚୟ ଠିକଣା ନ ଦେଇ ରହିଯିବା ମୋର ଠିକ୍ ହୋଇନାହିଁ । ଆପଣଙ୍କ ମହନୀୟ ଗୁଣରେ ମୋତେ କ୍ଷମା କରିଦିଅନ୍ତୁ ।' ସ୍ମୀତାର ସଲ୍ଲଜ ବିନମ୍ରଭରା କଥାରେ ପରିତୋଷଙ୍କ ଅଭିମାନର ଛାଇ ଅପସରି ଗଲା । ସ୍ମୀତାର ଅନେକ ବ୍ୟକ୍ତିଗତ ପ୍ରଶ୍ନ—ନିତ୍ୟକର୍ମ ସାରିଲେଣି କି ନାହିଁ । ଲଞ୍ଚ କ'ଣ କଲେ । ଆଜିର ଅନ୍ୟାନ୍ୟ କାର୍ଯ୍ୟକ୍ରମ ବାବଦରେ ଉତ୍ତର ନ ଦେଇ ରହି ହେଲାନି ।

ସମ୍ପର୍କର ସେତୁ କ୍ରମଶଃ ନିବିଡ଼ ହେଉଥାଏ ।

ଫୋନ ନମ୍ବର ଓ ନାମ ସଂଯୁକ୍ତା ଦାସ ଏହା ଡାଏରୀ ନୋଟସ୍‌ରେ ଟିପି ରଖିବାପରେ ପରିତୋଷଙ୍କ ବିଶ୍ୱାସ ଆସିଛି । କଥାରେ ହଁ, ନା ବ୍ୟତୀତ କିଛି କଥା ଏଥର ହେବାକୁ ସ୍ଥିର କଲେ ପରିତୋଷ । କ'ଣ ଅବା କଥା ପ୍ରସଙ୍ଗକୁ ଆସିବ ଯେମିତି କିଛି ବୋର୍ ଲାଗିବନି ଭାବି ନିଜ ଆଡୁ ଆଗୁଆ ପ୍ରଶ୍ନ କରିଦେଲେ—

—ସଂଯୁକ୍ତା ! ତମେ ତ ଅନେକ ବହି ପଢୁଛ । ପ୍ରକୃତି ସମ୍ପର୍କରେ ତୁମର ଧାରଣା କ'ଣ ? କେବେ ପ୍ରକୃତିକୁ ମନଭରି ଉପଲବ୍ଧି କରିଛ !

—ପ୍ରକୃତି ଆଉ କବି ! ଆମେ ତ ଜଣେ ସାମାନ୍ୟ ପାଠକ ମାତ୍ର ।

କ'ଣ କହି ଉତ୍ତର ଦେବି ମୁଁ ଭାବିପାରୁନି । କିନ୍ତୁ ଗତ ରାତିରେ ଆରମ୍ଭ କରିଥିବା ଗଳ୍ପଟିର କିୟଦାଂଶ ପଢ଼ି ବୁଝାଇବାକୁ ଚେଷ୍ଟା କରୁଥିଲେ ପରିତୋଷ ।

ପବନ ସାମ୍ନାରେ ଖଣ୍ଡିଆଭୂତ ପ୍ରାୟ ଉଡୁଁରୀ ଖେଳି ବୁଲୁଥାଏ । କପୋତଟିଏ ଘଞ୍ଚ ଜଙ୍ଗଲର କେଉଁ ଏକ ଅଜଣା ଡାଳରେ ଗୁମୁରୁଥାଏ । ଟାଆଁସିଆ ସୂର୍ଯ୍ୟକିରଣରେ ମୁଁ ସେମିତି ମସୃଣ ଉଷୁମ ପଥରଟି ଉପରେ ବସି ହେମନ୍ତର ମହଳ ବୋଳା ଦିନାନ୍ତର ସମୟକୁ ଅପେକ୍ଷା କରି ବସିଥାଏ । ଖୋଲା ଆକାଶ ତଳେ ଦିଗନ୍ତ ବିସ୍ତାରୀ ଘଞ୍ଚ

ବୁଦୁବୁଦୁକିଆ ଜଙ୍ଗଲ । ପ୍ରକୃତିକୁ ଭଲ ପାଇବାର ଖୋଜରେ ମୁଁ ଅତିକ୍ରାନ୍ତ ବ୍ୟସ୍ତ କୋଳାହଳମୟ ଦୁନିଆକୁ ଭୁଲିଯାଇଥାଏ ।

—ହୁଁ ସନ୍ୟାସୀଟିଏ ପରି । ଆପଣ ନିଜେ ବୋଧେ ଗଳ୍ପଟିର ମୁଖ୍ୟ ଚରିତ୍ର ! ମଝିରେ ରିଦମ୍ ଭାଙ୍ଗି କହିଦେଲା ସ୍ମୀତା ।

—ପ୍ରକୃତରେ ପ୍ରକୃତି ପାଖରେ କବିର ମନଟା ଆନମନା ହୋଇଉଠେ । ନିଥର ନିସ୍ତବ୍ଧତା ଭିତରେ ଜଙ୍ଗଲ ଆଉ ପରିବେଶର ସ୍ୱର ସେ ଉପଲବ୍ଧି କରିଥିଲେ ତାହାହିଁ ପ୍ରକୃତିର ସତ୍ତା, ପରିବେଶର ନିଜସ୍ୱ ସ୍ୱର । ମୋ ଦୃଷ୍ଟିରେ ପ୍ରକୃତିର ଶୋଭା ସନ୍ଦର୍ଶନ ପାଖରେ ପାର୍ଥିବ ପୃଥିବୀର ସମସ୍ତ କିଛି ଅତି ତୁଚ୍ଛ । ପ୍ରଭାବବାଦୀ ଭାବୁକ ପ୍ରକୃତିର ଉପାସକ । ତାର ସୌନ୍ଦର୍ଯ୍ୟ ପିପାସା ଅପରିସୀମ । ପ୍ରକୃତିର ଚିତ୍ର ତାର ଧର୍ମ । ଯଦି ତୁମକୁ ସୁବିଧା ଥାଏ ପରୀକ୍ଷା କରିନେବାକୁ; ମୋର ଅନୁରୋଧ । ଏକୁଟିଆ ଗହଳିଆ ଜଙ୍ଗଲ କିମ୍ୱା ଏକ ନିକାଞ୍ଚନ ପରିବେଶ, ଆହୁରି ବେଶୀ ଭଲ ବେଳାଭୂମିରେ ଶାନ୍ତ ଭାବରେ ବସି ଖୁବ୍ ନିର୍ନିମେଷ ନୟନରେ ସମୁଦ୍ରର ନୀଳ ଜଳରାଶିକୁ ଆକାଶର ନୀଳିମା ସଙ୍ଗେ ମିଶାଇ ଦିଆଯାଏ, ତେବେ ଭାବମୟ ପ୍ରଶାନ୍ତିର ଉଦ୍ରେକ ଆପେ ଆପେ ଆସିଯିବ । ମଣିଷକୁ ପ୍ରକୃତିର ସତ୍ତାରେ ନିଜକୁ ହଜାଇ ଦେବାରେ ଅଧୁନା ସମୟର ଅଭାବ ଅଛି । କିଛି ମନେ ଯଦି ନ କର, ତମେ ରାଜି ହେଲେ ଆମେ ଆଜି ମାରାଇନ୍ ଡ୍ରାଇଭ୍ ଆଡ଼େ ବୁଲିଯାଆନ୍ତେ । ତମେ ସମୁଦ୍ରର ନୀଳ ଜଳରାଶିକୁ ଚାହନ୍ତ, ହୁଏତ କିଛି ଅନୁଭବ କରନ୍ତ ।

—ଆପଣଙ୍କ ସହ ଆଉଟିଂରେ ବାହାରିଗଲେ ଆମକୁ କିଏ ସନ୍ଦେହ କରିପାରେ । ସନ୍ଦେହର କୁହେଳି ଭିତରକୁ ଟାଣି ହୋଇଯିବାକୁ ମୁଁ ପସନ୍ଦ କରୁନି ।

—ସମାଜର ଜଣେ ପ୍ରତିଷ୍ଠିତ କବିଟିଏ ତୁମଭଳି ବାନ୍ଧବୀକୁ ନେଇ କିଛି ମୁହୂର୍ତ୍ତ କଟାଇଦେଲେ ଯେ ମୁଁ ତୁମ ପ୍ରତି କିଛି ଅସଦାଚରଣର ସୁଯୋଗ ନେବି, ତାହା ଏତେ ସଂକୀର୍ଣ୍ଣ ଭାବରେ ଭାବିବା ଉଚିତ ନୁହେଁ ସଂଯୁକ୍ତା ।

—ନ ଯିବି ବୋଲି ଶୁଣି ପୁଣି ଅଭିମାନ କଲେ ନା ଆପଣ । ଠିକ୍ ତିନିଟା ବେଳେ ମୁଁ ନେହେରୁ ପାର୍କର ମେନ୍‌ଗେଟ୍‌ରେ ପହଞ୍ଚିବି ।

—ମୁଁ କାର୍ ନେଇ ପହଞ୍ଚିବି ନିର୍ଦ୍ଧାରିତ ସମୟ ପୂର୍ବରୁ ।

—ସଂଯୁକ୍ତା ତମକୁ ଚିହ୍ନିବା ପରି ଚିହ୍ନ ତ ପୁଣି ଦରକାର ।

—ଆଗରୁ ତ ମୋର ରୂପ ବର୍ଣ୍ଣନା ସମ୍ପର୍କରେ କଥା ହୋଇସାରିଛେ ।

—ଆରେ ନା-ନା, ଏମିତି ତମେ କେଉଁ ରଙ୍ଗର ଶାଢ଼ୀ ଆଉ ବ୍ଲାଉଜ ପିନ୍ଧି ଆସିବ, ସ୍ନେକ୍ ତମେ ଦିଅ କି ନାହିଁ । ଲିପଷ୍ଟିକ୍ ତମେ ନିଶ୍ଚୟ ଲଗାଉଥିବ । ତୁମକୁ ଯଦି ଚିହ୍ନି ନ ପାରି ଫେରିଆସିବି, କହିଲ ଦେଖି ମୋତେ କେମିତି ଲାଗିବ ।

—ଏଥିପାଇଁ ଏତେ ବ୍ୟସ୍ତ । ସତରେ କବି ଆପଣଙ୍କ ଦୃଷ୍ଟିକୋଣକୁ ତାରିଫ୍ କରିବା କଥା । ମୋର ପରିଧାନ, ସେକ୍, ଚପଲ, ଲିପ୍‌ଷ୍ଟିକ୍ ଇତ୍ୟାଦି ପର୍ଯ୍ୟନ୍ତ ଟିକିନିଖି ବିବରଣୀ ଆପଣଙ୍କୁ ଦରକାର । ଆପଣ ଆଗେ କୁହନ୍ତୁ, କେଉଁ ରଙ୍ଗ ଆପଣଙ୍କୁ ବେଶୀ ଭଲ ଲାଗେ, ମୁଁ ପିନ୍ଧି ଯିବି ।

—ପ୍ରକୃତିକୁ ଉପଲବ୍ଧି କରିବାକୁ ଯିବାକୁ ସ୍ଥିର କରିଥିବାରୁ ତମେ ଆକାଶୀ ରଙ୍ଗ ପିନ୍ଧି ଆସ । ଖୁବ୍ ମାନିବ ।

—ମୁଁ ଭାବୁଛି, ଜଣେ ପ୍ରତିଷ୍ଠିତ ଲେଖକ ସଙ୍ଗେ ଆଉଟିଂରେ ଗଲେ ନିଜେ ସୁନ୍ଦର ଦେଖାଯିବା ଉଚିତ । ମୁଁ ନାଲିରଙ୍ଗର ସମସ୍ତ ପିନ୍ଧିଯିବି ।

—ତେବେ ତମେ ନାଲି ଗୁରୁଗୁରୁ ସାଧବ ବୋହୂଟିଏ ପରି ଦିଶିବ ।

—ସମୟ ଠିକ୍ ୩ଟା କହି ଫୋନ୍ ଥୋଇଦେଲା ସ୍ମୀତା ।

ସ୍ମୀତାର ଆନ୍ତରିକ ଆଳାପର ଉଷ୍ମତାରେ କ୍ଷଣେ ଆନନ୍ଦରେ ପରିତୋଷ ଉଲ୍ଲସିତ ହୋଇଗଲେ । ରାତି ଅନିଦ୍ରା ହେତୁ ଆଗ ଦର୍ପଣରେ ତାଙ୍କ ଆଲୁବାଲୁ ଚେହେରାକୁ ଥରେ ପରୀକ୍ଷା କରିନେଲେ । ସେଭିଙ୍ଗ ପରେ ତରବରରେ ଡେରି ହେଲେ ମଧ୍ୟ ନିତ୍ୟକର୍ମ ସାରି ପ୍ରସ୍ତୁତ ହେବା ସମୟରେ ସଂଯୁକ୍ତାକୁ ମନେ ପକାଇ ଦେବାକୁ ସଂଯୁକ୍ତା ଆଗରୁ ଦେଇଥିବା ଫୋନ୍ ନମ୍ବରକୁ ଡାଏଲ କରିଦେଲେ ।

ଟେଲିଫୋନ ବାଜିଲା । ଟାଉନ ହସପିଟାଲ କାଜୁଆଲିଟିରୁ ଜଣେ ଷ୍ଟାଫ୍ ନର୍ସ 'ହସପିଟାଲ ପ୍ଲିଜ୍' ବୋଲି କହିଲା । କାଳେ ଭୁଲରେ ଫୋନ୍ କନେକ୍‌ସନ୍ ହସପିଟାଲକୁ ଲାଗିଯାଇଥାଇ ପାରେ ଭାବି ପୁଣି ନମ୍ବରଟିକୁ ବୁଲାଇ ଦେବାରୁ ପୁନରାୟ ପୂର୍ବୋକ୍ତ ଉତ୍ତର । ସେତେବେଳକୁ ପରିତୋଷଙ୍କ ପ୍ରବଳ ଇଚ୍ଛାର ଉଦ୍ଦାମତା ପାଖରେ ଏଭଳି ନେଗେଟିଭ ରେସ୍‌ପନସ୍ ହେତୁ ତାଙ୍କୁ ହତାଶ ଲାଗିଲା । ସଂଯୁକ୍ତାର ନମ୍ର, ଶାନ୍ତ, ସୁଧୀର କଣ୍ଠସ୍ୱର ତେବେ କ'ଣ ପ୍ରବଞ୍ଚନା ଛଡ଼ା ଆଉ କିଛି ନୁହେଁ ? ମୋର ମୂଲ୍ୟବାନ ସମୟକୁ ନଷ୍ଟ କରି ସଂଯୁକ୍ତାକୁ କ'ଣ ମିଳିବ ? ଅନିଚ୍ଛାରେ ପରିତୋଷଙ୍କ ଓଠତଳ, ଦୁଇହାତ ମୁଠାରେ ସମ୍ପୂର୍ଣ୍ଣ ଭାର ନେଇଗଲା । ଅଧାରାତିରେ ଅଧା ହୋଇଥିବା ଗଳ୍ପଟିକୁ ସାରି ନେବାକୁ ଚେଷ୍ଟା କରି ଅସଫଳ ହୋଇ ଆବୁରୁ ଜାବୁରୁ ଲେଖା କଟାକଟି କରି ବିଛଣାରେ ସେମିତି ବସି ସଂଯୁକ୍ତାର କଥା ଭାବି ଭାବି କେତେବେଳେ ମଲା ମଣିଷ ପ୍ରାୟ ଶୋଇ ପଡ଼ିଥିଲେ ତାଙ୍କୁ ଜଣା ନ ଥିଲା । କ୍ରିଂ କ୍ରିଂ ହୋଇ ଫୋନ୍ ବାଜି ଉଠିଲା, ମୁଣ୍ଡ ଟେକି ଚାହିଁଲେ ପରିତୋଷ । ରିସିଭର ଟେକି ବିରକ୍ତିରେ ଆଗୁଆ ଉତ୍ତର ଦେଲେ ।

—ହଁ, ମୁଁ କହୁଛି ।

—କବି ପରିତୋଷ ।

—ହଁ ।

—ସମୟ ଯେ ଦିନ ୨ଟା, ମୁଁ ପ୍ରସ୍ତୁତ କିନ୍ତୁ ଆପଣ ?

—କିଛି ଉତ୍ତର କଲେନି ପରିତୋଷ ।

—ମୋ ଉପରେ ରାଗୁଛନ୍ତି, ଅଭିମାନରେ ମୋ ସହ କଥା ହେବେନି ।

—ନା, ସେମିତି ନୁହେଁ; କିନ୍ତୁ ତମେ ଯେ ମିଛ କହୁଛ, ମୋତେ ଠକୁଛ, ଠିକ୍ ନମ୍ବର ତମେ ଦେଇନାହଁ ।

—ସରି, ମା ଦେହ ଭଲ ରହୁନାହିଁ । କାଜୁଆଲିଟି ନମ୍ବରକୁ ଅଧିକାଂଶ ସମୟରେ ଫୋନ୍ କରେ । ଭୁଲରେ ସେଇ ନମ୍ବରଟି ଆପଣଙ୍କୁ ଦେଇଥିବାରୁ ମୁଁ ଦୁଃଖିତ । ସୌଜନ୍ୟ ରକ୍ଷା କରିବାକୁ ଯାଇ ପରିତୋଷ ପଚାରିଲେ ।

—ତୁମ ମା'ଙ୍କ ଦେହ କ'ଣ ହୋଇଛି ?

—ଓଲଡ୍ ଏଜ୍ । ଫୋନ୍‌ରେ ମୋ ସମ୍ପର୍କରେ ସବୁ କହିଦେଲେ ସାକ୍ଷାତରେ କ'ଣ ଅବା କଥା ହେବା । ଏବେ ରହୁଛି—କହି ଥୋଇଦେଲା ରିସିଭର ସ୍ମୀତା ।

ସୁନ୍ଦର ଭାବରେ ସଚେତନ ଦୃଷ୍ଟିରେ ନିଜର ଚେହେରାକୁ ପରଖି ନେଇ କାର ଷ୍ଟାର୍ଟ କଲେ ପରିତୋଷ । ଖୋଜିଲା ଖୋଜିଲା ଆଖିରେ ଅନେକ ତରୁଣୀଙ୍କୁ ନେହେରୁ ପାର୍କ ମେନ୍‌ଗେଟ୍‌ରେ ନିକଟବର୍ତ୍ତୀ ହୋଇ ସାହସ କରି ସଂଯୁକ୍ତା ବୋଲି କାହାରିକୁ ପଚାରି ପାରିନାହାନ୍ତି ପରିତୋଷ ।

ଅପେକ୍ଷାର ବିରକ୍ତିର ଜାଲରେ ସନ୍ଧ୍ୟା ପର୍ଯ୍ୟନ୍ତ ଆଉଟୁ ପାଉଟୁ ହୋଇ ସେ ଫେରିଆସିଲେ ନିରାଶ ହୋଇ । କଳ୍ପନାର ସମସ୍ତ ଆଶା ଓ ଇଚ୍ଛା ଯେପରି ତାଙ୍କର ହଜିଯାଇ ଥାଆନ୍ତି ଅକାଳ ଅଥଳ ପାଣିର ଭଉଁରୀରେ ।

ସେତେବେଳେ ସ୍ମୀତା କବି ପରିତୋଷଙ୍କ ଗପ ବହିର ଗଳ୍ପଗୁଡ଼ିକ ସାରିଦେଇ କବି ପରିତୋଷଙ୍କୁ ଏକ ରୂପବତୀ ସୁନ୍ଦରୀ ଯୁବତୀ ସହ ପ୍ରେମାଳାପ ପରେ ସାକ୍ଷାତ୍ ପାଇଁ ଯେ ଘଣ୍ଟା ଘଣ୍ଟା ଅପେକ୍ଷା କରେଇ ଦେଇ ପାରିଛି ଭାବି ଖୁବ୍ ମତୁଆଲା ଭାବରେ ହସି ହସି ବେଦମ୍ ହୋଇପଡୁଥାଏ । ସେ ହସର ଲହରୀ ସାରା କ୍ୱାଟର୍ସକୁ ପ୍ରକମ୍ପିତ କରିଦେଉଥାଏ ।

ଟୁର୍‌ରୁ ଫେରି ଦେବଦତ୍ତ ଘରଟିର ମୁଖ୍ୟ ଦରଜାରେ ସ୍ମୀତାର ଏପରି ହସ ଶୁଣିପାରି କଲିଂବେଲ୍‌ଟିକୁ ସେଇମିତି ଚିପି ଧରିଥାନ୍ତି ସ୍ମୀତାର କବାଟ ଖୋଲିବା ପର୍ଯ୍ୟନ୍ତ ।

ଏକା ଏକା ଏଭଳି ମନ ଖୋଲା ଅଜବ ହସ ହସିବାର କାରଣ ବୁଝାଇବାକୁ ଯାଇ ସ୍ମୀତା କେନ୍ଦ୍ର ସାହିତ୍ୟ ଏକାଡ଼େମୀର ପୁରସ୍କୃତ ଗଳ୍ପ ସଂକଳନ ବହିର 'ଅପେକ୍ଷା' ଗଳ୍ପଟି ବାହାର କରି ଫୋନ୍ ଲଗାଇଲା କବି ଚୌଧୁରୀ ପରିତୋଷ ରାଉତରାୟଙ୍କୁ ।

ହ୍ୟାଲୋ ।

ମୁଁ ସଂଯୁକ୍ତା ଦାସ ନୁହେଁ । ଦେବଦତ୍ତ ପ୍ରଧାନଙ୍କ ସ୍ତ୍ରୀ ସ୍ମୀତା କହୁଛି ।

ମୋତେ ଗାଳି ଗୁଲଜ କରି ସାମ୍ନାରେ ଯଦି ପାଇ ଯାଆନ୍ତେ ତେବେ ରାଗରେ ମୋ ତଣ୍ଟି ଚିପି ଦିଅନ୍ତେ । ମୁଁ ମିଛ କହି ସଂଯୁକ୍ତାର ଅଭିନୟ କରିଛି କେବଳ ଆପଣଙ୍କ ଅପେକ୍ଷା ଗଳ୍ପଟି ପଢ଼ିସାରିବା ପରେ । ମୋ ସ୍ୱାମୀ ଟୁର୍‌ରେ ଯିବା ପରଠୁ ମୋର ତାଙ୍କୁ ଅପେକ୍ଷା କରିବାର ଆବେଗକୁ ଆପଣଙ୍କର 'ଅପେକ୍ଷା' ଗଳ୍ପର ପ୍ଲଟ୍ ପଢ଼ି ପାଠକ ଭାବରେ ମୋତେ ଖାପ୍ ଛଡ଼ା ଲାଗିଲା—ପରତେ ଗଲାନି ଏହା ଆପଣଙ୍କର ଲେଖା ବୋଲି ।

ଅପେକ୍ଷା କ'ଣ ଆପଣ ବେଶ୍ ଉପଲବ୍ଧି କରିସାରିଥିବେ ଏୟା ମଧ୍ୟରେ ଅନୁଭବୀର ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ ଗପଟିଏ ଲେଖନ୍ତୁ, ଦେଖିବେ ପାଠକଙ୍କୁ ଆପଣଙ୍କ ପାଖକୁ ବଳେ ଟାଣିନେବ, ଯେଉଁସବୁ ଗଳ୍ପ ପଢ଼ିଲେ ଆଖିକୁ ନିଦ ଆସିଲେ ବି ନିଦ ମାଡ଼ିବନି ।

ଏମିତି ଅନୁଭବକୁ ନେଇ ଲେଖିଲେ ଲେଖାସବୁ ଚକ୍‌ମକ୍ କରି ଫୁଟି ଉଠିବ । ଲୋକଙ୍କ ହୃଦୟକୁ ସ୍ପର୍ଶ କରିବ ।

କିନ୍ତୁ ଏକାଡେମୀର ପୁରସ୍କାରରେ ନୁହେଁ !

O

# ଅନ୍ଧକାରର ଆଖି

ଶୁଭେନ୍ଦୁ ମୂଳରୁ ନିଆରା । ଜୀବନର ଘଟଣ ଅଘଟଣକୁ ତର୍ଜମା କରିବସିଲେ କିଛି ପାଇବା ବା ହଜେଇବାର ସ୍ମୃତିକୁ ମଣିଷ ମନେପକାଏ । ହେଲେ ସେସବୁ ସ୍ମୃତିକୁ ଧରିହୁଏନା, ଯେମିତି ହାତମୁଠାରେ ପାରଦ । ମଣିଷ ନିଜକୁ ରଙ୍ଗେଇ ସଜେଇ ଯେତେ ମାଠି ହେଲେ ବି ନିଜର ଅହଂକାରରେ ଯେତେ ବଡ଼ ବୋଲି କହିଦେଲେ ବି ସେଇ ନିଆଁ, ଥରେ ଏକୁଡ଼ିରେ ଥରେ ଜୁଇରେ ଜଳିଲା ବେଳେ ସବୁ ଏକାଠି ହୋଇଯାଏ । ସେଇଠି ଏକାକାର ହୋଇଯାଏ ମଣିଷର ମୋହାବିଷ୍ଟ ଦୁନିଆ । ଚକ ଗଡ଼ିଯିବା ପରି ସମୟ ଅପେକ୍ଷା କରେନି କାହାରିକୁ । ଏଇ ସମୟର ଚକକୁ ନିଜ କରାୟତ୍ତରେ କେହି ରଖିନି ଶୁଭେନ୍ଦୁ କେମିତି ରଖିପାରନ୍ତେ !

କାଲି ପରି ଏଇ ଘରେ ତାଙ୍କର ଏକୁଡ଼ି ଜଳିଥିଲା, କଟିଥିଲା ଶୈଶବ, କୈଶୋର ଆଉ ଯୌବନ । ତାଙ୍କୁ ସଇଁତିରିଶ ବର୍ଷ ବୟସର ଯୁବକ କହିଲେ ଭୁଲ ହେବ; ସମାଜ ଆଖିରେ ଆଜି ସେ ସମ୍ପୂର୍ଣ୍ଣ ପରିପୂର୍ଣ୍ଣ ମଣିଷ । ବେଶ୍ ଗମ୍ଭୀର ସ୍ୱଭାବ । ଅନ୍ୟମାନଙ୍କ ସହ ତୁଳନା କଲେ, ସେ ଯେ ସ୍ୱତନ୍ତ୍ର ଆଉ ଅନନ୍ୟ, ତାହା ତାଙ୍କ ସହ ଯିଏ ଥରଟେ ବି କଥା ହୋଇଛି, ଜାଣିବାରେ ଅସୁବିଧା ହୁଏନା ।

ଏଇ ସ୍ୱଭାବ ପାଇଁ ଶୁଭେନ୍ଦୁ ନିଜ ଭିତରେ ନିଜକୁ ଗଢ଼ି ଚାଲୁଥିଲେ ଅହରହ, ନିଜସ୍ୱ ଶୈଳୀରେ । ଛାତ୍ରଜୀବନରେ ପରୀକ୍ଷା ପାଇଁ ସେ କେବେ ପ୍ରସ୍ତୁତ ହେଉ ନ ଥିଲେ । କ୍ଲାସ୍‌ରେ ଯେତିକି ଶୁଣିଥିବେ, ସେତିକି । ପରୀକ୍ଷା ଥିବ ମାସେ କି ଦି ମାସ, କୁଆଡ଼େ ଯେ ସେ ଅନ୍ତର୍ଦ୍ଧାନ ହୋଇଯିବେ କେହି ଜାଣିପାରିବେନି । ପରୀକ୍ଷା ଥିବ ଦିନେ କି ଦି' ଦିନ ଅଚାନକ ପହଁଚି ଯିବେ । ସେ ଦର୍ଶନଶାସ୍ତ୍ରର ଛାତ୍ର ତ ଭାରତଦର୍ଶନରେ କେତେବେଳେ ଦକ୍ଷିଣ ତ କେତେବେଳେ ଉତ୍ତର-ପୂର୍ବ ଆଉ ପଶ୍ଚିମ, ସବୁ ବୁଲି ଆସିଛନ୍ତି । ହିମାଳୟର ପାଦଦେଶରେ, ଗହନବନ ଭିତରେ ସେଇଠି ସେ ଧ୍ୟାନସ୍ଥ ହୋଇଯାଆନ୍ତି । କିଛି ଦିନ ପାଇଁ ସେଠି ବିତେ ତାଙ୍କର ତପସ୍ୟାମଗ୍ନ ଜୀବନ୍ । ଏସବୁ ସତ୍ତ୍ୱେ ପରୀକ୍ଷାରେ କେବେ ପ୍ରଥମ ହେବାର ସୌଭାଗ୍ୟରୁ ସେ ବଞ୍ଚିତ ହୋଇନାହାନ୍ତି । ବିଶ୍ୱବିଦ୍ୟାଳୟରେ ତାଙ୍କ ରେକର୍ଡ଼ ଟପିବା ଛାତ୍ରଛାତ୍ରୀ ଏବେ ବି ଉତୁରି ନାହାନ୍ତି ।

ସମସ୍ତେ ଆଶା କରୁଥିଲେ, ଶୁଭେନ୍ଦୁ ପ୍ରଶାସନିକ ଚାକିରିରେ ପଶିବେ, ନ ହେଲେ ଅଧ୍ୟାପନା କରିବେ । କିନ୍ତୁ ସେ ହେଲେ ଓକିଲ । ସିଭିଲ ସର୍ଭିସ୍ ପରୀକ୍ଷାରେ ଥରେ ବସିଯିବାକୁ ମା' ଆଶାଲତା କହିଥିଲେ । ଶୁଭେନ୍ଦୁ ଉତ୍ତର ଦେଇଥିଲେ କ'ଣ ମିଳିବ ଏତେ ବଡ଼ ଚାକିରିରୁ ? ବାପା ପରା ମନ୍ତ୍ରୀ ହୋଇ ଏତେ ରୋଜଗାର

କରିଥିଲେ, ସୁଖ-ଶାନ୍ତି ପ୍ରତିପତ୍ତି ମାନସମ୍ମାନ ପାଇଥିଲେ, ଅଥଚ ତମେ କାହିଁକି ଏତେ ସୁଖ ସରାଗ ମଉଜ ମଜଲିସ୍‌କୁ ଏଡ଼େଇ ଗାଁରେ ପଡ଼ି ରହିଥିଲ ? ଯେବେ ବି ରାଜଧାନୀ ଯାଉଥିଲ, ବାପାଙ୍କ ସହ ଖଟ୍ ଖଟ୍ ଝଗଡ଼ା, ଶେଷରେ ଗାଁକୁ ଫେରିଆସିଲ । କହୁଥିଲ ସେଠି କୁଆଡ଼େ ଜେଜେଙ୍କର ଉପଦେଶ ତମ କାନରେ ବାରମ୍ବାର ପ୍ରତିଧ୍ୱନିତ ହେଲା—ଅଧର୍ମ ବିତ୍ତ ବଢ଼େ ବହୁତ, ଗଲାବେଳେ ଯାଏ... ।

ଠିକ୍ ସେୟା ହେଲା ।

ଆଖି ଦେଖିବାରେ ସବୁ ଉଜୁଡ଼ିଗଲା, ହିସାବ ରଖିଛ, ମା !

ଏ ପେଟ ଚାଖଣ୍ଡକର ଜୀବନ ପାଇଁ ଓକିଲ ବୃତ୍ତିରୁ ମୋତେ ଆଜି ଯେତିକି ମିଳୁଛି, ଆମ ପେଟ ତ ସେଥିରେ ଅପୋଷା ରହୁନି ।

ଜେଜେଙ୍କ ତିଆରି ଏତେ ବଡ଼ ଘର, ଆସବାବପତ୍ର ଓ ଜମିବାଡ଼ିରୁ ଆୟ କ'ଣ ଆମକୁ ନିଅଣ୍ଟ ହେଉଛି ?

ଆଉ କିଛି କହିବାକୁ ଆଶାଲତାଙ୍କର ଜିଭ ଲେଉଟି ନାହିଁ । ସବା ସାନ ପୁଅ ପୁଣି ଗେହ୍ଲା ଶୁଭେନ୍ଦୁଙ୍କ ମନରେ ଦୁଃଖ ଦେବାକୁ ସେ ଚାହିଁଲେ ନାହିଁ । ଯାହା ସେ ଠିକ୍ ମନେ କରୁଛି, ସେଥିରେ ସେ ଯଦି ବାଧା ଦିଅନ୍ତି ଅଶାନ୍ତି ବଢ଼ିବ । ମା' ପୁଅଙ୍କ ବିବାଦର ବିଷୟ ଘରୁ ବାହାରକୁ ଚାଲିଯିବ । ସେଥିରେ ଲାଭ ତ କିଛି ହେବନି ବରଂ ଚାହିଁଲେ ସେ ଆଉ ଗାଁକୁ ନ ଆସି ସେଇ କଟକ ଘରେ ହିଁ ରହିଯିବ । ସବୁଦିନ ପୁଅକୁ ଥରେ ନ ଦେଖିଲେ ସେ କ'ଣ ରହିପାରିବେ ?

କଟକ ଘରେ କେବଳ ଶୁଭେନ୍ଦୁଙ୍କର ଚାମ୍ବର । ସକାଳୁ ଯାଇ ଫେରିଆସନ୍ତି ରାତି ଦଶଟା ପରେ । ଛୁଟିଦିନରେ କୁଆଡ଼େ ଯାଆନ୍ତି ନାହିଁ ଶୁଭେନ୍ଦୁ । ମା' ଆଶାଲତାଙ୍କ ମନ ଆନନ୍ଦରେ ଉଛୁଳି ଉଠେ । ନାନା ପ୍ରକାରର ପିଠା କରନ୍ତି । ଛୁଞ୍ଚିପତ୍ର, ଆରିସା, ଚକୁଳି, ମଣ୍ଡାପିଠାକୁ ଖୁବ୍ ଭଲପାଆନ୍ତି ଶୁଭେନ୍ଦୁ । ନିଜେ ପାଖରେ ବସି ମନଲାଖି ବାଛି ବାଛି ତିଅଣ ପରଶନ୍ତି ଆଶାଲତା ।

ପିଲାଦିନେ ଶୁଭେନ୍ଦୁଙ୍କୁ ଥରେ ଏମିତି ଜର ହେଲା ଯେ ଛାଡ଼ିଲାନି । କେତେ ବୈଦ୍ୟ ଡାକ୍ତର ଆସି ରୋଗ ଭଲ କରିପାରିଲେନି । ଶେଷରେ ଜେଜେ ଯାଇ ଗୁଣିଆ ଡାକି ଝଡ଼େଇ ଦେଲେ ଯେ ଜର ଓହ୍ଲେଇଗଲା । ଶଶୁରଙ୍କର ଏଇ ଗାଉଁଲି ଦେଶୀ ଝଡ଼ାଫୁଙ୍କାକୁ ଆଶାଲତା ବିଶ୍ୱାସ କରିଗଲେ । ଆଉଥରେ ଗାଁ ମଝିଦାଣ୍ଡରେ ମାଛିଅନ୍ଧାରରେ ଫେରୁ ଫେରୁ କ'ଣ ଗୋଟେ କାମୁଡ଼ି ଦେଲା ଶୁଭେନ୍ଦୁଙ୍କୁ । ଘରେ ପହଞ୍ଚୁ ପହଞ୍ଚୁ ମୁଣ୍ଡଟା ଚାଉଁକରି ଧରିନେଲା । ଜେଜେ ଗାମୁଛା କାନ୍ଧରୁ କାଢ଼ି ଚଉକସ କରି କାମୁଡ଼ା ଉପରକୁ ବାନ୍ଧି ଝପଟିଗଲେ ସେଇ ଗୁଣିଆ ପାଖକୁ । ସାପକାମୁଡ଼ା

ରୋଗୀ ଯେତେ ଦୂରରେ ଥିଲେ ବି ଖବର ଦେବା ଲୋକକୁ ଗୁଣିଆଠୁଁ ଶକ୍ତଚାପୁଡ଼ା ଖାଇବାକୁ ପଡ଼େ । ଜେଜେ ଏକଥା ଜାଣି ନଥାନ୍ତି । ରାଗରେ ଗୁଣିଆକୁ ଛାଡ଼ନ୍ତି କୋଉଠୁ ! ହେଲା ଗଡ଼ାଗଡ଼ି । ଶେଷକୁ ଲୋକମାନେ ଆସି ଛଡ଼େଇଲେ ସେ ଦି'ଜଣଙ୍କୁ ।

ଶୁଭେନ୍ଦୁଙ୍କ ଜେଜେ ଥିଲେ ବଡ଼ ଏକବାଗିଆ ଆଉ ଜିଦ୍‌ଖୋର । ଗାନ୍ଧିଜୀଙ୍କ ଡାକରାରେ ସେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ ଆଉ କାରାବରଣ କରିଥିଲେ ସାତବର୍ଷ । ବ୍ରିଟିଶ ପୁଲିସର ଲାଠିମାଡ଼ରେ ଭାଙ୍ଗିଯାଇଥିଲା ତାଙ୍କର ଅଣ୍ଟା । ବୁଟ୍‌ମାଡ଼ରେ ଦବିଯାଇଥିଲା ହନୁହାଡ଼; କିନ୍ତୁ ଦବି ନଥିଲା ତାଙ୍କ ମନର ବଳ । ତାଙ୍କ ଶିରା ପ୍ରଶିରାରେ ବହିଚାଲୁଥିଲା ବିଦ୍ରୋହର ବହ୍ନି । ବାର୍ଦ୍ଧକ୍ୟରେ ଦୁର୍ବଳ ଦିଶୁ ନଥିଲା ତାଙ୍କର ମୁହଁ । ଜେଜେଙ୍କର ସରିଆସୁଥିବା ଦିନଗୁଡ଼ିକ କଥା ମନେପଡ଼ିଲେ, ଶୁଭେନ୍ଦୁ ଉଦାସ ହୋଇପଡୁଥିଲେ । ସେଇ କରୁଣ ଉଦ୍ଦୀପିତ ଉନ୍ମୀଳ ଆଖି ତାଙ୍କର ଶେଷରେ ସବୁଦିନ ଲାଗି ବୁଜି ହୋଇଯାଇଥିଲା । ତାଙ୍କ ମୃତ୍ୟୁର ମାସକ ଆଗରୁ ଶୁଭେନ୍ଦୁଙ୍କ ବାପା ବସନ୍ତ ଦାସ ନିର୍ବାଚନରେ ପ୍ରାର୍ଥୀ ହୋଇଥାଆନ୍ତି । କଂଗ୍ରେସ ଟିକେଟରେ । ଶୁଭେନ୍ଦୁଙ୍କ ବଡ଼ଭାଇ ସୁରେନ୍ଦ୍ର ବି ବାପାଙ୍କ ନିର୍ବାଚନ ପ୍ରଚାରରେ ପୂରାଦମ୍‌ରେ ଲାଗିପଡ଼ିଥାଆନ୍ତି । ତାଙ୍କ ବାପା ନିର୍ବାଚନରେ ଅବତୀର୍ଣ୍ଣ ହେବାର ଗୋଟିଏ ମାତ୍ର ଯୋଗ୍ୟତା ହେଲା ଯେ ସେ ଥିଲେ ସ୍ୱାଧୀନତା ସଂଗ୍ରାମୀ ଦେଶସେବକ ନରହରି ଦାସଙ୍କ ପୁଅ । ନିର୍ବାଚନରେ ବହୁ ଭୋଟ ବ୍ୟବଧାନରେ ଜିତି ମନ୍ତ୍ରୀ ବି ହୋଇଗଲେ । ହେଲେ ଜେଜେ କିନ୍ତୁ ରୋକ୍‌ଠୋକ୍ ମନା କରିଦେଲେ ରାଜଧାନୀ ଯିବାକୁ । ମନ୍ତ୍ରୀ ହୋଇଥିବା ପୁଅ ବି ପ୍ରଶାସନକୁ ପଛରେ ପକେଇ ଜେଜେଙ୍କ ପାଖରେ ଗାଁରେ ରହିପାରିଲେ ନାହିଁ । ଜେଜେଙ୍କ ପାଖରେ ଥାଆନ୍ତି ବୋହୂ ଆଶାଲତା ଆଉ ସାନନାତି ଶୁଭେନ୍ଦୁ ।

ଜେଜେ ଆଉ ବାପାଙ୍କର ଆଚରଣରେ ଆକାଶ ପାତାଳ ଫରକ । ଜଣେ ଆଦର୍ଶବାଦୀ, ଆଉ ଅନ୍ୟ ଜଣେ ସଫଳତା ପଛରେ ଧାଉଁଥିବା ମଣିଷ । ସବୁ ଦେଖିଛନ୍ତି ଶୁଭେନ୍ଦୁ । ସ୍ନାତକୋତ୍ତର ପରୀକ୍ଷାରେ ତୃତୀୟ ଶ୍ରେଣୀ ପାଇଥିବା ବଡ଼ଭାଇ ସୁରେନ୍ଦ୍ରଙ୍କ ପାଇଁ ବାପାଙ୍କର ଅର୍ଥ, ଶାସନତନ୍ତ୍ରର ଉପଯୋଗ । ସୁରେନ୍ଦ୍ର ଅନେକ ମେଧାବୀ ଛାତ୍ରଙ୍କୁ ପଛରେ ପକାଇ ଓ.ଏ.ଏସ. ଚାକିରିରେ ଯୋଗଦେବା; ବାପାଙ୍କର ବିଳମ୍ବିତ ରାତିରେ ଢଳି ଢଳି ରାଜଧାନୀ କ୍ଲବରୁ ଫେରିବା, ଯକୃତ କ୍ୟାନସର ରୋଗର ବିଦେଶୀ ଉପଚାର ଆଉ ତାଙ୍କର ଶେଷ ସମୟ ଏବଂ ଅସତ୍ ଉପାୟରେ ଅର୍ଜିତ ବାପାଙ୍କ ସମ୍ପତ୍ତିର ବିନିର୍ବ୍ୟୟ, ବିକ୍ରିବଟା ଧାରଶୁଝା ଇତ୍ୟାଦି ।

ମା' ଚିନ୍ତା କରନ୍ତି ।

ସ୍ୱାମୀଙ୍କର କୃତକର୍ମର ଫଳ । ଆତ୍ମଦର୍ଶନର ଅଭାବବୋଧ । ଢେଙ୍କେଙ୍କ କଥା ହେୟଜ୍ଞାନ କରିବାର ପରିଣତି ।

ବାପା ରୋଗଶଯ୍ୟାରେ ଅନେକ ଦିନ ପଡ଼ିରହିଲେ । ରୋଗ ଭଲ ହେଲା ନାହିଁ । ସବୁଦିନ ଲାଗି ସେ ଆଖି ବୁଜିଦେଲେ । ଏବେ ଭୋଗୁଛନ୍ତି ଆଶାଲତା । କୋଉ ଜନ୍ମରେ କି ଦୋଷ କରିଥିଲେ ଯେ ସ୍ୱାମୀଙ୍କୁ ହରେଇ ଏଇ ଏକାକୀ ଜୀବନ ବିତେଇବାର ବୋଝ ବୋହି ଚାଲିଛନ୍ତି ସେ । ବଡ଼ପୁଅ ତ ତା' ପିଲାଛୁଆଙ୍କୁ ନେଇ ସହରରେ । ଦି' ବର୍ଷରେ ଦି' ଚାରିଦିନ ପାଇଁ ସେମାନେ ଗାଁକୁ ଆସନ୍ତି । କିନ୍ତୁ ଆଶାଲତା ଆଶା ବାନ୍ଧିଛନ୍ତି ସାନପୁଅ ଶୁଭେନ୍ଦୁ ଉପରେ । ବାହାସାହା ହେଲେ ହୁଏତ ଶୁଭର ବେପରୁଆ ଢଙ୍ଗ ବଦଳିଯିବ । ବୁନିଆଦି ଥିବା ଅଭିଜାତ ଘର, ବୃତ୍ତିରେ ପୁଣି ଓକିଲ, କେତେ ଆଉ କେତେ ପ୍ରସ୍ତାବ ଆସିଛି । ଭାଇଭାଉଜ ବି କନ୍ୟା ଦେଖାରେ ହେଳା କରି ନାହାନ୍ତି । ମା' ଆଶାଲତା ଠାକୁରଙ୍କ ପାଖରେ କେତେ ପ୍ରାର୍ଥନା କରିଛନ୍ତି । ଶୁଭ ଏଥରକ ତାଙ୍କ କଥାରୁ ବାହାରି ଯିବନି । କନ୍ୟାଟି ଦେବୀପ୍ରତିମା ପରି—ଗୋଟିଏ ଚାଉଳରେ ଗଢ଼ା ।

କିନ୍ତୁ ବାହାଘରର ଏବେ ପ୍ରଶ୍ନ ଉଠୁନି—ସମୟ ହେଲେ ଶୁଭ ତାଙ୍କ ଆଡୁ କହିବେ । ସେ ଜିଦ୍‌ରେ ଅଟଳ, ଘରେ ବହିଯାଇଛି ଝଡ଼ । ସ୍ଥିର ହେଲା, ଶୁଭେନ୍ଦୁ ନ କହିବାଯାଏଁ ସେଥିରେ କେହି ମୁଣ୍ଡ ଖେଳାଇବେ ନାହିଁ । ତଥାପି ଆଶାଲତାଙ୍କର ମା' ମନ ବୁଝିଲା ନାହିଁ ।

''ହଇରେ ଶୁଭ ! ବାହାଘର ବୟସ କ'ଣ ତତେ ହେଇନି ? କେତେଦିନ ଆଉ ଅଭିଆଡ଼ା ରହିବୁ ? କୋଉଠି ଯଦି ଠିକ୍ କରିଛୁ, କହୁନୁ ? ତୋ କଥାରେ ମୁଁ ଜମା ଅରାଜି ହେବିନି ।''

ସବୁଦିନ ପରି ଶୁଭେନ୍ଦୁ ଶୋଇବା ଆଗରୁ ମା'ଙ୍କର ଗୋଡ଼ ଚିପୁଚିପୁ ଉତ୍ତର କଲେ, ''ମା' ବୋହୂଟିଏ ପରା ଆଣିଥିଲୁ ଦଶବର୍ଷ ତଳେ—ତୋ ଭଲ ମନ୍ଦରେ ଆଜି ତୋ ପାଖରେ କିଏ ଅଛି ? କର୍ତ୍ତବ୍ୟର ବୋଝକୁ ଆଡ଼ ଆଖିରେ ନ ଚାହିଁବାର ନଜିର ବହୁତ ଅଛି । ତେବେ ବାପା ଯିବାପରେ ମୋ ବାହାଘରର ବୋଝ ତୋ ଉପରେ ନଦି ହୋଇପଡ଼ିଛି, ମୁଁ ନିଶ୍ଚେ ବାହାହେବି, ହେଲେ ତୋ ମନଲାଖି ବୋହୂ ପୁଣି ମୋ ସହ ମେଳ ଖାଉଥିବା ପାତ୍ରୀଟିଏ ଖୋଜିବା କାମ ତ ସହଜ ନୁହେଁ । ତା'ଛଡ଼ା ତୁ କ'ଣ ଏ ଦାୟିତ୍ୱ ମୋ ଉପରେ ଛାଡ଼ିପାରିବୁନି ?''

ମନମାରି ଢେରଦିନ ବାହାଘର କଥା ଉଠେଇଲେ ନାହିଁ ଆଶାଲତା ।

ତା'ପରେ ପ୍ରସ୍ତାବ ଆଉ ଆସିଲା ନାହିଁ । ମୁକ୍ତ ବିହଙ୍ଗ ପରି ଶୁଭେନ୍ଦୁଙ୍କ ଅନୁସନ୍ଧିତ୍ସୁ ମନ ତାଙ୍କ ଚାହିଁବା ମୁତାବକ ପାତ୍ରୀଟିଏ ଖୋଜି ହେଉଥିଲା । ବେଳେ

ବେଳେ ତାଙ୍କ ଚାରିପାଖର ଜନଜୀବନର ଜଞ୍ଜାଳ, ସୁଖଦୁଃଖର ଅନେକ ଭାବବିହ୍ୱଳ ଘଟଣା, କିଛି ପାଇବା ନ ପାଇବାର ଦ୍ୱନ୍ଦ୍ୱରେ ଆଉଟୁ ପାଉଟୁ ହୋଇଯାଉଥିବା ମଣିଷର ଛବି ତାଙ୍କ ସାମ୍ନାରେ ଭାସି ଯାଉଥିଲା । ବାହା ନ ହୋଇଥିବାରୁ ବନ୍ଧୁମାନେ ବି ବିଦ୍ରୂପରେ କେବେ କେବେ କହିପକାନ୍ତି, ହଁ, ଖାନଦାନୀ ଘରର ପିଲା, ନରହରି ଦାସଙ୍କ ନାତି, ସେ ପୁଣି ଆମପରି ଘରସଂସାରରେ ମାତିବ । ଦହଗଞ୍ଜ ଭିତରେ ପଶିବ ।

କୋରି ହୋଇଯାଏ ଶୁଭେନ୍ଦୁଙ୍କର ଛାତି ଭିତରେ ଭିତରେ, ତମାମ୍ ଶରୀର ତାଙ୍କର କମ୍ପିଉଠେ । ଏମାନଙ୍କର ନିପାରିଲା ବ୍ୟକ୍ତିତ୍ୱକୁ ଦେଖି ତାଙ୍କୁ ଦୁଃଖ ଲାଗେ । ତଥାପି ସେ ମୁହାଁ ମୁହିଁ ଆକ୍ଷେପ କରନ୍ତି ନାହିଁ ।

କାନ୍ଥରେ ଟଙ୍ଗାଯାଇଛି ଜେଜେଙ୍କର ଆବକ୍ଷ ତୈଳଚିତ୍ର । ଯେମିତି ଜେଜେ ଶୁଭେନ୍ଦୁଙ୍କୁ ଚାହିଁଛନ୍ତି । ଚାରିପାଖର ଯେଉଁ ଦିଗକୁ ବୁଲିଗଲେ ବି ଜେଜେ ସବୁପଟୁ ସେମିତି ତାଙ୍କୁ ହିଁ ଚାହିଁଛନ୍ତି । ସତେଯେପରି ଜେଜେ ଆଶୀର୍ବାଦ ବର୍ଷୁଛନ୍ତି ତାଙ୍କ ଉପରେ । ଶୁଭେନ୍ଦୁ ଏବେ ବି ନିଜର ନିର୍ଦ୍ଦିଷ୍ଟ ଚଲାପଥରୁ ଖସିନାହାନ୍ତି, ନିଜର ଚିନ୍ତାପ୍ରସୂତ କାର୍ଯ୍ୟଧାରା ଯେତେ ବନ୍ଧୁର କଣ୍ଟକିତ ହେଲେ ବି ପଛକୁ ଫେରିବା ଜାତକରେ ନାହିଁ । ହଁ, ସେ ଚଲାପଥର ଗୁଳା ଯେପରି ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ଆଉ ବିଧିନିର୍ଦ୍ଦିଷ୍ଟ । ସବୁକିଛି ବିନିମୟରେ ନିଜର ସ୍ୱାଭିମାନ, ଆତ୍ମପ୍ରତ୍ୟୟ ଓ ଆତ୍ମଜ୍ଞାନକୁ ସେ ହାତଛଡ଼ା କରିପାରିବେ ନାହିଁ । ସେ ସ୍ୱାଭିମାନୀ ପୁରୁଷ, ନିଜ ଚିନ୍ତାରାଜ୍ୟର ସାର୍ବଭୌମ ସମ୍ରାଟ । ଅଗ୍ନି ସିନା ଜଳାଏ ଅନ୍ୟକୁ, ଭସ୍ମକରେ ଅନ୍ୟର ସମଗ୍ର ସତ୍ତାକୁ, କିନ୍ତୁ ସେ କ'ଣ ଜଳାଇପାରେ ନିଜକୁ ? ଭସ୍ମ କରିପାରେ ନିଜକୁ ? ତେଜୋଦୀପ୍ତ ବହ୍ନି ପରି ସ୍ୱକୀୟ ଗୁଣରେ ନିଜ ମୂଲ୍ୟବୋଧକୁ ଆୟୁଧ କରି ବଞ୍ଚିବାରେ କ୍ଷତି କ'ଣ ? ଜନ୍ମ ଆଉ ମୃତ୍ୟୁର ରହସ୍ୟ ଭେଦ ଭୁଲି ସ୍ୱାର୍ଥ ଲାଗି ବିକୃତ ମସ୍ତିଷ୍କ ହୋଇ ଅନ୍ଧପରି ଧନ ପଛରେ ଗୋଡ଼େଇବାକୁ ସେ ଅନ୍ତତଃ ପସନ୍ଦ କରନ୍ତି ନାହିଁ । ଅଗ୍ନି ପରି ନିଜର ଧର୍ମ ଆଚରଣରୁ ବିଚ୍ୟୁତ ହେବେନାହିଁ ବଞ୍ଚିଥିବା ଯାଏ । ସହପାଠୀ ଦେବବ୍ରତ । ପାଠ ପାଠ କହି ବହି ପାଖରୁ ଉଠୁ ନ ଥିଲା । ଏବେ ସରକାରୀ କଲେଜର ବରିଷ୍ଠ ଅଧ୍ୟାପକ । ସଂସାର ସାଗରର ଅକାତକାତ ପାଣିରେ ସେ ଉବୁଟୁବୁ । ଯଦି ବାଟଘାଟରେ ତା' ସାଙ୍ଗରେ ଦେଖା ହୋଇଯାଏ ଶୁଭେନ୍ଦୁ ସହ ପାଞ୍ଚ ଦଶ ମିନିଟ କଥା ହୋଇ ଖସି ପଳେଇବ । ଶୁଭେନ୍ଦୁ ତାକୁ ଅଟକାଇବାକୁ ଚେଷ୍ଟା କଲାବେଳକୁ ପାଖରେ ଦେବବ୍ରତ ନ ଥିବ । ରାତିର ବିଳମ୍ବିତ ପ୍ରହରଯାଏ ତାକୁ ଦଣ୍ଡେ ଫୁରସତ୍ ମିଳେନି । ଖାଲି ଟ୍ୟୁସନ୍ । ଆଉ କେବେ କେମିତି ଛୁଟି ହେଲେ କି ଟିୟୁସନ୍ ବନ୍ଦ ରହିଲେ, ତାକୁ ଘରେ ପାଇବା ମୁସ୍କିଲ । ବନ୍ଧୁପତ୍ନୀଙ୍କୁ ପଚାରିଲେ ଉତ୍ତର ମିଳିବ, ଘର ତିଆରି କାମ ଚାଲିଛି । ବାବୁ ସେଇଠି କାମ

ପାଖରେ ଥିବେ । ମେଶିନ୍ ପରି ଖଟି ରକ୍ତକୁ ପାଣି କରି ଦେବବ୍ରତ ଏବେ ପରିଶ୍ରମ କରୁଛି, ଉପାର୍ଜନ କରୁଛି, ଧନ କ'ଣ ପ୍ରକୃତରେ ବ୍ୟକ୍ତିତ୍ୱର ମାପକାଠି ? ଧନ କ'ଣ ସ୍ୱାଭିମାନର ପ୍ରତୀକ ?

ଢେଙ୍କେଙ୍କର କଥା ପ୍ରତିଧ୍ୱନିତ ହୁଏ ଶୁଭେନ୍ଦୁଙ୍କ କାନ ପାଖରେ । ଧନ ଚିନ୍ତାଶକ୍ତିକୁ କଳୁଷିତ କରେ, ବୋଧଶକ୍ତିକୁ ଅନ୍ଧାରରେ ଛାଇଦିଏ, ମାନବିକ ମୂଲ୍ୟବୋଧ ବୃଥା ହୋଇପଡ଼େ । ମେଧାଶକ୍ତିରେ ଘୁଣ ଲାଗିଯାଏ, ଉଇ ଚରିଯାଏ ।

ତା'ପରେ ମୃତ୍ୟୁ । ନେଡ଼ିଗୁଡ଼ କହୁଣିରେ ପହଞ୍ଚି ସାରିଥାଏ । ପଛକୁ ଆଉ ଫେରିପାରେନା ମଣିଷ ।

ସଂସ୍କୃତ ପଣ୍ଡିତଙ୍କ ଝିଅ ସୁପର୍ଣ୍ଣା ଶୁଭେନ୍ଦୁଙ୍କର ଦି'ବର୍ଷ ତଳ ଶ୍ରେଣୀରେ ପଢୁଥିଲେ । ନାରୀମାନଙ୍କ ଲାଗି ସଂରକ୍ଷିତ କୋଟାରେ ରାଜ୍ୟ ପ୍ରଶାସନିକ ସର୍ଭିସ୍‌ରେ ପଶିଗଲେ । ଏବେ ପଦୋନ୍ନତି ପାଇ ଏ ଅଞ୍ଚଳର ସବ୍‌କଲେକ୍ଟର, ଅବିବାହିତା । ଶୁଭଭାଇଙ୍କର ଯଦି କିଛି ଆପତ୍ତି ନ ଥାଏ, ତେବେ ସୁପର୍ଣ୍ଣା ଅରାଜି ନୁହେଁ ବୋଲି ଜାଣିଲା ପରେ ଶୁଭେନ୍ଦୁ ଆଉ ସୁପର୍ଣ୍ଣା ଅନେକ ଥର ଆଲୋଚନା କରିଛନ୍ତି । କଥାଟା ବାହାରକୁ ଜଣାପଡ଼ି ନ ଥିଲେ ବି ଦିହିଙ୍କ ଭିତରେ ଆକର୍ଷଣ ଆସିଛି ।

କିନ୍ତୁ ସିଦ୍ଧାନ୍ତ ନେବାର ଆଗରୁ ଘଟଣା ଅନ୍ୟ ମୋଡ଼ ନେଲା । ସୁପର୍ଣ୍ଣାଙ୍କ ବାରଣ ସତ୍ତ୍ୱେ ଶୁଭେନ୍ଦୁ ଲୋକମାନଙ୍କ କଥାରେ ନିର୍ବାଚନରେ ପ୍ରାର୍ଥୀ ହୋଇଛନ୍ତି ।

ପ୍ରାର୍ଥୀପତ୍ର ଦାଖଲ ପରେ ପରେ ଶୁଭେନ୍ଦୁଙ୍କ ପ୍ରତି ସମର୍ଥନ ଦେଖି ସେ ଜିତିଯିବେ ବୋଲି ଜଣାପଡ଼ିଗଲା । ବିପକ୍ଷ ପ୍ରାର୍ଥୀ କୂଟଚକ୍ରାନ୍ତର ଜାଲ ବୁଣିଦେଲେ । ସେ ଜାଲର ଗୋଟିଏ ମୁଣ୍ଡ ଏକେଲା ଧରିବାକୁ ବାଧ ହେଲେ ସ୍ୱୟଂ ସବ୍‌କଲେକ୍ଟର ସୁପର୍ଣ୍ଣା । ଯା'ର ସତ୍ୟାସତ୍ୟ ଜାଣିବା ଅସମ୍ଭବ ହେଲାନି ଶୁଭେନ୍ଦୁଙ୍କ ପକ୍ଷରେ । ଏ ଅଞ୍ଚଳରେ ସୁପର୍ଣ୍ଣାଙ୍କର ପୋଷ୍ଟିଂରେ ହାତ ଅଛି ଶାସକଦଳର ପ୍ରାର୍ଥୀ ବିପିନ ବିଶ୍ୱାଳଙ୍କର । ମାସିକ ମୋଟା ଅଙ୍କର ପଡ଼ି ବି ସେ ସୁପର୍ଣ୍ଣାଙ୍କଠୁ ନିଅନ୍ତି । ଏବେ ପ୍ରତିଶ୍ରୁତି ଦେଇଛନ୍ତି, ଜିତିଲେ ସଚିବାଳୟକୁ ନେଇଯିବେ ।

ଶୁଭେନ୍ଦୁ ସଫା ସଫା ତାଙ୍କୁ କହିଦେଲେ, ବାହାଘର ଆଗରୁ ରିଜାଇନ୍ କରିବାକୁ ହେବ । କିନ୍ତୁ ସୁପର୍ଣ୍ଣା ବିବାହ ଅପେକ୍ଷା ଗୁରୁତ୍ୱ ଦେଲେ ଚାକିରିକୁ । ଦେଶ ସ୍ୱାଧୀନ ହେଲାପରେ ରାଜନୀତିକ ଲୋକମାନେ ଅମଲାତନ୍ତ୍ରର ଧଳାହାତୀମାନଙ୍କୁ ହାତ କରି ବେଶ୍ ଫାଇଦା ମାରୁଛନ୍ତି । ସୁପର୍ଣ୍ଣା ବି ଏଥିରୁ ବାଦ୍ ଯାଇ ନ ଥିଲେ । ଖଟିଖିଆ ମେହେନତି ମଣିଷକୁ ଭେଳିକି ଦେଖେଇ ଏମାନେ ରାତାରାତି ବଡ଼ଲୋକ ହୋଇଛନ୍ତି । ଅଥଚ ଯେଉଁମାନଙ୍କ ଭୋଟ ପାଇ ସେମାନେ ଶାସନଗାଦିଟିକୁ ଯାଆନ୍ତି, କ'ଣ ଦିଅନ୍ତି ସେମାନଙ୍କୁ ?

ଜେଜେଙ୍କ ନୀତି, ଆଦର୍ଶ, ସ୍ୱାଧୀନତା ସଂଗ୍ରାମରେ ତାଙ୍କର ତ୍ୟାଗ କଥା ପ୍ରଚାର କରି ନିର୍ବାଚନରେ ଜିତି ବାପା ମନ୍ତ୍ରୀ ହୋଇଥିଲେ । ଖୋସାମତିଆଙ୍କ ପାଲରେ ପଡ଼ି ଧନ ଉପାର୍ଜନ କରିଥିଲେ । ହେଲେ, କଟକ କୋଠାଟି ଛଡ଼ା କ'ଣ ଅଛି ଆଜି ? ଜେଜେଙ୍କର କଷ୍ଟ ଅର୍ଜିତ ସମ୍ପତ୍ତି କ'ଣ ପୁଅ ବସନ୍ତଙ୍କ ପାଇଁ ଯଥେଷ୍ଟ ନ ଥିଲା ?

ମା' କୁହନ୍ତି, ସେଇ ଜଳଜଳା ନିଆଁ ପାଉଁଶ ରାଜନୀତିକୁ ଡେଇଁ ସେ ନଷ୍ଟ ହୋଇଗଲେ । ଯେତେ ବାରଣ କଲେ କ'ଣ ମାନିଲେ ? ରାଜନୀତିକୁ ହାତବାରିସୀ କରିବାକୁ ହେଲେ ପାର୍ଟିଫଣ୍ଡଠୁ ନିଜ ଫଣ୍ଡ ପର୍ଯ୍ୟନ୍ତ ସଂଗ୍ରହ କରିବାକୁ ହେବ । ଯା' ନା ସିନା ରାଜନୀତି । ବଡ଼ ତେଜରେ ବାପା କଥା କହୁଥିଲେ । କିନ୍ତୁ ରୋଗଶଯ୍ୟାରେ ଯେତେବେଳେ ପଡ଼ିଲେ ସେତେବେଳେ ହେଜ ପଶିଲା ।

ସତରେ କ'ଣ ସିଏ ଉପର ଦରବାରରେ କ୍ଷମା ପାଇଥିବେ ? ଦୀର୍ଘଶ୍ୱାସ ମାରନ୍ତି ଆଶାଲତା ।

ଶୁଭେନ୍ଦୁ ଭାବନ୍ତି, ପ୍ରଚଳିତ କଳୁଷିତ ରାଜନୀତିକୁ ସଜାଡ଼ି ହେବନି । କେହି ବି ପାରିବେ ନାହିଁ । ପାରିଥିଲେ ଦେଶ ଆଜି ଘିଅ ମହୁରେ ଭାସୁଥାଆନ୍ତା । ଦେଶ ସଜାଡ଼ି ହୋଇଯାଇଥାଆନ୍ତା । ଆଉ ଯା'କୁ ସଜାଡ଼ିବାକୁ ଯାଇ କେତେ ଯେ ଲୋକ ଅସଜଡ଼ା ବୁଢ଼ିଆଣୀ ଜାଲରେ ଛନ୍ଦି ହୋଇଯାଇଛନ୍ତି, ତା'ର କଳନା ନାହିଁ ।

ଜେଜେଙ୍କ କଥାରେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିବା ବୃଦ୍ଧ ରାମରତ୍ନ ଜେଜେ, ନିର୍ବାଚନ ସଭା ଭାଙ୍ଗିଲାପରେ ଶୁଭେନ୍ଦୁଙ୍କୁ ଆଶୀର୍ବାଦ କରି କହିଥିଲେ, ଆଜି ପରା ତୋର ଜନ୍ମଦିନ । ଶୁଭେନ୍ଦୁ ଆଶ୍ଚର୍ଯ୍ୟ ହୋଇଥିଲେ । ଜନ୍ମଦିନର ଠିକ୍ ତିଥିବାର ନକ୍ଷତ୍ର ସେ କହିଦେଲେ ।

ନିର୍ବାଚନରେ ଜିତିବା ପରେ ଏ ସ୍ନେହ ଶ୍ରଦ୍ଧା ସୌହାର୍ଦ୍ଦ କ'ଣ ରହିବ ? ବେଶ୍ ଭଲ; ଯା'ଠାରୁ ଦୂରେଇ ନୀରବ ରହିଯିବାରେ । ଯେମିତି ଅନେକ ଆଜି ରାଜନୀତିରୁ ଦୂରେଇ ନୀରବ ରହିଯାଇଛନ୍ତି ।

ବାରମ୍ୱାର ରାମରତ୍ନ ଜେଜେଙ୍କ କଥା ସ୍ମରଣ କଲେ ଶୁଭେନ୍ଦୁ । ହାତଯୋଡ଼ି ପ୍ରାର୍ଥନା କଲେ ଇଚ୍ଛାମୟଙ୍କୁ । "କିଛି ଯଦି ଦେବାକୁ ଅଛି ଫେରେଇଦିଅ ମୋର ସେଇ ଛନ୍ଦହୀନ ଉଦ୍‌ଫୁଲ୍ଲିତ ନିଛକ ହଜିଲା ଅତୀତ ଚଳଚଞ୍ଚଳ ଚପଳମତି ଶୈଶବ ।"

ଅସମ୍ଭବ !

ସଇଁତିରିଶ ବର୍ଷର ଜୀବନରେ ପ୍ରତି ପର୍ଯ୍ୟାୟରେ ଖୋଜି ଚାଲିଛନ୍ତି ଶୁଭେନ୍ଦୁ ଚାହିଁବା ମୁତାବକ ବନ୍ଧୁଟିଏ ।

ନା...

ଦୌଡ଼ିଲେ ସୁପର୍ଣ୍ଣାଙ୍କ କ୍ୱାଟର୍ସ ଆଡ଼େ । ବଢ଼େଇଦେଲେ ତାଙ୍କ ପ୍ରାର୍ଥୀତ୍ୱର ପ୍ରତ୍ୟାହାର ପତ୍ର ।

କିନ୍ତୁ ସୁପର୍ଣ୍ଣା ସେତେବେଳେ ଗଢୁଥିଲେ ସ୍ୱପ୍ନର ଅନେକ ମୀନାର । ବିପିନ ବିଶ୍ୱାଳଙ୍କ ପ୍ରତିଶ୍ରୁତି—ରାଜଧାନୀ ପୋଷ୍ଟିଂ ହେବାର ମୋହ ଇତ୍ୟାଦି ନିଜ ସ୍ୱାର୍ଥର ସରହଦରେ ସେ ଭୁଲିଯାଇଛନ୍ତି ଶୁଭେନ୍ଦୁଙ୍କୁ । ଯେମିତି ଭୁଲିଛନ୍ତି ଦେବବ୍ରତମାନେ ।

ପଛକୁ ଚାହିଁଲେ ଶୁଭେନ୍ଦୁ । କେହି ନାହିଁ । ଫାଙ୍କା ।

ଅବଶ୍ୟ ଏକେଲା ବାଟ ଚାଲୁ ଚାଲୁ ଝୁଣ୍ଟି ପଡ଼ିଛନ୍ତି ସେ । ତଥାପି ଦୁଃଖ ନାହିଁ । ଅବସାଦ ନାହିଁ । କ୍ଲାନ୍ତି ନାହିଁ । ଅଛି ଆତ୍ମତୃପ୍ତି । ସ୍ୱାଧୀନ ଭାବରେ ଏକା ଏକା ନିଜ ଢଙ୍ଗରେ ଚାଲିବାର ଶକ୍ତି ।

ପଛକୁ ଫେରି ଚାହିଁଲେ । କାହିଁ, କେହି ଜଣେ ହେଲେ ନାହିଁ । କେବଳ ଅନେକ ଦୂରରେ, ପ୍ରାୟ ଦିଗ୍‌ବଳୟ ତଳୁ, ଉଠି ଆସୁଛି ଦୁଇଟି ସତେଜ ଆଖି... ତାଙ୍କ ଜେଜେଙ୍କର ।

ସେ ଆଖିର ଭାଷାକୁ ବୁଝିପାରୁଥିଲେ ଶୁଭେନ୍ଦୁ, କିନ୍ତୁ ସେ ଆଖିର ନୀରବ ଭାଷା ଅପସରି ଯାଉଥିଲା ତାଙ୍କ ଆଖିର ଅପହଞ୍ଚ ଇଲାକାକୁ ।

ଶୁଭେନ୍ଦୁ ଧୀରେ ଧୀରେ ହଜି ଯାଉଥିଲେ ସ୍ୱାର୍ଥାନ୍ୱେଷୀ ଦୁନିଆର ଅନ୍ଧକାର ଭିତରେ ।

○

# ହଜିଯାଉଥିବା ପାଦଚିହ୍ନ

ଆଗରୁ ଯେତେ ଖଣ୍ଡ ଚିଠି ମିଳିଛି ସନାତନଙ୍କଠୁ ଏଇ ଚିଠିଟି ଥିଲା ସଂକ୍ଷିପ୍ତ । ଚିଠିଟି ଆସିଥିଲା ରେଜେଷ୍ଟ୍ରି ଡାକରେ । ଚିଠି ଖୋଲି ତିନି ଚାରିଥର ପଢ଼ିଗଲି ।

ମୋର ସଂକୀର୍ଣ୍ଣ ଚିନ୍ତାଧାରା ତାଙ୍କର ବ୍ୟକ୍ତିତ୍ୱ ପାଖରେ ଭାଙ୍ଗି ପଡୁଥିଲା । ଏକା ଏକା କ୍ୱାଟର୍ସ ଭିତରେ ସାମ୍ନା ଟେବୁଲ ଉପରେ ଚିଠିଟି ଥୋଇ ତାଙ୍କ ସହ ସମ୍ପର୍କର ସ୍ମୃତିକୁ ଭାବି ଚାଲିଲି ।

ମଣିଷର ମୁହଁ ହେଉଛି ତାର ମନର ଆରିଶି । ସନାତନ ବାବୁଙ୍କୁ ଯିଏ କେହି ଅନିଶା କଲେ ଜାଣିଯିବ ଯେ ସେ ଜଣେ ବିବେକବନ୍ତ ସ୍ପଷ୍ଟବାଦୀ ବେପରୁଆ ସ୍ୱାଧୀନଚେତା ମଣିଷଟିଏ, ଏଥିରେ କାହାରି ସନ୍ଦେହ ରହିବନି । ଲମ୍ବା, ଗୋରା, ବଳିଷ୍ଠ ଚେହେରା । ବୟସ ପାଖାପାଖି ପଚାଶ ଛୁଇଁ ଆସୁଛି; କିନ୍ତୁ ବୟସର ଛାପ ବାରି ହେବନି । ସତେ ଯେମିତି ଚାଳିଶ ଛୁଇଁବାକୁ ଆହୁରି ବାକି ।

ମୋ ସାମ୍ନା ଫ୍ଲାଟ୍‌ର ତଳ ମହଲାଟି ତାଙ୍କୁ ଆଲଟ୍ ହୋଇଥିଲା । ସେ ଯେତେବେଳେ ପଜେସନ୍ ନେଇ ରହଣି ଆରମ୍ଭ କଲେ, କଲୋନି ଯାକର ଲୋକଙ୍କ ଦୃଷ୍ଟି ତାଙ୍କରି ଉପରେ ନିବଦ୍ଧ ହୋଇପଡ଼ିଲା କେବଳ ତାଙ୍କର ବଳିଷ୍ଠ ସୁନ୍ଦର ଚେହେରାର ଗଢ଼ଣ ଲାଗି ।

ବିଚିତ୍ର ଏଇ ସହର । ରାଜଧାନୀ ଏଠି ଗଢ଼ି ଉଠିଲା ଦିନରୁ ସ୍ୱାର୍ଥସର୍ବସ୍ୱ ମଣିଷର ମନ ଆଗଠୁ ଆହୁରି ହୋଇଉଠିଛି ସଂକୀର୍ଣ୍ଣ ଆଉ ହିଂସ୍ର । ସମ୍ପର୍କ ଏଇ ସହରରେ କିଛିଟା ହିପୋକ୍ରାସୀ ଓ ପ୍ରତାରଣାରେ ପର୍ଯ୍ୟବେସିତ । ବସ୍ତୁବାଦୀର ଚିନ୍ତାଧାରାରେ ସମସ୍ତେ କବଳିତ । ସତେଯେମିତି ମୁକୁଳି ପଡ଼ିବା ଅକ୍ତିଆରର ବାହାରେ । ପ୍ରତିଯୋଗିତା ଖାଲି ଧନ ଦରବର । ନାହିଁ ମାନବୀୟ ମୂଲ୍ୟବୋଧର ନିଛକ ଆତ୍ମଶୁଦ୍ଧି । ଜୀବନ ଏଠି ହଜିଯାଇଛି ସାମୟିକ ଉପଭୋଗ ଆଉ କ୍ଷଣିକ ପ୍ରଲୋଭନର ସୀମିତ ବୃତ୍ତରେ । ପଡ଼ୋଶୀ ପଡ଼ୋଶୀ ମଧ୍ୟରେ ଯୋଗାଯୋଗ କେବଳ ନିରସ ଉପର ଠାଉରିଆ । ତଥାପି ସାରା ସହରର ସମୟଗୁଡ଼ାକ ଘୋଷାରି ଘୋଷାରି ହୋଇ ରହି ରହିକା ଆଗେଇ ଚାଲୁଛି । ଚୋର ଦିବାଲୋକରେ ଚୋରି କରି ଚାଲିଗଲେ ବି କିଛି ପରୱା ନାହିଁ । ମରି ଶୋଇଲେ ଆର ଘରର ଲୋକର କିଛି ଯାଏ ଆସେନା । ଦୁର୍ଘଟଣାରେ ପଡ଼ି ଚିତ୍କାର କରୁଥିବେ, ଲୋକେ ବାଟ ଭାଙ୍ଗି ଯେଝା ବାଟରେ ଯିଏ ଚାଲୁଥିବେ । ଢୁ ଢୁ ବର୍ଷାରେ ଓଦା ହେଉଥିବେ, ମୁଣ୍ଡ ଗୁଞ୍ଜିବାକୁ ମନ କହୁଥିବ; କିନ୍ତୁ ପାରିବେନି । ଗେଟ୍ ଖୋଲିଲେ କୁକୁର ଖେଦି ଦେଉଥିବ ।

ପାରିବେନି, ଏଠି କିଛି ପାରିହବନି । ପାଠଶାଠ ପଢ଼ି ନିଜ ପେଟ ପୋଷିବାକୁ ନୌକରୀ କରୁଛେ ସିନା, କିନ୍ତୁ ଏଇ ଦାସନଗରୀରେ ଆମେ ଜଣେ ଜଣେ ଚିର ସନ୍ତପ୍ତ ପରାଧୀନ ପିଞ୍ଜରାବଦ୍ଧ ଶୁଆଟିର ଜୀବନଠାରୁ କୌଣସି ଗୁଣରେ ଅଧିକ ନୁହେଁ । ଏଠି ମୁକ୍ତ ଆକାଶର ବିହଙ୍ଗ ପରି ବିମୁକ୍ତ ଅସଂଖ୍ୟ ରାଶି ରାଶି ସ୍ୱପ୍ନ ତାର ଚିନ୍ତାରହିତ, କ୍ଷଣଭଙ୍ଗୁର ଆଉ ବିପର୍ଯ୍ୟସ୍ତ ।

ଏସବୁ ଟିକିନିଖି ଚିନ୍ତା କରି କେଜାଣି କାହିଁକି ଏଇ ନୂଆ ଲୋକଟିର ସମ୍ପର୍କରେ ଆସିବାକୁ ମନ ବ୍ୟାକୁଳ ହୋଇଉଠିଲା । ସେଦିନ ସୁଯୋଗ ଆସିଲା ଟାଉନ୍‌ବସ୍‌ରୁ ଓହ୍ଲାଇ ଆମେ କ୍ୱାଟର୍ସ ପର୍ଯ୍ୟନ୍ତ ଚାଲିକି ଆସିବା ଅବସରରେ । ଜାଣିଲି ସେ ଜଣେ ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର । ସ୍ୱାସ୍ଥ୍ୟଗତ କାରଣରୁ ସେ ନିକଟରେ ଟିଟିଲାଗଡ଼ରୁ ବଦଳି ହୋଇ ଆସିଛନ୍ତି । ଘର ତାଙ୍କର ଦୁଷ୍ମନ୍ତପୁରରେ । ସଂସାର କହିଲେ, ପତ୍ନୀ ଅନୁରାଧା ଆଉ କନ୍ୟା ଯଶୋଧାରା । ଝିଅଟି ଡାକ୍ତର । ସୁନ୍ଦର ପ୍ରସ୍ତାବ ଆଉ ବିନା ଯୌତୁକରେ ବାହା ଦେଇଛନ୍ତି ଜଣେ ଡାକ୍ତର ହାତରେ । ଜୋଇଁ ଝିଅ ଦୁହେଁ ଆମେରିକାରେ । ଗାଁରେ ସ୍ତ୍ରୀ ଅନୁରାଧା ଏକୁଟିଆ । ଜମିବାଡ଼ି କଥା ନିଘା ରଖୁଛନ୍ତି । ସନାତନ ବାବୁ ଦଶବର୍ଷ ତଳେ ନିଜ ଉଦ୍ୟମରେ ଗାଁରେ କଲେଜଟିଏ ପ୍ରତିଷ୍ଠା କରିଛନ୍ତି । ବେଶ୍ ଚାଲିଛି କଲେଜଟି । କଲେଜର ଉନ୍ନତି ଲାଗି ସେ ସଦା ଚେଷ୍ଟିତ । ତାଙ୍କର ଅଧିକାଂଶ ରୋଜଗାର, ଚିନ୍ତା ଚେତନା ଓ ପରିଶ୍ରମ କଲେଜର ହାନି ଲାଭରେ ହିଁ ବିନିଯୋଗ ହୁଏ ।

କଥା ଛଳରେ ତାଙ୍କଠାରୁ ଥରେ ଶୁଣିଛି ଯେ, ଯୋଉ ମାଟିରେ ତାଙ୍କର ଜନ୍ମ, ଲୋଟିଛି ଶୈଶବ, ସେଇ ମାଟିର ଉନ୍ନତି ଦେଖି ସେ ଯଦି ଆଖି ବୁଜନ୍ତି, ତାଙ୍କ ଜୀବନ କୁଆଡ଼େ ସାର୍ଥକ ହୋଇଯିବ । ମାସରେ ଥରେ ଯେତେବେଳେ ସେ ଗାଁକୁ ଯାଇ ଦଳିତ ପତିତଗଣଙ୍କ ମୁହଁରେ ଥରେ ଚେନାଏ ହସ ଦେଖିଆସନ୍ତି, ସତେଯେମିତି ତାଙ୍କ ଚାକିରି କାଳର ଯେଉଁ ପରିଶ୍ରମ ଓ ଉପାର୍ଜନର ପରିପୂର୍ଣ୍ଣତା ହିଁ ସେ ଉପଲବ୍ଧି କରିନିଅନ୍ତି । ତାଙ୍କ ଗାଁର ଅଗଣିତ ଲୋକଙ୍କ ବ୍ୟଗ୍ର ଆଖିର ନିବିଷ୍ଟ ଦୃଷ୍ଟି ତାଙ୍କ ଉଦ୍ୟମରେ ପ୍ରତିଷ୍ଠିତ ସେଇ ବିଦ୍ୟାନିକେତନ ଉପରେ ଏକତ୍ରିତ ହୋଇଯିବା ଯିଏ କିଏ ତାଙ୍କ ସହ ଆଳାପ ଆଲୋଚନାରୁ ବାରି ପାରିବ ।

ସନାତନ ବାବୁଙ୍କ ସହ ଦୀର୍ଘଦିନ ଧରି ଅତି ଅନ୍ତରଙ୍ଗ ସହ ମିଶିଛି । ମନ ଭିତରେ ତାଙ୍କର ଏପରି ମହନୀୟ ବ୍ୟକ୍ତିତ୍ୱକୁ ଖୁବ୍ ତୀକ୍ଷ୍ଣ ଭାବରେ ପର୍ଯ୍ୟାଲୋଚନା କରିବାରେ ମଧ୍ୟ ଅବସର ମିଳିଛି । ତଥାପି ତାଙ୍କର ବ୍ୟକ୍ତିତ୍ୱ, ଉଦ୍ୟମ, ସାର୍ଥକତା ସର୍ବୋପରି ସଫଳତାକୁ ବେଳେ ବେଳେ ଈର୍ଷାନ୍ୱିତ ହୋଇ ଏଥିରେ ଛଳନା ଓ ପ୍ରବଞ୍ଚନା ରହିଥାଇ ପାରେ ଭାବି ସନ୍ଦେହ ବି କରିଛି ।

କିନ୍ତୁ ! ପରେ ଇଞ୍ଜିନିୟର ସନାତନଙ୍କ ସିଦ୍ଧାନ୍ତ ଜୀବନ ଚଳଣି ନୀତି ନିୟମ ଆଦର୍ଶ ସ୍ୱତନ୍ତ୍ର ଜାଣି ମୁଁ ଶଙ୍କିତ ହେବା ସଙ୍ଗେ ସଙ୍ଗେ ତାଙ୍କ ମହାନ୍ ବ୍ୟକ୍ତିତ୍ୱ ପାଖରେ ଛୋଟ ହୋଇଯାଇଛି । ତଥାକଥିତ ତାଙ୍କ ଚାକିରିର ପଦବୀ, ମୋହ, ପ୍ରଲୋଭନ, ଭୋଗ ଲାଳସାକୁ ସେ ପାଦରେ ଆଡ଼େଇ ଦେଇ ଏକ ସରଳ ନିରାଡ଼ମ୍ବର ଜୀବନ ଯାପନ କରିବାର ଯୋଉ ଆନନ୍ଦ, ଅପରିସୀମ ଗୌରବ ତାହା ତାଙ୍କ ମୁଖମଣ୍ଡଳରୁ ସ୍ପଷ୍ଟ ବାରି ହୋଇଯାଉଥିଲା ।

ସମୟ କ୍ରମେ ମୁଁ ଶିକ୍ଷା ବିଭାଗର ଜଣେ ବରିଷ୍ଠ କର୍ମକର୍ତ୍ତା ବୋଲି ଜାଣିବା ପରେ ସେ ତାଙ୍କ ଗାଁ ଆଡ଼େ ଯିବାକୁ ନିମନ୍ତ୍ରଣ ଦେଲେ । ଭଦ୍ରତା ରକ୍ଷା କରିବାକୁ ଯାଇ ମୁଁ ସୁବିଧା ଦେଖି ଯିବାକୁ ସମ୍ମତି ଦେଲି ।

ତାଙ୍କ ପ୍ରତି ଭକ୍ତି, ସମ୍ମାନ ଓ ସଦିଚ୍ଛା ବଢ଼ିଗଲା । ଏମିତି କି ଦିନେ ଦୁଇଦିନ ତାଙ୍କ ସହ କଥା ନ ହେଲେ ମନ ଆଦୌ ଭଲ ଲାଗୁନଥିଲା ।

ଯେତେବେଳେ ସେ ଛୁଟି ନେଇ ଗାଁକୁ ଯାଉଥିଲେ ମୋତେ ଭାରି ଖରାପ ଲାଗୁଥିଲା । ପ୍ରତିଥର ଗାଁରୁ ଫେରିଲେ ପ୍ରଥମେ ମୋ ଯିବା ସମ୍ପର୍କରେ ଚେତେଇ ଦେଉଥିଲେ । ଏପରିକି ମୋ ଯିବା ବିଷୟରେ ସେ ତାଙ୍କ କଲେଜ କମିଟିକୁ କହିଦେଇଥିଲେ ।

ମୋ ନ ଯିବାର କାରଣ ବି ଥିଲା । ସରକାରୀ ଟୁର୍ ଆରେଞ୍ଜ୍ କରି ତ ଯିବାକୁ ହେବ । ହାତରୁ ପଇସା ଓ ସମୟ ଦେଇ ଏତେ ବାଟ କାହିଁକି ବା ଯିବି ? ସବୁ ଦୃଷ୍ଟିରୁ ପ୍ରତିଥର ତାଙ୍କ ନିକଟରେ ଯିବି କହି କ୍ଷମାଟିଏ ମୁଁ ମାଗିନିଏ । ଅବଶ୍ୟ ସନାତନ ବାବୁଙ୍କ କଥା ରଖି ନ ପାରିଥିବାରୁ ବେଳେ ବେଳେ ନିଜକୁ ଅପ୍ରସ୍ତୁତ ଲାଗିଛି ।

ଥରେ ପୂଜାଛୁଟି ପୂର୍ବରୁ ମୁଁ ଟୁର୍‌ରେ ଦୁଷ୍ମନ୍ତପୁର ଯାଉଛି କହିଦେଲି; କିନ୍ତୁ ସନାତନ ବାବୁଙ୍କ ଉତ୍‌ଫୁଲ୍ଲିତ ଜୋର୍ ହସ ପରିବର୍ତ୍ତେ ମୁଁ ତାଙ୍କ ବିରସ ମୁଖମଣ୍ଡଳକୁ ଲକ୍ଷ୍ୟ କଲି । ସେମିତି ଖୁସି ହେଲାପରି ଜଣାପଡ଼ିଲେନି । ମୁଁ କଥାର ଖିଅ ବୁଲେଇଦେଲି ।

ପରେ ପରେ ମୁଁ ଲକ୍ଷ୍ୟ କରିଛି––ସେ ଛୁଟି ଦିନମାନଙ୍କରେ ଅନୁପସ୍ଥିତ ରହୁଥିଲେ । ତାଙ୍କ ଘରର ସାମ୍ନା ପଟେ ଏକ ପୁରୁଣା କାଳିଆ ତଗରା ଚାବିଟାକୁ ଝୁଲେଇ ଦେଇ କୁଆଡ଼େ ଯେ ସେ ଚାଲିଯାଉଥିଲେ, ମୁଁ ଟେର୍ ପାଉ ନ ଥିଲି । ତାଙ୍କୁ ନ ପାଇ ଚାବିଟା ଉପରେ ଢେର ରାଗ ଲାଗେ । ମନ ହୁଏ, ଚାବିଟା ଉପରେ ସବୁ ରାଗ ଅଭିମାନ ସୁଝେଇ ହୁଅନ୍ତା କି ?

କିନ୍ତୁ !

ସନାତନଙ୍କ ଉପରେ ଯେ ରାଗି ହବନି । ତାଙ୍କର ପ୍ରତିକ୍ରିୟାହୀନ ନିର୍ଲିପ୍ତ ସଦା ହସ ହସ ମୁହଁକୁ ଚାହିଁଦେଲେ ଆପେ ଆପେ ସବୁ ଅଭିମାନ ଭୁଲି ହୋଇଯିବ, ତାହା କେତେଥର ମୁଁ ପରୀକ୍ଷା କରି ସାରିଥାଏ । ପୁଞ୍ଜିଭୂତ କ୍ରୋଧ ସଂକୀର୍ଣ୍ଣପରିଧିର ଛୋଟ ଏକ ବିନ୍ଦୁର ସ୍ପଷ୍ଟ ତିଳଚିହ୍ନ ତାଙ୍କର ସେଇ ମାନବୀୟ ବ୍ୟକ୍ତିତ୍ୱ, ମୂଲ୍ୟବୋଧ ନିକଟରେ ମଳିନ ପଡ଼ିଯିବାର ଦୃଷ୍ଟାନ୍ତ ଅନେକ ବାର ମୁଁ ଉପଲବ୍ଧି କରିଛି ।

ଘଣ୍ଟା ଘଣ୍ଟା ଧରି ଗପସପର ଆସରରେ ବହୁ ସମୟ ଆମର ବିତିଛି । ଏଭଳି ଏକ ପଡ଼ୋଶୀଙ୍କୁ ବନ୍ଧୁ ଭାବରେ ପାଇ ମୁଁ ଖୁସି ହେବା ସଙ୍ଗେ ସଙ୍ଗେ ମୋ ପରିବାରର ସମସ୍ତେ ଆନନ୍ଦିତ ହେଉଥିଲେ ।

ହଠାତ୍ ଦିନେ ଖୁସି ଓ ଆନନ୍ଦ ଭିତରେ ଦୁଃଖର ବୁଲ୍‌ଡୋଜର ମାଡ଼ିଆସିଲା । ସୂର୍ଯ୍ୟୋଦୟର ଯଥେଷ୍ଟ ପୂର୍ବରୁ ବିଛଣା ଛାଡ଼ିବା ଲୋକ ସନାତନ ବାବୁ ସେଦିନ ଆଠଟା ପର୍ଯ୍ୟନ୍ତ ଯେତେ ଉଦ୍ୟମ କଲେ ବି ବିଛଣା ଛାଡ଼ିପାରିଲେନି । ଦେହରେ ତାଙ୍କର ଖଇଫୁଟା ଜ୍ୱର । ଭଙ୍ଗା ଭଙ୍ଗା କଣ୍ଠରେ ସେ ଦୀର୍ଘଦିନ ଧରି ଟ୍ରିଟ୍‌ମେଣ୍ଟରେ ଥିଲେ ବୋଲି କହିଲେ । ପ୍ରେସ୍‌କ୍ରିପ୍‌ସନ୍‌ଗୁଡ଼ିକୁ ତାଙ୍କ ଟ୍ରଙ୍କ୍‌ରୁ ବାହାର କରିବାକୁ ମୁଣ୍ଡତଳୁ ଚାବିକାଠି କାଢ଼ିଦେଲେ । ଖୋଲି ଦେଖିଲି । ପ୍ରେସ୍‌କ୍ରିପ୍‌ସନ୍‌ର ମୋଟା ଫାଇଲ୍‌ଟିଏ ।

ଡାକ୍ତରୀ ବିଦ୍ୟା ସମ୍ପର୍କରେ ଜ୍ଞାନ ନ ଥାଇ ମଧ୍ୟ ଜାଣିଲି ସେ ଦୁରାରୋଗ୍ୟ ରକ୍ତ କର୍କଟ ରୋଗରେ ବିଗତ ତିନିବର୍ଷ ହେବ ଚିକିତ୍ସିତ ହେଉଛନ୍ତି । ଏଭଳି ଏକ ସାଙ୍ଘାତିକ ରୋଗର ଚିକିତ୍ସା ହେଉଛନ୍ତି ଅଥଚ ମନରେ ତାଙ୍କର ଭୟ ଆଶଙ୍କା ତ ମୁଁ କେବେ ଲକ୍ଷ୍ୟ କରିନି । ତାଙ୍କୁ ତ କେବେ ଚିନ୍ତିତ ଦେଖିନି । କିନ୍ତୁ ତାଙ୍କ ସ୍ୱାସ୍ଥ୍ୟର ଅବନତି ଲକ୍ଷ୍ୟ କରିଛି । ପଚାରିଲେ କଥା ଆଡ଼େଇ ତାଙ୍କର କଥା ଅନ୍ୟ ଆଡ଼େ ଲଟେଇ ଯାଉଥିଲା ।

ଦେଖିଲି, ଯନ୍ତ୍ରଣାରେ ତାଙ୍କ ମୁହଁ ବିଷର୍ଣ୍ଣ ଦିଶୁଛି, ବ୍ୟଥାରେ ତାଙ୍କ ଦେହ କମ୍ପିତ । ଆମ୍ବୁଲାନ୍ସ ଆଣି ତାଙ୍କୁ ହସ୍‌ପିଟାଲରେ ଆଡ଼ମିଶନ୍ କରାଗଲା । ସେଇଦିନ ସନ୍ଧ୍ୟାରେ କଟକ ବଡ଼ ଡାକ୍ତରଖାନାକୁ ସିଫ୍ଟ କରିଦିଆଗଲା । ପରେ ତାଙ୍କର ପତ୍ନୀ ଅନୁରାଧା ଆସି ତାଙ୍କର ଯତ୍ନ ନେଲେ । ଝିଅ ଜ୍ୱାଇଁ ଆସି ତାଙ୍କୁ ଦେଖି ଆମେରିକା ଫେରିଗଲେ । ଧୀରେ ଧୀରେ ସନାତନ ବାବୁଙ୍କ ସ୍ୱାସ୍ଥ୍ୟ ପରିସ୍ଥିତି ଭଲ ରହୁ ନ ଥାଏ । ଔଷଧ ଇଞ୍ଜେକ୍‌ସନ୍ ନିରନ୍ତର ଚାଲିଥାଏ । ତାଙ୍କର ଆତ୍ମୀୟ ସ୍ୱଜନ ଦିନକୁ ଦିନ ଭିଡ଼ ଲଗାଉଥାଆନ୍ତି । ସନାତନ ବାବୁ ସମସ୍ତ କଷ୍ଟ ଯନ୍ତ୍ରଣାକୁ ନିଜ ଭିତରେ ଚାପି ଧରି ହସ ହସ ମୁହଁରେ ସମସ୍ତଙ୍କୁ ଯଦ୍‌ପରୋନାସ୍ତି ସାନ୍ତ୍ୱନା ଜଣାଉଥାଆନ୍ତି । ଏତେ କଷ୍ଟ ସତ୍ତ୍ୱେ ସନାତନ ବାବୁ ଧୈର୍ଯ୍ୟହରା ଜଣାପଡୁ ନ

ଥିଲେ । କଟକ ବଡ଼ ଡାକ୍ତରଖାନାକୁ ତାଙ୍କୁ ଦେଖିବାକୁ ଅନେକ ଥର ଯାଇଛି । କିନ୍ତୁ ଡାକ୍ତରମାନଙ୍କ ପରାମର୍ଶ କ୍ରମେ ଯେତେବେଳେ ତାଙ୍କୁ ଦୁଷ୍ମନ୍ତପୁର ତାଙ୍କ ଜନ୍ମମାଟିକୁ ନିଆଗଲା, ସେତେବେଳେ ତାଙ୍କ ହାତଲେଖା ଚିଠି ବ୍ୟତୀତ ସନାତନ ବାବୁଙ୍କୁ ଯାଇ ଦେଖି ଆସିବା ସମ୍ଭବ ହୋଇନାହିଁ । ଯନ୍ତ୍ରଣା ଜର୍ଜରିତ ଦେହରେ ବି ସେ ମୋତେ ଦୁଷ୍ମନ୍ତପୁର କଲେଜକୁ ପରିଦର୍ଶନରେ ଯିବାକୁ ଅନୁରୋଧ କରୁଥିଲେ । ଏତେ ଦୂରରେ ରହି ତାଙ୍କ ଆରୋଗ୍ୟର ସୁମନାସିବା ଛଡ଼ା ଅନ୍ୟ କିଛି ଉପାୟ ମୋର ନ ଥିଲା । କଲୋନୀର ଲୋକମାନେ ବି ସନାତନ ବାବୁଙ୍କ ଦେହ ବିଷୟରେ ଜାଣିବାକୁ ଉଦ୍‌ବିଗ୍ନ ହୋଇ ମୋତେ ପଚାରୁଥାଆନ୍ତି । ମନକୁ ପାପ ବି ଛୁଉଁଥାଏ । କୋଉ ମୁହୂର୍ତ୍ତରେ ଯେ ସନାତନ ବାବୁ ସେପୁରର ଡାକରା ପାଇଯିବେ କିଏ କହିବ ? କ୍ୟାନସର୍ ରୋଗର କିଛି ଆନସର୍ ବି ମିଳେନା । ଅନେକ ଭାବିଚିନ୍ତି ମୁଁ ଦୁଷ୍ମନ୍ତପୁର ଯିବାକୁ ସ୍ଥିର କଲି । ସାରା ଦିନ ଏବଂ ରାତିର ଅଧେ ସମୟ ବସ୍‌ରେ ହିଁ ବିତିଲା ।

ବସ୍‌ଷ୍ଟାଣ୍ଡରୁ ରିକ୍ସା ଧରି ଯିବାବେଳେ ସହଜ ସରଳ ବେସୁରା ରାଗିଣୀଟିଏ ମୋ କାନରେ ପଡୁଥାଏ । ରିକ୍ସାର ଗତି ବଢ଼ିବା ସଙ୍ଗେ ସଙ୍ଗେ କ୍ରମେ ଅସ୍ପଷ୍ଟ ରାଗିଣୀର କରୁଣ ସ୍ୱର ସ୍ପଷ୍ଟରୁ ଆହୁରି ସ୍ପଷ୍ଟତର ହୋଇଯାଉଥାଏ । ଘନଘୋଟିଆ ଅନ୍ଧାର ଭିତରେ ଯେମିତି ସାରାରାତି ଚେଇଁ ଉଠୁଥାଏ । ସମସ୍ତଙ୍କ ଆଖିରୁ ନିଦ ହଜିଯାଇଥାଏ । ଅନେକଙ୍କ ହାତରେ ପୁଷ୍ପଗୁଚ୍ଛ । ସମସ୍ତେ ମୁହାଁଇଥାଆନ୍ତି କଲେଜ ପରିସରକୁ ।

ଭାବିଲି, ବୋଧହୁଏ କଲେଜରେ କିଛି ସାଂସ୍କୃତିକ କାର୍ଯ୍ୟକ୍ରମ ଚାଲିଥାଇପାରେ । କିନ୍ତୁ ଏମିତି ବେସୁରା କରୁଣ ରାଗିଣୀ ଯେ ?

ଅସ୍ଥିରତାରେ ମୋ ଭିତରଟା ଆନ୍ଦୋଳିତ ହୋଇଉଠିଲା ।

ରିକ୍ସାବାଲାକୁ ପଚାରିଦେଲି—"କ'ଣ ହେଉଛି କି କଲେଜରେ ?"

—"ଆଜ୍ଞା ଏ ଅଞ୍ଚଳରୁ ତାରକାଟିଏ ଖସିଗଲା ।"

"ଦିନ ନଅରୁ ପରା କାହାରି ଭୋକ ଶୋଷ ନାହିଁ । ବସ୍‌ଷ୍ଟାଣ୍ଡରୁ ଆଜ୍ଞା, କଲେଜ ପରିସରକୁ ଦଶ ନଉଟି ହେଲିଣି ଆଜି । ଟିକିଏ ଫୁରସତି ମିଳିନି । ଖାଲି ଭିଡ଼ । ସକାଳ ଆଠରେ ଯାଇ ଶବଦାହ ହେବ । ତେବେ ଯାଇ ଭିଡ଼ କମିବ ।"

'କିଏ ତେବେ ଚାଲିଗଲେ ।' ଓଠ ମୋର ଥରିଗଲା ଦୀର୍ଘଶ୍ୱାସ ଭିତରେ । ମୋ ପ୍ରଶ୍ନର ଉତ୍ତର ପାଇଁ ଯେମିତି ମୁଁ ସେକେଣ୍ଡଟିଏ ଆଉ ଅପେକ୍ଷା କରିପାରିବି ନାହିଁ ।

ସନାତନଙ୍କ ଛଡ଼ା ଅନ୍ୟ କିଏ ହୋଇଥିବେ କି ?

ମୋ ବ୍ୟଗ୍ରତା ବୁଝିପାରି ରିକ୍ସାବାଲାଟି ରିକ୍ସା ଅଟକାଇ ଆଖିରୁ ଲୁହ ପୋଛି ଦେଇ ରାସ୍ତାର ନିଅନ୍ ଆଲୁଅ ଭିତରେ ମୋତେ ନିମିଷେ ଭଲକରି ଚାହିଁଗଲା । ତାର ବ୍ୟଥାଭରା ବିଷାଦ ଢଙ୍କା କଳା ମଚ୍ ମଚ୍ ମୁହଁଟାକୁ ପୁଣି ଥରେ ପୋଛି ପକାଇ ସନାତନ ବାବୁଙ୍କ ନାଁଟି ହିଁ କହିଦେଲା ।

ମୁଁ କ୍ଷଣକେ ସ୍ତବ୍ଧ ହୋଇଗଲି ।

ସତ୍ୟ ପ୍ରତି ଗଭୀର ବିଶ୍ୱାସୀ, ଗାଁ ମାଟିର ତଳ ଲୋକଟି ପାଇଁ ଯାହାର ଏତେ ମମତ୍ୱ, ଚିନ୍ତା, ସଦା ବିନୟୀ ଓ ନମ୍ରତାରେ ଦୃପ୍ତ ତାଙ୍କର ସେଇ ସୁନ୍ଦର ସୁଗଠିତ ମୁଖମଣ୍ଡଳଟି ମୋ ସାମ୍ନାରେ ନାଚିଗଲା । ମୋ ଆତ୍ମବିଶ୍ୱାସର ପୃଥିବୀ କ୍ଷଣିକେ ପାଦତଳୁ ଖସି ଖସି ଯିବାପରି ଲାଗିଲା ତାଙ୍କର ସଜୀବ ଶରୀରକୁ ଆଉ ଥରେ ଦେଖି ନ ପାରିବାର ଅବଶୋଷରେ ।

ବଡ଼ ଫୁଲଗୁଚ୍ଛଟିଏ କୋଉଠୁ ମିଳିବ ରିକ୍ସାବାଲାକୁ ପଚାରିଲି । ଶୁଣିଲି ସନାତନ ବାବୁଙ୍କ ବିୟୋଗରେ ଦୋକାନ ବଜାର ଏଠାରେ ବନ୍ଦ ହୋଇଯାଇଛି । ତଥାପି ମୋତେ ତ ତାଙ୍କ ମରଶରୀରର ଶେଷ ଦର୍ଶନ କରିବାକୁ ହେବ ।

ବିରାଟ ଗେଟ୍ । ବଡ଼ ବଡ଼ ଅକ୍ଷରରେ ଦୁଷ୍ମନ୍ତପୁର କଲେଜ ଲେଖାଯାଇଛି । ଲୋକଙ୍କ ଭିଡ଼ ସେଇଠୁ ଲାଗିରହିଛି ଶବ ଥୁଆ ପିଣ୍ଡି ପର୍ଯ୍ୟନ୍ତ । ପାଖକୁ ଯାଇ ହବନି ଜାଣି ବାଧ ହୋଇ ମୁଁ ଭୁବନେଶ୍ୱରରୁ ଆସିଛି ବୋଲି କହିବାରୁ ଖୁବ୍ କଷ୍ଟରେ ସରୁ ହାତେ ଓସାରର ରାସ୍ତାଟିଏ ସୃଷ୍ଟି କଲେ ସ୍ଥାନୀୟ ପୋଲିସ୍ ଅଫିସର ।

ସନାତନ ବାବୁଙ୍କ ଶବ ପାଖରେ ସ୍ତ୍ରୀ ଅନୁରାଧା ନୀରବରେ ନିରନ୍ତର ଲୁହ ନିଗାଡୁଥାଆନ୍ତି । ପାଖରେ କଲେଜ ପରିଚାଳନାର ସଭ୍ୟ, ପ୍ରିନ୍ସିପାଲ ତାଙ୍କର ସହକର୍ମୀ । ଫୁଲରେ ପରିପୂର୍ଣ୍ଣ ସନାତନଙ୍କ ମର ଶରୀର । ସମସ୍ତଙ୍କର ଅଶ୍ରୁଭିଜା ଶୁଖିଲା ମୁହଁ । ସମଗ୍ର ଦୁଃଖଦ ପରିବେଶକୁ ସମ୍ଭାଳିବାକୁ ମୋର ଧୈର୍ଯ୍ୟ ନ ଥିଲା ।

ଲୁହରେ ବତୁରିଗଲା ମୋର ଆଖି । ସନାତନଙ୍କ ମର ଶରୀରକୁ ଶେଷ ପ୍ରଣତି ଦେଇ ମୁଁ ଫେରି ଆସିଲି ଭୁବନେଶ୍ୱର ।

ଫେରିବାର ଦୁଇଦିନ ପରେ ଏଇ ଚିଠିଟି ଦେଇଗଲା ପୋଷ୍ଟମ୍ୟାନ୍ । ପ୍ରାପ୍ତିସ୍ୱୀକାର ସନ୍ତକ ବି ନେଇଛି, କାରଣ ଚିଠିଟି ଥିଲା ରେଜିଷ୍ଟ୍ରି ଡାକରେ । ଲେଖାଥିଲା—

ବନ୍ଧୁବରେଷୁ,

ସାକ୍ଷାତ୍ ପ୍ରାୟ ଆଉ ହେବନି । ଜୀବନଦୀପର ସଳିତା ଲିଭି ଲିଭି ଆସୁଛି । ମୋତେ ଲାଗୁଛି, ଦମକାଏ ପବନରେ କେତେବେଳେ ଜଳିଉଠି ସେ ଦୀପଟି ଦପ୍

କରି ଲିଭିଯିବ କହି ହେବନି । ତଥାପି କାଗଜ କଲମ ଧରି ଏଇ ଚିଠିଟି ଲେଖିପାରୁଛି କେବଳ କରୁଣାମୟର ଆଶୀର୍ବାଦରୁ । ଅନୁରୋଧଟିଏ ଲେଖିବି । ଆଶା ଓ ବିଶ୍ୱାସ ଯେପରି ହେଉ ଏଡ଼େଇ ଦେବେନି । ଯେହେତୁ ଏଇଟି ମୋର ଶେଷ ଅନୁରୋଧ । ସମୟ ଆସିବ ମୋ ଅନ୍ତେ ଦୁଷ୍ମନ୍ତପୁର କଲେଜକୁ ମୋ ନାଁରେ ନାମିତ କରିବାକୁ ଦାବି ହେବ; କିନ୍ତୁ ଏ ଅନୁରୋଧକୁ କେବେ ବି କାର୍ଯ୍ୟକାରୀ କରିବେ ନାହିଁ । ଏ ଅଞ୍ଚଳର ଅନେକଙ୍କର କଲେଜ ପାଇଁ କର୍ତ୍ତବ୍ୟ କାର୍ଯ୍ୟନିଷ୍ଠା ମୋ'ଠାରୁ କୌଣସି ଗୁଣରେ କମ୍ ନୁହେଁ । ଗୁଣ୍ଡୁଚିମୂଷା ପରି ସମସ୍ତଙ୍କର ଏ ଅନୁଷ୍ଠାନଟି ପାଇଁ ଅବଦାନ ରହିଛି । ତେଣୁ କଲେଜ ନାଁ ଆଗପରି ଦୁଷ୍ମନ୍ତପୁର କଲେଜ ରହିବ । କୌଣସି ବ୍ୟକ୍ତିବିଶେଷର ନାଁରେ ନୁହେଁ । ରାଶି ରାଶି ବାଲୁକାସ୍ତୂପରୁ ମୁଁ ଏକ ଉପଳ ଖଣ୍ଡ ମାତ୍ର । ଅନୁଷ୍ଠାନ ଯୁଗ ଯୁଗର । ବ୍ୟକ୍ତିବିଶେଷର ହାଲ୍କା ଅସ୍ଥାୟୀ ପାଦଚିହ୍ନ ଦିନେ ସମୟ ବୁକୁରେ ଲିଭିଯିବ । ପାଦଚିହ୍ନ ହଜିଯିବ । ରହିଲି ।

ଇତି ବିନୀତ,
ସନାତନ

ଚିଠିର ପ୍ରତିଟି ଶବ୍ଦ ମୋ ଭିତରର ନଗ୍ନ ସଂକୀର୍ଣ୍ଣତାକୁ ଏବେ ବି ଆକ୍ଷେପ କରିଚାଲିଛି । କୋଟି କୋଟି ବସ୍ତୁବାଦୀ ମଣିଷ ଭିତରେ ଗୋଟିଏ ମହନୀୟ ଚରିତ୍ର ସନାତନ ବାବୁ ଯେ ମାନବତାର ଏକ ଜ୍ୱଳନ୍ତ ପ୍ରତୀକ ଏକଥା ମୋର କାହିଁକି, ତାଙ୍କ ସଂସ୍ପର୍ଶରେ ଆସିଥିବା ସମସ୍ତଙ୍କର ହୃଦବୋଧ ହେବ । ଦୀପ ସିନା ଲିଭିଗଲା; କିନ୍ତୁ ତା'ର ଆଲୋକବର୍ତ୍ତିକା ଏବେ ବି ଆଲୋକିତ କରୁଛି, ସ୍ୱାର୍ଥପରତାର ଅନ୍ଧକାରକୁ ।



## ଶ୍ରୀ ସରୋଜ ମିଶ୍ର (୧୯୫୫)

ଓଡ଼ିଆ ସାହିତ୍ୟରେ ବେଶ୍ ପରିଚିତ ଏକ ନାମ । ଶ୍ରୀ ମିଶ୍ର ଏକାଧାରରେ ଜଣେ ନାଟ୍ୟକାର,କବି,ଗାଳ୍ପିକ ଓ ସମାଲୋଚକ । ବେତାର ଓ ଦୂରଦର୍ଶନରେ ତାଙ୍କର ବହୁ ନାଟକ ପ୍ରସାରିତ ହୋଇ ଶ୍ରୋତା ଓ ଦର୍ଶକଙ୍କୁ ମନ୍ତ୍ରମୁଗ୍ଧ କରିଛି । ଶ୍ରୀ ମିଶ୍ର ଶ୍ରେଷ୍ଠ ନାଟ୍ୟକାର ଭାବେ ରାଜ୍ୟ ସଚିବାଳୟ ଅର୍ଥବିଭାଗ,ଉତ୍କଳ ଯୁବ ସାଂସ୍କୃତିକ ସଙ୍ଗଠନ,କଟକ ତଥା ଅନ୍ୟାନ୍ୟ ବିଭାଗର ସାଂସ୍କୃତିକ ପରିଷଦ ଦ୍ୱାରା ୧୯୮୪ ଠାରୁ କ୍ରମାଗତ ଭାବେ ସମ୍ମାନିତ ହୋଇ ଆସୁଛନ୍ତି । ତାଙ୍କର ବହୁ ନାଟକ ଭୁବନେଶ୍ୱର ଦୂରଦର୍ଶନ, କଟକ ଓ ଜୟପୁର ବେତାର କେନ୍ଦ୍ରରେ ପ୍ରସାରିତ ହୋଇଛି । ଶ୍ରୀ ମିଶ୍ର NIPA, IATA ଓ ଅନ୍ୟାନ୍ୟ ସଂସ୍ଥାର ସଭ୍ୟ ଅଛନ୍ତି । ମୌଳିକ ରଚନା ବ୍ୟତୀତ ଶ୍ରୀ ମିଶ୍ର ବିଶିଷ୍ଟ କଥାକାରଙ୍କ ଗଳ୍ପକୁ ନାଟ୍ୟରୂପ ଦେଇଛନ୍ତି ।

୧୯୯୯ ଓ ୨୦୦୦ ମସିହା ବିଶ୍ୱନାଟ୍ୟ ଦିବସରେ ଶ୍ରୀ ମିଶ୍ରଙ୍କ ନାଟକ ଅଭିନୀତ ହୋଇ ତାଙ୍କୁ ବହୁମାନର ଅଧିକାରୀ କରିଛି । ଧଉଳି ଉତ୍ସବ-୨୦୦୩ରେ ତାଙ୍କ ନାଟକ ଅଭିନୀତ ହୋଇ ପ୍ରଶଂସିତ ହୋଇଛି ଏବଂ ଉକ୍ତ ଉତ୍ସବରେ ଶ୍ରୀ ମିଶ୍ରଙ୍କୁ ସମ୍ବର୍ଦ୍ଧିତ କରାଯାଇଛି । ସର୍ବଭାରତୀୟ ବହୁଭାଷୀ ନାଟକ ଓ ମଞ୍ଚକଳା ପ୍ରତିଯୋଗିତାରେ ଶ୍ରୀ ମିଶ୍ରଙ୍କୁ ମାନପତ୍ର ଦିଆଯାଇଛି । ରାଜ୍ୟସ୍ତରୀୟ 'ଚଲାପଥ' ନାଟକ ପୁରସ୍କାର ୨୦୦୨ ସେ ପାଇଛନ୍ତି ।

ବେତାର, ଦୂରଦର୍ଶନ ଓ ମଞ୍ଚନାଟକ ଲେଖକ ଭାବେ ଶ୍ରୀ ମିଶ୍ର ରାଜ୍ୟରେ ସୁନାମ ଅର୍ଜନ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟକୁ ତାଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । ତାଙ୍କର ପ୍ରକାଶିତ ନାଟକ ମଧ୍ୟରେ 'ତିନୋଟି ନାଟକ' (୧୯୯୨), 'ଆହତ ଆଲୋକ' (୧୯୯୭), ନିର୍ବାଚିତ ବେତାର ନାଟକ (୧୯୯୯), 'ମୋକ୍ଷ' (୨୦୦୦), ଅବ୍ୟକ୍ତ ପ୍ରତୀକ୍ଷା (୨୦୦୦) ଓ ପରାଜିତ କାଳିଦାସ (୨୦୦୨) ପ୍ରଣିଧାନଯୋଗ୍ୟ । ଶ୍ରୀ ମିଶ୍ର ଓଡ଼ିଶାର ଲବ୍ଧ ପ୍ରତିଷ୍ଠ ସାହିତ୍ୟ ପତ୍ରିକା 'ଝଙ୍କାର', 'ସମାଜ', 'ପ୍ରଜାତନ୍ତ୍ର', 'ଧରିତ୍ରୀ', 'ଆଗାମୀ ଶତାବ୍ଦୀ', 'ସମୟ', 'ଶଙ୍ଖନାଦ', 'ମୂର୍ଚ୍ଛନା', 'ସମାରୋହ', 'ନବରବି', ବିଶ୍ୱମୁକ୍ତି', 'କଥା କଥା ଓ କବିତା କବିତା', 'ଶଙ୍ଖ' ଓ 'ସମାରୋହ' ଆଦିରେ ବହୁ ଲେଖା ପ୍ରକାଶ କରିଛନ୍ତି ।

'ଝଙ୍କାର' ଓ ଅନ୍ୟାନ୍ୟ ସାହିତ୍ୟ ପତ୍ରିକାରେ ପୂର୍ବରୁ ପ୍ରକାଶିତ ତଥା କେତୋଟି ସଦ୍ୟଲେଖାର ସମାହାରରେ ଶ୍ରୀ ମିଶ୍ରଙ୍କ ଗଳ୍ପ ସଂକଳନ 'ହଜିଯାଉଥିବା ପାଦଚିହ୍ନ' ।